# ଶିଖର ପୁରୁଷ ଜେପି

ସଂପାଦନା : ହରିହର ଶୁକ୍ଳ

ପ୍ରକାଶକ : ଶିକ୍ଷାସନ୍ଧାନ, ଭୁବନେଶ୍ୱର

ପ୍ରଥମ ପ୍ରକାଶ : ୨୦୧୯

ଅଳଙ୍କରଣ : ସୁଧାଂଶୁ ସାମନ୍ତରାୟ

ମୁଦ୍ରଣ : ଶିକ୍ଷା ପ୍ରକାଶନୀ, ଏନ୍.ଡି.-୭, ଭି.ଆଇ.ପି. ଏରିଆ,
ଆଇ.ଆର୍.ସି. ଭିଲେଜ, ଭୁବନେଶ୍ୱର - ୭୫୧୦୧୫

ମୂଲ୍ୟ : ଟ.୧୫୦/-(ଏକ ଶତ ପଚାଶ ଟଙ୍କା)

■ ■ ■

## SIKHAR PURUSHA JP

Edited by : Harihar Sukla

Publishd by : Sikshasandhan

First Published : 2019

Layout : Sudhanshu Samantaray

Printed at : Siksha Prakashani, ND-7, VIP Area,
IRC Village, Bhubaneswar-751015

Price : ₹150/- (Rupees One Hundred Fifty only)

ISBN 8193350744-4

## ଆଦ୍ୟଭାଷ

ଓଡ଼ିଆ ସାହିତ୍ୟଜଗତରେ ଦୁଇ ଜଗନ୍ନାଥଙ୍କ ଉଜ୍ଜ୍ୱଳ ପ୍ରତିଭା ବେଶ୍ ସୁବିଦିତ; ଜଣେ ଭାଗବତକାର ପ୍ରାତଃ ସ୍ମରଣୀୟ ଜଗନ୍ନାଥ ଦାସ, ଅନ୍ୟ ଜଣେ ପ୍ରଥିତଯଶା ସାହିତ୍ୟିକ ଜଗନ୍ନାଥ ପ୍ରସାଦ ଦାସ । ସଭିଙ୍କ ପାଖରେ 'ଜେପି' ଭାବେ ସୁପରିଚିତ ଜଗନ୍ନାଥ ପ୍ରସାଦଙ୍କର ବହୁମୁଖୀ ପ୍ରତିଭା ସତରେ ଖୁବ୍ ବିସ୍ମୟୋଦ୍ଦୀପକ । କବିତାରୁ କଥା, ନାଟକରୁ ପ୍ରବନ୍ଧ, ଶିଶୁସାହିତ୍ୟରୁ ଚିତ୍ରକଳା ଆଦି ସୃଜନର ବିବିଧ କ୍ଷେତ୍ରରେ ନିଜ ଅପୂର୍ବ ସିଦ୍ଧିର ସ୍ୱର୍ଣ୍ଣିମ ସ୍ୱାକ୍ଷର ଅଙ୍କନ କରିଥିବା ଜେପି ଦାସଙ୍କୁ 'ସୃଜନୀ'ର 'ଶିଖର' ପ୍ରସ୍ଥରେ ସ୍ଥାନିତ କରିବାର ସ୍ୱପ୍ନ ଏ ସମ୍ପାଦକର ବହୁ ପୂର୍ବରୁ ଥିଲା । ମାତ୍ର ଆଇ.ଏ.ଏସ୍. ଭଳି ମର୍ଯ୍ୟାଦାଜନକ ପଦବୀରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଥିବା, କେନ୍ଦ୍ର ସାହିତ୍ୟ ଅକାଦେମି ଭଳି ବହୁଆକାଙ୍‌କ୍ଷିତ ପୁରସ୍କାରକୁ ଅକାତରେ ପ୍ରତ୍ୟାଖ୍ୟାନ କରିଥିବା, ପ୍ରଚାର-ପ୍ରସାର-ବିମୁଖ ଜେପିଙ୍କର ଏଥିପାଇଁ ଏକ ସ୍ୱତନ୍ତ୍ର ସାକ୍ଷାତ୍କାର ନିମିତ୍ତ ଅନିଚ୍ଛା ଏ ସ୍ୱପ୍ନକୁ ସାକାର କରିବା କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରିଥିଲା । ଶେଷରେ ୨୦୧୫ ମସିହାରେ ଶ୍ରୀ ଦାସଙ୍କର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ସାକ୍ଷାତ୍କାରଗୁଡ଼ିକରୁ ଚୟନିତ ପ୍ରଶ୍ନୋତ୍ତରମାନ ସଂଗ୍ରହ କରାଯାଇ 'ସୃଜନୀ'ର 'ଶିଖର' ପ୍ରସ୍ଥ ପ୍ରସ୍ତୁତ କରାଯାଇଥିଲା, ଯାହା ସେ ପର୍ଯ୍ୟନ୍ତ 'ସୃଜନୀ'ରେ ପ୍ରକାଶିତ 'ଶିଖର'ପ୍ରସ୍ଥଗୁଡ଼ିକ ମଧ୍ୟରେ ସବୁଠୁ ଦୀର୍ଘ

ଥିଲା । କହିବା ବାହୁଲ୍ୟ, 'ସୃଜନୀ' ଏକ କଥାସାହିତ୍ୟଭିତ୍ତିକ ପତ୍ରିକା ହୋଇଥିବା ଦୃଷ୍ଟିରୁ, ସେଥିରେ କବିତା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ସାହିତ୍ୟ ଅକାଦେମି ପୁରସ୍କାର,ସରସ୍ୱତୀ ସମ୍ମାନ ଆଦି ବିବିଧ ସମ୍ମାନଜନକ ସ୍ୱୀକୃତିରେ ଭୂଷିତ ଯଶସ୍ୱୀ ସ୍ରଷ୍ଟା ଜଗନ୍ନାଥଙ୍କର କେବଳ କଥାସାହିତ୍ୟ ଉପରେ ହିଁ ଆଲୋକପାତ କରାଯାଇଥିଲା ।

'ସୃଜନୀ'ର 'ଜଗନ୍ନାଥ ପ୍ରସାଦ ଦାସ ବିଶେଷାଙ୍କ'ପ୍ରକାଶ ପାଇବା ପରେ ଏହାର ଅପାର ଲୋକପ୍ରିୟତା ତଥା ବହୁ ପାଠକପାଠିକା ଓ ଲେଖକଲେଖିକାଙ୍କ ଆଗ୍ରହକୁ ସମ୍ମାନ ଦେଇ ଏହାର 'ଶିଖର' ପ୍ରସ୍ଥକୁ ସାମାନ୍ୟ ପରିବର୍ତ୍ତନ ସହ ଏବେ ପୁସ୍ତକାକାରରେ ପ୍ରକାଶ କରାଯାଉଛି । ଏହି ଶୁଭ ଅବସରରେ ଯେଉଁ ଲେଖକମାନଙ୍କ ଲେଖାରେ 'ସୃଜନୀ'ର 'ଜଗନ୍ନାଥ ପ୍ରସାଦ ଦାସ ବିଶେଷାଙ୍କ'ର 'ଶିଖର'ପ୍ରସ୍ଥ ସମୃଦ୍ଧ ହୋଇଥିଲା ତଥା ଯେଉଁ ପତ୍ରପତ୍ରିକାରୁ ଶ୍ରୀ ଦାସଙ୍କ ସାକ୍ଷାତ୍‌କାରର ପ୍ରଶ୍ନୋତ୍ତରମାନ ଗ୍ରହଣ କରାଯାଇଥିଲା, ସେ ସମସ୍ତଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ବିଶେଷତଃ ଏହାକୁ ପୁସ୍ତକାକାରରେ ପ୍ରକାଶ କରିବା ନିମିତ୍ତ ଆଗ୍ରହ ପ୍ରକାଶ କରିଥିବାରୁ 'ଶିକ୍ଷାସନ୍ଧାନ'ର କର୍ତ୍ତୃପକ୍ଷଙ୍କୁ ଅଶେଷ ଧନ୍ୟବାଦ ।

ଆଶା, ପୁସ୍ତକଟି ପାଠକ ମହଲରେ ବିଶେଷ ଆଦୃତ ହେବା ସଂଗେ ସଂଗେ ଶ୍ରୀ ଦାସଙ୍କ ସମ୍ବନ୍ଧରେ ଏଥିରେ ସନ୍ନିବେଶିତ ତଥ୍ୟାବଳୀ ଛାତ୍ରଛାତ୍ରୀ ତଥା ଗବେଷକମାନଙ୍କ ପାଇଁ ବେଶ୍ ଉପାଦେୟ ବିବେଚିତ ହେବ ।

ହରିହର ଶୁକ୍ଳ




Complete Playsର ଶୁଭ ଉନ୍ମୋଚନ ଅବସରରେ
ପ୍ରଖ୍ୟାତ ଚଳଚ୍ଚିତ୍ର ତାରକା ଜୟା ବଚ୍ଚନ ଏବଂ ପ୍ରସାର ଭାରତୀ ମୁଖ୍ୟ ଜହର ସରକାରଙ୍କ ସହ ଶ୍ରୀ ଦାସ



ଆମେରିକାରେ ଲାଇବ୍ରେରୀ ବାହାରେ ଅଧ୍ୟୟନରତ ଶ୍ରୀ ଦାସ

# ସୂଚୀ





ଜଗନ୍ନାଥ ପ୍ରସାଦଙ୍କ ତୈଳଚିତ୍ର 'ସ୍ମୃତିଚାରଣ'

# ସମୁଦ୍ରରୁ ଶଙ୍ଖେ

ହରିହର ଶୁକ୍ଳ

ସୃଜନ ସ୍ୱପ୍ନରେ ସଦାବିଭୋର ସାରସ୍ୱତ ସ୍ରଷ୍ଟାଟିଏ ସିଏ । ଅନ୍ୱେଷା ହିଁ ତାଙ୍କର ଅଭୀପ୍‌ସା, ସନ୍ଧାନ ହିଁ ତାଙ୍କ ସ୍ୱଧର୍ମ । ନା ଅଛି ତାଙ୍କ ସୀମାହୀନ ଅନ୍ୱେଷାର ଅନ୍ତ, ନା ଅଛି ଅବିରାମ ଯାତ୍ରାର ବିରତି ! ଜୀବନାୟନର ସାଉଁଟା ଅନୁଭୂତିକୁ ନେଇ ସିଏ ଯେତିକି ବାଙ୍ମୟ, ସେତିକି ବିଗଳିତ । ଦୂବରୁ ଦ୍ରୁମ, ହିମରୁ ହିମାଳୟ, ନୀହାରରୁ ନୀହାରିକା-ସବୁଠି ନିବଦ୍ଧ ତାଙ୍କର ସୁଦୂରପ୍ରସାରୀ ଦୃଷ୍ଟି । ଶୃଙ୍ଗାରରୁ ଶୃଙ୍ଗାରୋହଣ, ମଦନରୁ ମନନ, ତନୁତାପରୁ ଅନୁତାପ ଯାଏ ପରିବ୍ୟାପ୍ତ ତାଙ୍କ ବିଚିତ୍ରବର୍ଣ୍ଣୀ ସୃଜନ-ସାମ୍ରାଜ୍ୟର ଚିତ୍ରିତ ଚୌହଦି । ଯାହାଙ୍କ ସୃଜନ-ଯାତ୍ରା ଆତ୍ମନେପଦୀଠାରୁ ପରସ୍ମୈପଦୀ ପର୍ଯ୍ୟନ୍ତ-ରୋମାଣ୍ଟିକ ଆବେଗଜନିତ ଇନ୍ଦ୍ରଧନୁର ବର୍ଣ୍ଣବିଭାରୁ ଦୈନନ୍ଦିନ ଜୀବନର ଧୂସର ବାସ୍ତବତା ପର୍ଯ୍ୟନ୍ତ ବିସ୍ତୃତ, ସାରା ଜୀବନ ସାହିତ୍ୟ ସାଧନାରେ ବ୍ରତୀ ରହି ପ୍ରତିଷ୍ଠାର ଶିଖର ସ୍ପର୍ଶ କରିସାରିଥିବା, ଓଡ଼ିଆ କଳା ଓ ସାହିତ୍ୟ ଜଗତର ସେଇ କିମ୍ବଦନ୍ତୀୟ ସ୍ରଷ୍ଟା ତଥା ଆମ ସମୟର ପ୍ରମୁଖ ଭାଷ୍ୟକାର ଶ୍ରୀ ଜଗନ୍ନାଥ ପ୍ରସାଦ ଦାସଙ୍କ ଜୀବନ ଓ ସୃଜନର ସାମଗ୍ରିକ ଆକଳନ ନୁହେଁ, ବରଂ ସମୁଦ୍ରରୁ ଶଙ୍ଖେ ଭଳି ସେଇ ଅନନ୍ୟ ପ୍ରତିଭାଙ୍କ ସମ୍ପର୍କରେ ସାମାନ୍ୟତମ ସୂଚନା ମାତ୍ର ଇଏ । ତେବେ ପାଠକବର୍ଗ ସେଇ କ୍ଷୁଦ୍ର ଶଙ୍ଖ ମଧ୍ୟରେ ସମୁଦ୍ରର ଜଳ ସହିତ ସମୁଦ୍ର ଗର୍ଭରେ ସଞ୍ଚିତ ଅମୂଲ୍ୟ ରତ୍ନରାଜିର କିଞ୍ଚିତ ଆଭାସ ନିଶ୍ଚୟ ପାଇପାରିବେ ବୋଲି ଆଶା ଓ ବିଶ୍ୱାସ ।





# ଅଙ୍କରେ ଜେପି

ନାମ : ଜଗନ୍ନାଥ ପ୍ରସାଦ ଦାସ

ଜନ୍ମ ତାରିଖ ୨୬-୦୪-୧୯୩୬

ଜନ୍ମସ୍ଥାନ ବାଣପୁର

ପିତା ଶ୍ରୀଧର ଦାସ

ମାତା : ଇନ୍ଦୁ ଦେବୀ

ପତ୍ନୀ ମିତ୍ରା ଦାସ (ମହାନ୍ତି)

କନ୍ୟା ମୋନାଲିସା

ଶିକ୍ଷା ଆଲାହାବାଦ ବିଶ୍ୱବିଦ୍ୟାଳୟରୁ
ରାଜନୀତି ବିଜ୍ଞାନରେ ଏମ୍.ଏ., କଳା ଇତିହାସରେ ପି.ଏଚ୍‌ଡି ।

ବୃତ୍ତି ବୃତ୍ତାନ୍ତ : ଆଲାହାବାଦ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା (୧୯୫୭-୫୮), ଦିଲ୍ଲୀରେ ଆଇ.ଏ.ଏସ୍. ଟ୍ରେନିଂ (୧୯୫୮-୫୯), ଛତ୍ରପୁର, କୋରାପୁଟ, ଦଶରଥପୁରରେ ଟ୍ରେନିଂ ତଥା ପାନପୋଷ (ରାଉରକେଲା)ର ଏସ୍.ଡି.ଓ. (୧୯୫୯-୬୧), ଭୁବନେଶ୍ୱର ସଚିବାଳୟରେ ନିଯୁକ୍ତି (୧୯୬୧-୬୩), କଳାହାଣ୍ଡିର କଲେକ୍ଟର (୧୯୬୩-୬୬), ଭୁବନେଶ୍ୱର ସଚିବାଳୟରେ ନିଯୁକ୍ତି (୧୯୬୬-୬୮), ଡାଇରେକ୍ଟର, ଇଣ୍ଡଷ୍ଟ୍ରିଜ, କଟକ (୧୯୬୮-୭୦), ଭୁବନେଶ୍ୱର ସଚିବାଳୟରେ ନିଯୁକ୍ତି (୧୯୭୧-୭୩), ଦିଲ୍ଲୀ କେନ୍ଦ୍ର ସଚିବାଳୟରେ ନିଯୁକ୍ତି (୧୯୭୩-୭୮), ଦିଲ୍ଲୀ ଆଇ.ଆଇ.ପି.ଏ.ରେ ଅଧ୍ୟୟନ (୧୯୭୮-୭୯), ଦିଲ୍ଲୀ ଓ ଓଡ଼ିଶାରେ ଗବେଷଣା (୧୯୭୯-୮୧), ଦିଲ୍ଲୀ ଓଡ଼ିଶା ଭବନରେ ଆବାସିକ କମିଶନର (୧୯୮୧-୮୩), ଆଇ.ଏ.ଏସ୍. ଚାକିରିରୁ ସ୍ୱେଚ୍ଛାକୃତ ଅବସର (୧୯୮୪)।

ସାମ୍ପ୍ରତିକ ଠିକଣା: ୩୦୫, ହାଉଜ୍‌ଖାସ୍ ଆପାର୍ଟମେଣ୍ଟସ, ନୂଆଦିଲ୍ଲୀ- ୧୧୦୦୧୬

ଦୂରଭାଷ: ୦୧୧-୨୬୫୧୧୬୨୩/୦୯୮୬୮୧୭୦୧୮୦

**କବିତା ସଂକଳନ :** (୧)ସ୍ତବକ (ଓଡ଼ିଶା ପବ୍ଲିଶିଂ ହାଉସ୍,୧୯୫୧), (୨) ପ୍ରଥମ ପୁରୁଷ (ଅନନ୍ତ ମହାପାତ୍ର,୧୯୭୧),(୩) ଅନ୍ୟସବୁ ମୃତ୍ୟୁ (ଜେ. ମହାପାତ୍ର, ୧୯୭୬), (୩) ଯେ ଯାହାର ନିର୍ଜନତା (ବିଦ୍ୟାପୁରୀ, ୧୯୭୯), (୪) ଅନ୍ୟ ଦେଶ ଭିନ୍ନ ସମୟ (ଲାର୍କ ବୁକ୍ସ,୧୯୮୨), (୫) ଯାତ୍ରାର ପ୍ରଥମ ପାଦ (ବିଦ୍ୟାପୁରୀ,୧୯୮୮), (୬) ଆହ୍ନିକ (ଗ୍ରନ୍ଥ ମନ୍ଦିର,୧୯୯୦), (୭) ସ୍ଥିରଚିତ୍ର (ଫ୍ରେଣ୍ଡ୍ସ ପବ୍ଲିସର୍ସ, ୧୯୯୧),(୮) ସଚରାଚର (ଓଡ଼ିଶା ଷ୍ଟୋର୍ସ,୧୯୯୪), (୯) ସ୍ମୃତିର ସହର (ଫ୍ରେଣ୍ଡ୍ସ ପବ୍ଲିସର୍ସ, ୧୯୯୫),(୧୦) ପରିକ୍ରମା (ଆର୍ଯ୍ୟ ପ୍ରକାଶନୀ, ୧୯୯୮), (୧୧) ଅସମୟ (ସୁନନ୍ଦା ପ୍ରକାଶନ,୨୦୦୪)।

**ଗଳ୍ପ:** (୧)ଭବନାଥ ଓ ଅନ୍ୟମାନେ (ଫ୍ରେଣ୍ଡ୍ସ ପବ୍ଲିସର୍ସ,୧୯୮୨), (୨) ଦିନଚର୍ଯ୍ୟା (ଫ୍ରେଣ୍ଡ୍ସ ପବ୍ଲିସର୍ସ,୧୯୮୩), (୩) ଆମେ ଯେଉଁମାନେ (ଗ୍ରନ୍ଥ ମନ୍ଦିର,୧୯୮୬), (୪) ସାକ୍ଷାତ୍‌କାର (ଗ୍ରନ୍ଥ ମନ୍ଦିର,୧୯୮୭), (୫) ପ୍ରିୟ ବିଦୂଷକ (ଫ୍ରେଣ୍ଡ୍ସ ପବ୍ଲିସର୍ସ, ୧୯୯୨), (୬) ଶେଷ ପର୍ଯ୍ୟନ୍ତ (ବିଦ୍ୟାପୁରୀ, ୧୯୯୫), (୭) ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ ( ଡ୍ରିମ୍‌ସ, ଭୁବନେଶ୍ୱର ୨୦୦୯)।

**ନାଟକ:** (୧)ସୂର୍ଯ୍ୟାସ୍ତ ପୂର୍ବରୁ (କଟକ ଷ୍ଟୁଡେଣ୍ଟ୍ସ ଷ୍ଟୋର୍,୧୯୭୭), (୨)ସବାଶେଷ ଲୋକ (କଟକ ଷ୍ଟୁଡେଣ୍ଟ୍ସ ଷ୍ଟୋର୍,୧୯୮୦), (୩) ଅସଂଗତ ନାଟକ, (ଫ୍ରେଣ୍ଡ୍ସ ପବ୍ଲିସର୍ସ,୧୯୮୧), (୪) ପୂର୍ବରାଗ ('ଜଣେ ଜଣକ ପାଇଁ' ଓ 'ଆକସ୍ମିକ' ଏକାଙ୍କିକା ଦ୍ୱୟର ସଂକଳନ), (ଲାର୍କ ବୁକ୍ସ, ୧୯୮୩), (୫) ସୁନ୍ଦର ଦାସ (ଚତୁରଙ୍ଗ ପ୍ରକାଶନୀ,୧୯୯୩)।

**ଉପନ୍ୟାସ:** ଦେଶ କାଳ ପାତ୍ର (ପ୍ରାଚୀ ପ୍ରକାଶନ,୧୯୯୨)।

**ଭାଷଣ, ପ୍ରବନ୍ଧ ଓ ସାକ୍ଷାତ୍‌କାର:** ଆମ ଓଡ଼ିଆ ଆମର ଓଡ଼ିଶା (ଶିକ୍ଷାସଂଧାନ, ୨୦୧୫)

**ଶିଶୁସାହିତ୍ୟ:** (୧)ଆଳିମାଳିକା (ପବ୍ଲିକେଶନ ଡିଭିଜନ୍, ୧୯୯୩), (୨) ଆଲୁକୁଚି ମାଲୁକୁଚି (ଲାର୍କ ବୁକ୍ସ,୧୯୯୩), (୩) ଅନାବନା (ଇଙ୍କ୍ ଓଡ଼ିଶା,୨୦୦୮), (୪) ଆନମାନ (୨୦୧୬)।

**ଅନୁବାଦ:** ସ୍ୱପ୍ନ ବିଚାର (Swedish କବି Werner Aspenstromଙ୍କ କବିତାର ଭାଷାନ୍ତର) (ଆର୍ଯ୍ୟ ପ୍ରକାଶନୀ,୨୦୦୦)।

**ସଂକଳନ:** (୧) ଛଅଟି ଝିଅ (ଇଷ୍ଟର୍ଣ୍ଣ ମିଡିଆ,୧୯୮୭), (୨) ପ୍ରେମ କବିତା (ଇଷ୍ଟର୍ଣ୍ଣ ମିଡିଆ, ୧୯୯୧), (୩) ଶ୍ରେଷ୍ଠ କବିତା (ଚତୁରଙ୍ଗ ପ୍ରକାଶନୀ,୧୯୯୩), (୪) ପୂର୍ବାପର-୨

(ସମଗ୍ର କବିତା, ୧୯୭୦-୭୯), (ଭର୍ଗୋ ପବ୍ଲିକେଶନ୍‌ସ, ୧୯୯୫), (୫) ପୂର୍ବାପର-୨ (ସମଗ୍ର କବିତା, ୧୯୮୦-୯୪), (ଭର୍ଗୋ ପବ୍ଲିକେଶନ୍‌ସ, ୧୯୯୬), (୬) ରଙ୍ଗଲିପି (ନାଟକ ସଂକଳନ), (ଫ୍ରେଣ୍ଡ୍‌ସ ପବ୍ଲିସର୍ସ, ୧୯୯୭), (୭) କଥାଯାତ୍ରା (ଫ୍ରେଣ୍ଡ୍‌ସ ପବ୍ଲିସର୍ସ, ୨୦୦୦), (୮)କବିତା ସମଗ୍ର (ଇଙ୍କ୍ ଓଡ଼ିଶା, ୨୦୧୧), (୯) ଜଗନ୍ନାଥ ପ୍ରସାଦ ଦାସଙ୍କ ଶ୍ରେଷ୍ଠ ଗଳ୍ପ (ନ୍ୟାସନାଲ ବୁକ୍ ଟ୍ରଷ୍ଟ, ୨୦୧୪)।

**ଜଗନ୍ନାଥ ପ୍ରସାଦ ଦାସଙ୍କ ସଂକ୍ରାନ୍ତୀୟ ପୁସ୍ତକାବଳୀ**

ଓଡ଼ିଆ : (୧) ଜଗନ୍ନାଥ ପ୍ରସାଦ : ସୃଜନ ଯାତ୍ରା (ଗଣେଶ୍ୱର ମିଶ୍ର, ବିଦ୍ୟାପୁରୀ, ୨୦୧୦), (୨) ପ୍ରିୟ ଜେପି (ଜଗନ୍ନାଥ ପ୍ରସାଦ ଦାସଙ୍କୁ ଚିଠି) (ସୁମନ୍ୟୁ ଶତପଥୀ, ଶିକ୍ଷା ସନ୍ଧାନ, ୨୦୧୧), (୩) ଜଗନ୍ନାଥ ପ୍ରସାଦ:ବନ୍ଧୁତାର ଆସର (ସଂକଳକ-ଗଣେଶ୍ୱର ମିଶ୍ର, ଟାଇମ୍ ପାସ୍, ୨୦୧୩), (୪) ବହୁଧା (ଜଗନ୍ନାଥ ପ୍ରସାଦଙ୍କ ଜୀବନ ଓ କୃତି) (ପଞ୍ଚାନନ ମିଶ୍ରଙ୍କ ଦ୍ୱାରା Words on Canvasରେ ଥିବା ସୁମନ୍ୟୁ ଶତପଥୀଙ୍କର The Artist as 'Polumetis' ର ଓଡ଼ିଆ ଭାଷାନ୍ତର, ଅଗ୍ରଦୂତ, ୨୦୧୪), (୫) ଭାରତୀୟତାର ଅନ୍ୱେଷୀ ଜଗନ୍ନାଥ ପ୍ରସାଦ ଦାସ (ଭାଷାନ୍ତର-ଡ. ରବିନାରାୟଣ ମହାରଣା, ଲାର୍କ ବୁକ୍‌ସ, ୨୦୧୪)।

ହିନ୍ଦୀ: ଭାରତୀୟତାକା ଅନ୍ୱେଷ (ଗଙ୍ଗା ପ୍ରସାଦ ବିମଲ୍, ଯଶ୍ ପ୍ରକାଶନ, ୨୦୧୩)।

**English:**- Words on Canvas, (JP Das and His Work), (Edited by Ganeswar Mishra, Orissa Lalit Kala Akademi, 2005).

**Books in English By J.P. Das**

**Research**:(1)Puri Paintings : The Chitrakara and His work ( Arnold-Heinemann,1982), (2)Chitra- Pothi : Illustrated Palm-Leaf Manuscripts (Arnold-Heinemann,1985), (3) Palm- Leaf Miniatures (With Joanna Williams),(Abhinav,1991).

**Edited**:(1) Oriya Short Stories (Vikas, 1983),(2) Films for Children (Vikas,1987), Kavita 93 (with K. Sachidanandan) (Virgo, 1993).

**Translation:**(1) Growing an Indian Star (Translated from French with Catherine Clement), (Vikas, 1991),(2)Under a Silent Sun (Odia women poets' poems translated with Arlene Zide), (Vikas, 1992), (3)Autumn Moon ( Poems of Gulzar translated from Urdu), (Rupa, 1999),(4) Cast Out (Poems of Basudev Sunani from Oriya), (Rupantar, 2008).

**Essays:** Reflections on Literature and Culture, (Rupantar, 2009).

**Books by J.P. Das in English Translation**

**Poetry:** (1)First Person (Translated by Deba Patnaik), (Arnold-Heinemann,1976),(2) Love is a Season (Translated by the poet), (Arnold -Heinemann,1978), (3)Timescapes (Translated by the poet), (Arnold-Heinemann, 1980),(4) Silences (Translated by the poet), (Vikas, 1989),(5) Diurnal Rites (Translated by Hrusikesh Panda), (Sahitya Akademi, 1994),(6) The Unreal City (Translated by Durga Prasad Panda), (Har-Anand, 1997),(7) Lovelines (Translated by the poet, with Paul St-Pierre), (Virgo, 2001),(8) Alimalika (Translated by the poet), (Writers Workshop, 2004),(9) Dark Times (Translated by the poet with Paul St-Pierre), (Virgo, 2004),(10) Poems (Translated by the poet), (Grassroots, 2004).

**Short Stories:** (1) The Magic Deer and other stories (Translated by the author), (Vikas, 1983),(2) The Forbidden Street (Translated by the author), (Vikas, 1988),(3) Spider's Web (Translated by Kamalakant Mahapatra & Leelawati Mahapatra), (Vikas, 1990), (4) The Prostitute (Translated by Bibhuti Mishra & others), (Har-Anand, 1995),(5) The Pukka Sahib & other stories (Translated by Bikram Kumar Das), (Harper Collins, 2001 ),(6) Stories (Translated by Paul St-Pierre, Leela & Kamalakant Mahapatra), (Grassroots, 2003),(7) Dear Jester (Translated by R.K. Swain & Paul St-Pierre), (Rupa, 2004),(8) The Will & other stories (Translated by Ashok Mohanty), (Sahitya Akademi, 2007).

**Plays:** (1)Before the Sunset (Translated by the author), (Arnold-Heinemann,1978),(2) Two Plays (Translated by the author), (Writers Workshop, 1983),(3) The Underdog (Translated by Ravi Baswani), (Vikas, 1984),(4) Absurd Play (Translated by the author), (Writers Workshop, 1989),(5) Sundardas (Translated by Paul St-Pierre & others), (NSD & Har Anand, 2002),(6) Miss X (Translated by the author), (Rupa,2002).

**Novel:** A Time Elsewhere (Translated by Jatindra K. Nayak), (Penguin, 2009).

**Collection**: (1)J.P. Das Omnibus (Edited by Paul St-Pierre), (Har- Anand, 2012),(2) Complete Plays (Edited by N.K. Bhattacharjee), (Har-Anand, 2012),(3) Selected Short Stories (Edited by Mauricio Aguilera), (Har-Anand, 2013),(4) Selected Poems (Har-Anand, 2014).

**Children's Literature:** Nanasense (Translated by Sumanyu Satapathy), (National Book Trust, 2014).

**ହିନ୍ଦୀରେ ଅନୂଦିତ ପୁସ୍ତକାବଳୀ**

**କବିତା:** (୧) ପ୍ରଥମ ପୁରୁଷ (ଶଙ୍କରଲାଲ୍ ପୁରୋହିତ, ଲହର ପ୍ରକାଶନ,ଏଲାହାବାଦ, ୧୯୭୫), (୨) କଇ ତରହ କେ ଦିନ (ବିଜୟଲକ୍ଷ୍ମୀ କାନୁନ୍‌ଗୋ, ଜୟଶ୍ରୀ ପ୍ରକାଶନ, ଦିଲ୍ଲୀ,୧୯୮୧), (୩) ଅପନା ଅପନା ଏକାନ୍ତ (ପୂର୍ଣ୍ଣଚନ୍ଦ୍ର ରଥ, ଜୟଶ୍ରୀ ପ୍ରକାଶନ, ଦିଲ୍ଲୀ, ୧୯୮୧), (୪) ଲୌଟତେ ସମୟ (ରାଜେନ୍ଦ୍ର ପ୍ରସାଦ ମିଶ୍ର, ଭାରତୀୟ ଜ୍ଞାନପୀଠ, ଦିଲ୍ଲୀ,୧୯୮୯), (୫) ଶବ୍ଦଭେଦ (ରାଜେନ୍ଦ୍ର ପ୍ରସାଦ ମିଶ୍ର, ଭାରତୀୟ ଜ୍ଞାନପୀଠ, ଦିଲ୍ଲୀ,୧୯୯୧), (୬) ସ୍ଥିର ଚିତ୍ର (ରାଜେନ୍ଦ୍ର ପ୍ରସାଦ ମିଶ୍ର, ଭାରତୀୟ ଜ୍ଞାନପୀଠ, ଦିଲ୍ଲୀ,୧୯୯୩), (୭) ଆହ୍ନିକ (ରାଜେନ୍ଦ୍ର ପ୍ରସାଦ ମିଶ୍ର, ସାହିତ୍ୟ ଅକାଦେମି, ଦିଲ୍ଲୀ,୧୯୯୩), (୮) ସଚରାଚର (ରାଜେନ୍ଦ୍ର ପ୍ରସାଦ ମିଶ୍ର, ପ୍ରବୀଣ ପ୍ରକାଶନ, ଦିଲ୍ଲୀ, ୧୯୯୫), (୯) ସ୍ମୃତିୟୋଁ କା ସହର (ରାଜେନ୍ଦ୍ର ପ୍ରସାଦ ମିଶ୍ର, ଅବିରାମ ପ୍ରକାଶନ, ଦିଲ୍ଲୀ,୨୦୦୬), (୧୦)ପରିକ୍ରମା (ରାଜେନ୍ଦ୍ର ପ୍ରସାଦ ମିଶ୍ର, ନୀଳକଣ୍ଠ ପ୍ରକାଶନ, ଦିଲ୍ଲୀ, ୨୦୦୭ ), (୧୧) ଗୁଡରାତ କେ ବାଦ (ରାଜେନ୍ଦ୍ର ପ୍ରସାଦ ମିଶ୍ର, ରାଜକମଳ ପ୍ରକାଶନ, ଦିଲ୍ଲୀ, ୨୦୧୪)।

**ଗଳ୍ପ:** (୧)ମାୟାବୀ ହିରଣ (ରାଜେନ୍ଦ୍ର ପ୍ରସାଦ ମିଶ୍ର, ପ୍ରଭାତ ପ୍ରକାଶନ, ଦିଲ୍ଲୀ, ୧୯୮୩), (୨) ସନ୍ନ୍ୟାସ କା ରାସ୍ତା (ରାଜେନ୍ଦ୍ର ପ୍ରସାଦ ମିଶ୍ର, ଅର୍ଚ୍ଚନା ପ୍ରକାଶନ, ଦିଲ୍ଲୀ,୧୯୮୮), (୩) ତିସ୍‌ରୀ ଦୁନିଆ (ରାଜେନ୍ଦ୍ର ପ୍ରସାଦ ମିଶ୍ର, ବିଦ୍ୟା ବିହାର, ଦିଲ୍ଲୀ,୧୯୯୦), (୪) ମକଡ଼ୀ କା ଜାଲା (ରାଜେନ୍ଦ୍ର ପ୍ରସାଦ ମିଶ୍ର, ଭାରତୀୟ ଜ୍ଞାନପୀଠ, ଦିଲ୍ଲୀ,୧୯୯୦), (୫) ପ୍ରିୟ ବିଦୂଷକ (ସ୍ମୃତିରେଖା ରାୟ, ଗ୍ରନ୍ଥ ଅକାଦେମୀ, ଦିଲ୍ଲୀ, ୨୦୦୩)।

**ନାଟକ:** (୧) ସୂର୍ଯ୍ୟାସ୍ତ (କାନ୍ତି ଦେବ, ରାଧାକୃଷ୍ଣ ପ୍ରକାଶନ, ଦିଲ୍ଲୀ, ୧୯୭୬), (୨) ସବ୍‌ସେ ନୀଚେ କା ଆଦ୍‌ମୀ, (କାନ୍ତି ଦେବ, ପ୍ରବୀଣ ପ୍ରକାଶନ, ଦିଲ୍ଲୀ, ୧୯୮୧), (୩) ଏକ ଦୁସ୍‌ରେ କେ ଲିଏ (ରାଜେନ୍ଦ୍ର ପ୍ରସାଦ ମିଶ୍ର, ଜୟଶ୍ରୀ ପ୍ରକାଶନ, ଦିଲ୍ଲୀ, ୧୯୮୬), (୪) ଅସଂଗତ ନାଟକ (ରାଜେନ୍ଦ୍ର ପ୍ରସାଦ ମିଶ୍ର, ଭାରତୀୟ ଜ୍ଞାନପୀଠ, ଦିଲ୍ଲୀ,୧୯୯୧ ), (୫) ସୁନ୍ଦର ଦାସ (ସ୍ମୃତିରେଖା ରାୟ, ନୀଳକଣ୍ଠ ପ୍ରକାଶନ, ଦିଲ୍ଲୀ, ୧୯୯୫) ।

**ଉପନ୍ୟାସ:** ଦେଶ କାଳ ପାତ୍ର (ରାଜେନ୍ଦ୍ର ପ୍ରସାଦ ମିଶ୍ର, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଦିଲ୍ଲୀ,୨୦୦୫)।

**ବି.ଦ୍ର.** ଏତଦ୍‌ଭିନ୍ନ ଲେଖକଙ୍କର ବହୁ ଲେଖା ପଞ୍ଜାବୀ, ଗୁଜରାତୀ, ଉର୍ଦ୍ଦୁ, କନ୍ନଡ଼ ଆଦି ବିଭିନ୍ନ ଭାଷାରେ ଅନୂଦିତ।

## ସ୍ୱୀକୃତିର ସ୍ରୋତ

■ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର (କବିତା ସଂକଳନ 'ଯେ ଯାହାର ନିର୍ଜନତା' ପାଇଁ, ୧୯୮୦) ■ ପ୍ରଜାତନ୍ତ୍ର ପ୍ରଚାର ସମିତି ପ୍ରଦତ୍ତ ବିଷୁବ ସମ୍ମାନ (୧୯୮୪) ■ ସାହିତ୍ୟ ଅକାଦେମି ପୁରସ୍କାର (ପ୍ରତ୍ୟାଖ୍ୟାତ) (କବିତା ସଂକଳନ 'ଆହ୍ନିକ' ପାଇଁ, ୧୯୯୧) ■ ସାରଳା ସମ୍ମାନ (ଗଳ୍ପ ସଂକଳନ 'ପ୍ରିୟ ବିଦୂଷକ' ପାଇଁ, ୧୯୯୮) ■ ନାନ୍ଦୀକର ଥିଏଟର ପୁରସ୍କାର, କଲିକତା (୨୦୦୦) ■ ସରସ୍ୱତୀ ସମ୍ମାନ (କବିତା ସଂକଳନ 'ପରିକ୍ରମା' ପାଇଁ, ୨୦୦୬)।



ଶ୍ରୀ ଦାସ (ଭୋପାଳ, ୧୯୮୧)

## କିଛି ତଥ୍ୟ କିଛି ସତ୍ୟ

■ ପିତା ଶ୍ରୀଧର ଦାସଙ୍କ ବଉଦ ଅବସ୍ଥାନ ସମୟରେ ତାଙ୍କ କୋଳ ମଣ୍ଡନ କରିଥିବା ପୁତ୍ରଟି ଡିପ୍‌ଥେରିଆ ରୋଗରେ ଆକ୍ରାନ୍ତ ହୋଇ ଅକାଳରେ ମୃତ୍ୟୁବରଣ କରିଥିଲା। ଏହାପରେ ୧୯୩୬ ମସିହାରେ ବାଣପୁରଠାରେ ତାଙ୍କର ଅନ୍ୟ ଏକ ପୁତ୍ର ଜନ୍ମଲାଭ କଲା। ମହାପ୍ରଭୁ ଜଗନ୍ନାଥଙ୍କ ପ୍ରସାଦରୁ ପାଇଥିବାରୁ ସେ ନବଜାତ ସନ୍ତାନର ନାମ ଦେଇଥିଲେ 'ଜଗନ୍ନାଥ ପ୍ରସାଦ'। ଅବଶ୍ୟ ଏକଥା ଭିନ୍ନ ଯେ, କୌଣସି ମନ୍ଦିର ବା ଧର୍ମାନୁଷ୍ଠାନ ପ୍ରତି ଜଗନ୍ନାଥ ପ୍ରସାଦ କେବେ ଆନୁଗତ୍ୟ ବା ଆସକ୍ତି ପ୍ରକାଶ କରନ୍ତି ନାହିଁ।

■ ଜଗନ୍ନାଥ ପ୍ରସାଦ ଜଣେ ମେଧାବୀ ଛାତ୍ର ଭାବରେ ବେଶ୍ ସୁନାମ ଅର୍ଜନ କରିଥିଲେ। ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ସେ ସମଗ୍ର ଉତ୍କଳ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ ଏବଂ ଆଇ.ଏ. ପରୀକ୍ଷାରେ ସମ୍ଭବତଃ ବିଶ୍ୱବିଦ୍ୟାଳୟରେ ପଞ୍ଚମ ସ୍ଥାନ ଅଧିକାର କରିଥିଲେ। ଅବଶ୍ୟ ସେ ବି.ଏ. ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀ ଅନର୍ସ (ଅର୍ଥନୀତିରେ) ସହ ଉତ୍ତୀର୍ଣ୍ଣ ହୋଇଥିଲେ । ତେବେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଆଲାହାବାଦ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଏମ୍.ଏ. ଡିଗ୍ରୀ ଲାଭ କରିଥିଲେ।

■ ନଭେମ୍ବର ୧୯୫୪ ମସିହାରେ ଯଶସ୍ୱୀ ଗାଳ୍ପିକ ଓ ଔପନ୍ୟାସିକ ମନୋଜ ଦାସଙ୍କ ସମ୍ପାଦନାରେ ପ୍ରକାଶିତ 'ଆଗାମୀ' ପତ୍ରିକାର ଶ୍ରୀ ଦାସ ଥିଲେ ସହ ସଂପାଦକ । ଏଥିରେ କାଳିନ୍ଦୀଚରଣ, ଅନନ୍ତ ପଟ୍ଟନାୟକଙ୍କ ଭଳି ବରିଷ୍ଠ ଲେଖକଙ୍କ ଲେଖା ଅନ୍ତର୍ଭୁକ୍ତ ହୋଇଥିଲା।

ପତ୍ରିକାର ଦ୍ୱିତୀୟ ସଂଖ୍ୟା ପ୍ରକାଶିତ ହେଲା ଜାନୁୟାରୀ ୧୯୫୫ରେ, ଯେଉଁଥିରେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ବୈକୁଣ୍ଠନାଥ ପଟ୍ଟନାୟକଙ୍କ ଲେଖା ସ୍ଥାନିତ ହୋଇଥିଲା। ତେବେ ଉଚ୍ଚଶିକ୍ଷା ଉଦ୍ଦେଶ୍ୟରେ ଆଲାହାବାଦ ଯାତ୍ରା କରିବାକୁ ପଡ଼ିବାରୁ ଜେ.ପି.ଙ୍କୁ କଟକ ଛାଡ଼ିବା ସହ ପତ୍ରିକା ସମ୍ପାଦନା କାର୍ଯ୍ୟରୁ ନିବୃତ୍ତ ରହିବାକୁ ପଡ଼ିଥିଲା। ପରବର୍ତ୍ତୀ ସମୟରେ (୧୯୮୭) 'ଫିଲ୍ମସ ଫର ଚିଲ୍‌ଡ୍ରେନ୍' ନାମକ ଗ୍ରନ୍ଥଟି ସେ ସଂପାଦନା କରିଥିଲେ । ଶ୍ରୀ ଦାସଙ୍କ ସମ୍ପାଦିତ ଓଡ଼ିଆ ଗଳ୍ପର ଇଂରାଜୀ ଅନୁବାଦ 'ଓଡ଼ିଆ ସର୍ଟ୍ ଷ୍ଟୋରିଜ୍', 'କବିତା-୯୩' (କେ.ସଚ୍ଚିଦାନନ୍ଦଙ୍କ ସହିତ) ଯଥାକ୍ରମେ ୧୯୮୩ ଓ ୧୯୯୩ ରେ ପ୍ରକାଶିତ। ଏତଦ୍‌ଭିନ୍ନ ସେ ଦିଲ୍ଲୀରୁ ପ୍ରକାଶିତ ଇଂରାଜୀ ପତ୍ରିକା 'ମାନୁଷୀ'ର ସମ୍ପାଦନା ସହ ମଧ୍ୟ ଜଡ଼ିତ ଥିଲେ।

■ ୧୯୪୮ ରୁ ୧୯୫୫ ମଧ୍ୟରେ ଜଗନ୍ନାଥ ପ୍ରସାଦ କେତେଗୁଡ଼ିଏ କବିତା ରଚନା କରିଥିଲେ। ସେ ସବୁ ମୁଖ୍ୟତଃ 'ଡଗର', 'ପ୍ରଜାତନ୍ତ୍ର', ଦୈନିକ ଆଶା' ତଥା ବମ୍ବେରୁ ପ୍ରକାଶିତ 'କୁଙ୍କୁମ'ରେ ପ୍ରକାଶିତ ହୋଇଥିଲା। (ପରବର୍ତ୍ତୀ ସମୟରେ 'ସ୍ତବକ' ସଂକଳନରେ ସଂକଳିତ) ୧୯୫୫ରେ ଉଚ୍ଚଶିକ୍ଷା ପାଇଁ କଟକ ଛାଡ଼ି ଆଲାହାବାଦ ବିଶ୍ୱବିଦ୍ୟାଳୟେ ଅଭିମୁଖେ ଯାତ୍ରା କଲାବେଳକୁ ନୂତନ ପିଢ଼ିର ଅନ୍ୟତମ କବି ଭାବରେ ତାଙ୍କ ସୁନାମ ଓଡ଼ିଶାରେ ବ୍ୟାପି ସାରିଥିଲା। ତେବେ କଟକ ଛାଡ଼ିଲା ବେଳେ ସେ ଦେଇଯାଇଥିଲେ କବିତାରେ କମା। ଦୀର୍ଘ ପନ୍ଦର ବର୍ଷର ବିରତି ପରେ ସେ ପୁଣିଥରେ ଲେଖନୀ ଚାଳନା ଆରମ୍ଭ କଲେ ଏବଂ ୧୯୭୧ରେ ପ୍ରକାଶ ପାଇଲା ତାଙ୍କର ଦ୍ୱିତୀୟ କବିତା ସଂକଳନ 'ପ୍ରଥମ ପୁରୁଷ'।

■ ଜଗନ୍ନାଥ ପ୍ରସାଦ ଦାସ ଭାରତୀୟ ପ୍ରଶାସନିକ ସେବାରେ ନିଜର ଛବିଶ ବର୍ଷର କାର୍ଯ୍ୟକାଳ ମଧ୍ୟରେ ଓଡ଼ିଶା ତଥା ଭାରତ ସରକାରଙ୍କ ଅଧୀନରେ ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ଥିଲେ ମଧ୍ୟ କଳାହାଣ୍ଡିର ଜିଲ୍ଲାପାଳ ଭାବରେ ତାଙ୍କର ତିନି ବର୍ଷ (୧୯୬୩-୧୯୬୬)ର କାର୍ଯ୍ୟକାଳ ଏକାନ୍ତ ଅବିସ୍ମରଣୀୟ। ନିଜେ ଶ୍ରୀ ଦାସ ମଧ୍ୟ ସାହିତ୍ୟ ଅକାଦେମିର

'ମିଟ୍ ଦି ଅଥର' କାର୍ଯ୍ୟକ୍ରମରେ ସ୍ୱୀକାର କରିଛନ୍ତି- 'ମୋ ସରକାରୀ ଚାକିରି ବିଷୟରେ ଭାବିଲେ ପ୍ରଥମେ ମନକୁ ଆସେ ଚାଳିଶି ବର୍ଷ ତଳେ କଳାହାଣ୍ଡିରେ ଜିଲ୍ଲାପାଳ ରହିଥିବା ସମୟର କଥା।' ୧୯୬୬ରେ କଳାହାଣ୍ଡିରେ ଦେଖା ଦେଇଥିବା ଭୟାବହ ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ଜିଲ୍ଲାପାଳ ଭାବେ ଶ୍ରୀ ଦାସଙ୍କ ଭୂମିକା ବାସ୍ତବିକ ପ୍ରଶଂସାର୍ହ। ସେଇ ମରୁଡ଼ି ସମୟରେ ପ୍ରଥମ ଥର ପାଇଁ ଜଣେ ପ୍ରଧାନମନ୍ତ୍ରୀ (ଶ୍ରୀମତୀ ଇନ୍ଦିରା ଗାନ୍ଧୀ) ହେଲିକେପ୍ଟର ଯୋଗେ (ଯାତାୟାତର ସୁବିଧା ନ ଥିବା ହେତୁ) ସେଠାକାର ଦୁର୍ଗମ ଅଞ୍ଚଳକୁ ଆସିଥିଲେ ଏବଂ ତିରିଶ ବର୍ଷ ବୟସ୍କ ଯୁବକ ଜିଲ୍ଲାପାଳ ଶ୍ରୀ ଦାସଙ୍କୁ ଦେଖି ସନ୍ଦେହରେ ଆର୍.ଡି.ସି.ଙ୍କୁ ପ୍ରଶ୍ନ କରିଥିଲେ- 'କ'ଣ ଏହି ଯୁବକ କଳାହାଣ୍ଡିର ଜିଲ୍ଲାପାଳ ?'



ଯୁବକର ଉତ୍ସାହ, ଉଦ୍ୟମ ଓ ନିଷ୍ଠା ବଳରେ ଯେ ସବୁକିଛି ସମ୍ଭବ, ତାହା ଯୁବ ଜିଲ୍ଲାପାଳ ଶ୍ରୀ ଦାସ ନିଜର ଅପୂର୍ବ କାର୍ଯ୍ୟଦକ୍ଷତା ମାଧ୍ୟମରେ ପ୍ରମାଣିତ କରି ଦେଖାଇଥିଲେ। ଜିଲ୍ଲାର ସେଇ ଦୁଃସ୍ଥିତି ସମୟରେ ସେ ପ୍ରାୟ ଦଶମାସ କାଳ ଦିନକୁ ଚଉଦରୁ ଷୋହଳ ଘଣ୍ଟା କଠିନ ପରିଶ୍ରମ କରି ଲୋକମାନଙ୍କୁ ଆବଶ୍ୟକ ସେବା ଯୋଗାଇ ଦେଇଥିଲେ। ଏ ପ୍ରସଙ୍ଗରେ ପ୍ରତିଷ୍ଠିତ ଜନନେତା ରାସ ବିହାରୀ ବେହେରା ଉଲ୍ଲେଖ କରିଛନ୍ତି- "ବିପଦକୁ ଦୃଢ଼ତାର ସହ ମୁକାବିଲା କରିବା ହେଉଛି ସାହସିକତା; ତାହା ଜେ.ପି. ଦାସ ତାଙ୍କ କାର୍ଯ୍ୟଦକ୍ଷତା ବଳରେ ନିଷ୍ଠାର ସହ ପାଳନ କରିପାରିଛନ୍ତି। ସେଥିପାଇଁ ସେ ଆମ ସମସ୍ତଙ୍କର ନମସ୍ୟ।' ପ୍ରକୃତରେ କଳାହାଣ୍ଡି ସହିତ ଶ୍ରୀ ଦାସଙ୍କର ରହିଆସିଛି ଏକ ଆବେଗିକ ସଂପର୍କ। କଳାହାଣ୍ଡି ଛାଡ଼ିବାର ପ୍ରାୟ ପଚିଶ ବର୍ଷ ପରେ ସେ ଲେଖିଥିଲେ ତାଙ୍କର କବିତା 'କଳାହାଣ୍ଡି', ଯାହା ଇଂରାଜୀ ଓ ଅନ୍ୟାନ୍ୟ ଭାଷାରେ ଅନୂଦିତ ହୋଇ ତାଙ୍କୁ ଭାରତୀୟ ସାହିତ୍ୟରେ ବିଶେଷଭାବେ ପରିଚିତ କରାଇପାରିଛି। କବିତାଟି ସାହିତ୍ୟ ଅକାଦେମି ପୁରସ୍କାରପ୍ରାପ୍ତ ସଂକଳନ 'ଆହ୍ନିକ'ରେ ସଂକଳିତ। କବିତାଟିର ଇଂରାଜୀ ରୂପାନ୍ତର (ଶ୍ରୀ ଦାସଙ୍କ ଦ୍ୱାରା) ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକରେ ମଧ୍ୟ ସ୍ଥାନିତ।

■ ୧୯୬୬ରେ କଳାହାଣ୍ଡିରୁ ଭୁବନେଶ୍ୱର ଫେରିବା ପରେ ସେ ପେ[ିଙ୍ଗ କରିବା ଆରମ୍ଭ କରିଥିଲେ। ପିଲାଦିନୁ ତାଙ୍କର ଚିତ୍ର କରିବାରେ ଆଗ୍ରହ ଥିଲା ଏବଂ ଆଲାହାବାଦରେ ପଢ଼ିବା ବେଳେ ସେ କିଛିଦିନ ପେଣ୍ଟିଙ୍ଗ କ୍ଲାସରେ ଯୋଗ ଦେଇଥିଲେ। କ୍ଲାସରେ ତାଙ୍କ ସହିତ ଥିଲେ

ବନ୍ଧୁ ଶରତ ପୂଜାରୀ (ପ୍ରଖ୍ୟାତ ଚଳଚ୍ଚିତ୍ର ଅଭିନେତା) । ବେଶ୍ କିଛି ତୈଳଚିତ୍ର କରିବା ପରେ ସେ ଭୁବନେଶ୍ୱର (ରବୀନ୍ଦ୍ର ମଣ୍ଡପ) ଠାରେ ଗୋଟିଏ ଏକକ ପ୍ରଦର୍ଶନୀ କରିଥିଲେ ୬ ମାର୍ଚ୍ଚ ୧୯୭୧ରେ । ନିତ୍ୟାନନ୍ଦ କାନୁନ୍‌ଗୋ (ବିଖ୍ୟାତ କଂଗ୍ରେସ ନେତା, ମନ୍ତ୍ରୀ ଓ ପରେ ରାଜ୍ୟପାଳ) ଏହି ପ୍ରଦର୍ଶନୀର ଉନ୍ମୋଚନ କରିଥିଲେ । ଅବଶ୍ୟ ଜୁନ୍ ୧୯୭୩ରେ ସେ ଦିଲ୍ଲୀ ଯିବା ପରେ ଆଉ ଚିତ୍ର କରି ନ ଥିଲେ । ତେବେ ୧୯୭୯ରେ ହୋମିବାବା ଫେଲୋସିପ ପାଇ ଓଡ଼ିଶାର ଚିତ୍ରକଳା ଉପରେ ସେ ଗବେଷଣା ଆରମ୍ଭ କରିଥିଲେ ।

■ ବିଭିନ୍ନ ବ୍ୟସ୍ତତା ମଧ୍ୟରେ ବି ଜଗନ୍ନାଥ ପ୍ରସାଦଙ୍କର କ୍ରୀଡ଼ା ପ୍ରତି ପ୍ରବଳ ଆଗ୍ରହ ଥିଲା । ବିଶେଷତଃ ଟେନିସ୍ ଖେଳ ପ୍ରତି ତାଙ୍କର ଆଗ୍ରହ ଅତ୍ୟଧିକ । ସେ ମଧ୍ୟ ଜଣେ ଉତ୍ତମ ଟେନିସ୍ ଖେଳାଳି । କଳାହାଣ୍ଡି ଜିଲ୍ଲାପାଳ ଥିବା ସମୟରେ ସେ କାର୍ଯ୍ୟରୁ ଫେରି ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ଟେନିସ୍ ଫିଲ୍ଡରେ ଟେନିସ୍ ଖେଳୁଥିଲେ । କଳାହାଣ୍ଡିର ହ୍ୱିଲର୍ସ କ୍ଲବ (ବର୍ତ୍ତମାନ ମ୍ୟୁନିସିପାଲିଟି ଅଫିସ୍) ପଡ଼ିଆରେ ହାର୍ଡ କୋର୍ଟ ନିର୍ମାଣ କରିବାରେ ତାଙ୍କର ଉଦ୍ୟମ ବାସ୍ତବିକ ପ୍ରଶଂସନୀୟ । ସେହି ସମୟରେ ସେ ଜିଲ୍ଲା ଏଥ୍‌ଲେଟିକ୍ ଏସୋସିଏସନ୍‌ର ସଭାପତି ହିସାବରେ ଜିଲ୍ଲାରେ କ୍ରୀଡ଼ାର ବିକାଶ ସହ ଫୁଟ୍‌ବଲ୍ ଖେଳ ପ୍ରତି ଆଗ୍ରହ ପ୍ରକାଶ କରି ଖେଳାଳିଙ୍କୁ ଉତ୍ସାହିତ କରୁଥିଲେ ।



■ 'କାଳୀ ଝିଅ'(ବ୍ଲାକ୍ ଗାର୍ଲ୍) ଜଗନ୍ନାଥ ପ୍ରସାଦଙ୍କର ଗୋଟିଏ ସଫଳ ଚିତ୍ର । ଚିତ୍ରଟି ପ୍ରଦର୍ଶିତ ହୋଇଥିଲା ୧୯୭୧ ମାର୍ଚ୍ଚରେ, ଭୁବନେଶ୍ୱରରେ (ରବୀନ୍ଦ୍ର ମଣ୍ଡପ) ଅନୁଷ୍ଠିତ ତାଙ୍କର ଏକକ ଚିତ୍ର ପ୍ରଦର୍ଶନୀରେ । ଅବଶ୍ୟ ଏହା ହିଁ ଥିଲା ତାଙ୍କର ପ୍ରଥମ ଏବଂ ଶେଷ ଚିତ୍ର ପ୍ରଦର୍ଶନୀ । ତାଙ୍କର ଏଇ 'କାଳୀ ଝିଅ'ର ପ୍ରେମରେ ପଡ଼ି ଫେବୃୟାରୀ ୭, ୧୯୭୩ରେ ଭାରତର ଅନ୍ୟତମ ପ୍ରମୁଖ ଚଳଚ୍ଚିତ୍ର ନିର୍ଦ୍ଦେଶକ ମୃଣାଳ ସେନ୍ ତାଙ୍କ ପାଖକୁ ଲେଖିଥିଲେ- "ଆଶ୍ଚର୍ଯ୍ୟ ! ଏ 'କାଳୀ ଝିଅ'ଟି ତୁମର ? ମୁଁ ଏହାର ପ୍ରେମରେ ପଡ଼ିଛି ।" 'କାଳୀ ଝିଅ' ବ୍ୟତୀତ ତାଙ୍କର 'ନୀଳ ରମଣୀ', 'ଓମ୍', 'ସ୍ତୁତିଚାରଣ', 'ଆଭିମୁଖ୍ୟ', 'ମୃତ ସହର', 'ଧାବକ' ପ୍ରଭୃତି ଚିତ୍ର ମଧ୍ୟ ବେଶ୍ ଚର୍ଚ୍ଚିତ ।

■ ଜଗନ୍ନାଥ ପ୍ରସାଦ କେତୋଟି ବେତାର ନାଟକ ରଚନା କରିଥିଲେ । ଛାତ୍ରମାନଙ୍କ ସମସ୍ୟା ଓ ଅସ୍ଥିରତା ଉପରେ ଆଧାରିତ ତାଙ୍କର 'କାଚଘର' (୧୯୭୨) ବେତାର ନାଟକଟି

ସେତେବେଳେ ବିଶେଷ ଚର୍ଚ୍ଚିତ ହୋଇଥିଲା । ନାଟକ ରଚନା ସହିତ ଅଭିନୟ ଓ ମଞ୍ଚ ସଜ୍ଜାରେ ମଧ୍ୟ ଥିଲା ତାଙ୍କର ରୁଚି ଓ ଆଗ୍ରହ । ୧୯୭୦ରେ ତାଙ୍କର ଏକ କ୍ଷୁଦ୍ର ନାଟକ 'ଜଣେ ଜଣକ ପାଇଁ' ଅନନ୍ତ ମହାପାତ୍ରଙ୍କ ନିର୍ଦ୍ଦେଶନାରେ କଟକ କ୍ଲବ୍‌ରେ ଅଭିନୀତ ହୋଇଥିଲା, ଯେଉଁଥିରେ ସେ ନିଜ ପତ୍ନୀ ମିତ୍ରା ଦାସଙ୍କ ସହ ଅଭିନୟ କରିଥିଲେ । ମନୋରଞ୍ଜନ ଦାସଙ୍କ ଐତିହାସିକ ନାଟକ 'ବକ୍ସି ଜଗବନ୍ଧୁ'ରେ ସେ 'ଫତେ ମହମ୍ମଦ' ଭୂମିକାରେ ଅଭିନୟ କରିଥିଲେ । ଏତଦ୍‌ଭିନ୍ନ ହିନ୍ଦୀ ଟେଲିଫିଲ୍ମ 'ପଂଛି'ରେ ମଧ୍ୟ ସେ ଅଭିନୟ କରିଥିଲେ ।




■ ଶ୍ରୀ ଦାସଙ୍କ 'ପ୍ରଥମ ପୁରୁଷ'ର ପ୍ରଥମ ପ୍ରକାଶ ହୋଇଥିଲା ୧୯୭୧ ଡିସେମ୍ବରରେ (ପ୍ରକାଶକ: ଅନନ୍ତ ମହାପାତ୍ର) । ଏହାର ଦଶକାନ୍ତ ସଂସ୍କରଣ 'କିଛି ବର୍ଷା କିଛି ରାସ୍ତା କିଛି ନିର୍ଜନତା' ଶୀର୍ଷକରେ ୧୯୮୧ ମସିହାରେ ପ୍ରକାଶିତ । (ସଂପାଦନା: ଖଗେଶ୍ୱର ମହାପାତ୍ର; ପ୍ରଦକ୍ଷିଣା: ଗିରିବାଳା ମହାନ୍ତି; ପ୍ରକାଶକ : ଫ୍ରେଣ୍ଡସ ପବ୍ଲିଶର୍ସ) । ୨୦୧୪ରେ ସଂକଳନଟିର ତୃତୀୟ ସଂସ୍କରଣ 'ଟାଇମ୍‌ପାସ୍' ପ୍ରକାଶନ ଦ୍ୱାରା ପ୍ରକାଶ ଲାଭ କରିଛି । ଏତଦ୍‌ବ୍ୟତୀତ ଯତ୍‌ସାମାନ୍ୟ ପରିବର୍ତ୍ତନ ସହ ଜଗନ୍ନାଥ ପ୍ରସାଦଙ୍କ ସମଗ୍ର କବିତା ସଂକଳନ 'ପୂର୍ବାପର' (୧୯୯୫) ଏବଂ କବିତା ସଂକଳନ 'ସମଗ୍ର କବିତା' (୨୦୧୧)ରେ ମଧ୍ୟ 'ପ୍ରଥମ ପୁରୁଷ' ଅନ୍ତର୍ଭୁକ୍ତ । ସଂକଳନଟି ହିନ୍ଦୀ (ଶଙ୍କରଲାଲ ପୁରୋହିତଙ୍କ ଦ୍ୱାରା, ୧୯୭୪), ଇଂରାଜୀ (ଦେବପ୍ରସାଦ ପଟ୍ଟନାୟକଙ୍କ ଦ୍ୱାରା, ୧୯୭୬), ଉର୍ଦ୍ଦୁ ('ପରଛାଇଓଁ କି ଜୁଲୁସ୍' ଶୀର୍ଷକରେ ଶହିଦା ସୟଦଙ୍କ ଦ୍ୱାରା, ୧୯୭୯) ତଥା ବଙ୍ଗଳା (ବିଭୂତି ଭୂଷଣ ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା, ୨୦୦୩)ରେ ପ୍ରକାଶିତ ହୋଇସାରିଛି । ଅଦ୍ୟାବଧି ବିଭିନ୍ନ ଭାଷାରେ ସଂକଳନଟିର ଅନ୍ୟୂନ ସତେଇଶିଟି ସମୀକ୍ଷା ଓ ମୂଲ୍ୟାୟନ ପ୍ରକାଶ ପାଇଛି । ଏହାର ଓଡ଼ିଆ ସମୀକ୍ଷକମାନଙ୍କ ମଧ୍ୟରେ ସଚ୍ଚି ରାଉତରାୟ, ସୁରେନ୍ଦ୍ର ମହାନ୍ତି, ଅଖିଳ ମୋହନ ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ହରପ୍ରସାଦ ଦାସ, ସୌଭାଗ୍ୟ କୁମାର ମିଶ୍ର ପ୍ରମୁଖ ଅନ୍ୟତମ।

■ ଜଗନ୍ନାଥ ପ୍ରସାଦଙ୍କ 'ପ୍ରଥମ ପୁରୁଷ' କବିତା ସଂକଳନର ପ୍ରଚ୍ଛଦ ଅଙ୍କନ କରିଥିଲେ ଭାରତୀୟ ଚଳଚ୍ଚିତ୍ର ଜଗତର ପ୍ରବାଦ ପୁରୁଷ ସତ୍ୟଜିତ୍ ରାୟ । କୌଣସି ଓଡ଼ିଆ ଗ୍ରନ୍ଥର ପ୍ରଚ୍ଛଦ ଅଙ୍କନ କ୍ଷେତ୍ରରେ ଏହା ଥିଲା ତାଙ୍କର ପ୍ରଥମ ଏବଂ ଶେଷ ସଂପୃକ୍ତି । ସେହିଭଳି ସଂକଳନଟିର

ପ୍ରକାଶକ ଥିଲେ ବିଶିଷ୍ଟ ଅଭିନେତା ଅନନ୍ତ ମହାପାତ୍ର, ପ୍ରକାଶନ କ୍ଷେତ୍ରରେ ଯାହାଙ୍କର ଏଇଟି ଥିଲା ପ୍ରଥମ ତଥା ଶେଷ ଅର୍ଘ୍ୟ ।

■ ଶ୍ରୀ ଦାସ ପିଲାଦିନରୁ ନାସ୍ତିକ ଥିଲେ ଏବଂ ଏକଦା (ସମ୍ଭବତଃ ୧୯୭୧ରେ) ସେ ହିନ୍ଦୁଧର୍ମ ପରିତ୍ୟାଗ ପୂର୍ବକ ବୌଦ୍ଧଧର୍ମ ଗ୍ରହଣ କରିବାକୁ ଉଦ୍ୟମ କରିଥିଲେ । ମାତ୍ର ତାଙ୍କୁ ଯେତେବେଳେ କୁହାଗଲା ଯେ ବୌଦ୍ଧଧର୍ମରେ ଯେଉଁ ଭିନ୍ନ ଭିନ୍ନ ମତ ଅଛି ସେଥିରୁ ଯେ କୌଣସି ଗୋଟିଏକୁ ବାଛି ସେଥିରେ ଦୀକ୍ଷିତ ହେବାକୁ ପଡ଼ିବ, ବୌଦ୍ଧଧର୍ମ ପ୍ରତି ରହିଆସିଥିବା ତାଙ୍କର ସମସ୍ତ ଆଗ୍ରହ ମଉଳିଗଲା ।

■ ଅଖିଳ ମୋହନ ପଟ୍ଟନାୟକଙ୍କ ସହିତ ଜଗନ୍ନାଥ ପ୍ରସାଦଙ୍କର ପୁରୁଣା ସଂପର୍କ ଥିଲା କଲେଜର ଷ୍ଟୁଡେଣ୍ଟ ଫେଡେରେଶନ୍ ଦିନରୁ । ଜେପିଙ୍କ କବିତା ବହି 'ପ୍ରଥମ ପୁରୁଷ' ବାହାରିବା ପରେ ସେ କହିଥିଲେ, "ମୁଁ ଯଦି କବି ହୋଇଥା'ନ୍ତି, ତେବେ ତମକୁ ଈର୍ଷା କରିଥା'ନ୍ତି" ଉତ୍ତରରେ ଜେପି କହିଥିଲେ, "ମୁଁ ଗଳ୍ପ ବି ଲେଖିବି; ସେତେବେଳେ ଈର୍ଷା କରିବ କି ନାହିଁ ଦେଖାଯିବ ।" ସେଥିପାଇଁ ଅଖିଳ ମୋହନ ସବୁବେଳେ ତାଙ୍କୁ ପଚାରୁଥିଲେ, ସେ ଧମକ ଦେଉଥିବା ଗଳ୍ପଟି କେବେ ଲେଖିବେ । ୧୯୮୦ରେ ଜେପି ତାଙ୍କର ପ୍ରଥମ ଗଳ୍ପ 'ଶବ୍ଦ ଅଥବା ଭବନାଥ କାହିଁକି ପାଗଳ ହୋଇଗଲା' (ପରବର୍ତ୍ତୀ ସମୟରେ 'ଶବ୍ଦଭେଦ' ଶୀର୍ଷକରେ ସଂକଳିତ) ଅଖିଳ ମୋହନ ସମ୍ପାଦନା କରୁଥିବା 'ସମାବେଶ' ପତ୍ରିକାକୁ ପଠାଇଥିଲେ । ଉତ୍ତରରେ ଅଖିଳ ମୋହନ ଲେଖିଥିଲେ- "ତମର ଗଳ୍ପ ପାଇଲି ଏବଂ ସାଙ୍ଗେ ସାଙ୍ଗେ ପଢ଼ିଲି । ଚମତ୍କାର ହୋଇଛି । ସତରେ ଭାରି ଭଲ ଲାଗିଲା ଭବନାଥର କବିତାର ସଂଜ୍ଞା । ରାଜନୈତିକ ଶ୍ଳେଷର ଅନ୍ତଃସଳିଳା ଫଲ୍‌ଗୁ ମଧ୍ୟ ଭଲ ଲାଗିଲା । ××" ସମ୍ଭବତଃ ସେ ବର୍ଷର ସବୁଠୁ ଚର୍ଚ୍ଚିତ ଗଳ୍ପ ଥିଲା ଏଇ ଗଳ୍ପଟି ।

■ ଜେପିଙ୍କ ପ୍ରଥମ ଗଳ୍ପ ପ୍ରକାଶ ପାଇଥିଲା ୧୯୮୦ରେ ଭୁବନେଶ୍ୱରରୁ ବାହାରୁଥିବା 'ସମାବେଶ' ପତ୍ରିକାରେ । (ଅବଶ୍ୟ ଲେଖକଙ୍କର ପ୍ରଥମ ପିଲାଳିଆ ଗଳ୍ପ ପ୍ରକାଶ ପାଇଥିଲା, ବମ୍ବେରୁ ବାହାରୁଥିବା ପତ୍ରିକା 'କୁଙ୍କୁମ'ର ଏପ୍ରିଲ-ମେ ୧୯୫୦ ଅଙ୍କରେ, ତାଙ୍କର ୧୪ବର୍ଷ ବୟସରେ) 'ସମାବେଶ'ରେ ସେତେବେଳେ ସେଇଟି 'ଶବ୍ଦ ଅଥବା ଭବନାଥ କାହିଁକି ପାଗଳ ହୋଇଗଲା' ଶିରୋନାମାରେ ପ୍ରକାଶ ପାଇଥିଲା । ପରବର୍ତ୍ତୀ କେତୋଟି ଗଳ୍ପ ମଧ୍ୟ ସେଇଭଳି ଦୀର୍ଘ ଶିରୋନାମାରେ ଥିଲା, ଯଥା 'ଜୀବନ୍ମୁକ୍ତି ଅଥବା ଅନସୂୟାଙ୍କୁ ହତ୍ୟା କଲା କିଏ ?' ସେତେବେଳେ ଜନୈକ ସମାଲୋଚକ ତାଙ୍କ ଗଳ୍ପମାନଙ୍କର ଏକ ଆଲୋଚନା ଲେଖିଥିଲେ, ଯାହାର ଦୀର୍ଘ ଶୀର୍ଷକ ଥିଲା 'ଜଗନ୍ନାଥ ପ୍ରସାଦ ଦାସ ଗଳ୍ପ ଲେଖିଲେ କାହିଁକି ?'

■ ୧୯୭୨ ମସିହାରେ ପାରାଦ୍ୱୀପରେ ଏକ ଅଏଲ ରିଫାଇନେରୀ କରିବା ପାଇଁ ଦାବି ହୋଇଥିଲା ଏବଂ ନିଶାମଣି ଖୁଣ୍ଟିଆଙ୍କ ଉଦ୍ୟମରେ ଏକ ବିରାଟ ସଭା ମଧ୍ୟ ହୋଇଥିଲା ।

'ଅମୃତ ବଜାର' ପତ୍ରିକାରେ ଜଗନ୍ନାଥ ପ୍ରସାଦ ଏ ବିଷୟରେ ଗୋଟିଏ ଲେଖା ଲେଖିଥିଲେ ଏବଂ ସେଥିରେ ତାଙ୍କର ଫଟୋଟିଏ ଛପା ହୋଇଥିଲା। ସେଇଟିକୁ ଦେଖି କେହି ଜଣେ ଅନାମିକା ରହସ୍ୟ କରି ପରିହାସ ଛଳରେ ଲେଖିଥିଲେ- "ମହାଶୟ, ଆମର ଏତେଦିନର ପ୍ରତୀକ୍ଷା ସଫଳ ହେଲା, କାରଣ ଆମେ ଆପଣଙ୍କ ଫଟୋ 'ଅମୃତ ବଜାର' ପତ୍ରିକାରେ ବାହାରିଥିବାର ଦେଖିଲୁ । କି ସୁନ୍ଦର ମନମତାଣିଆ ଚେହେରା ସତରେ! କିନ୍ତୁ ମନରେ ଏକ ଅବସୋସ ରହିଗଲା - ଆପଣ ନିଶ କାହିଁକି ରଖିନାହାନ୍ତି ଯେ ? ଦେଖିଲେ, ଆମେ ଆପଣଙ୍କ ଫଟରେ ନିଶ କରି ଦେଇଛୁ- କେତେ ସୁନ୍ଦର ଦେଖାଯାଉଛି !! ମାନେ, ଆପଣଙ୍କର ଯେଉଁ ନାରୀମନଲୋଭା ସୌନ୍ଦର୍ଯ୍ୟ, ତାହା ଶତଗୁଣ ବୃଦ୍ଧି ପାଇଛି । ଆମର ଗୋଟିଏ ଛୋଟ ମିନତି ରଖିବେ ? ଆପଣ ନିଶ ରଖନ୍ତୁ; ରଖିବେ ନା ? ନହେଲେ ଆମର ମନ ବହୁତ ବହୁତ ଦୁଃଖ ହେବ ।" ଏଠାରେ ଉଲ୍ଲେଖଯୋଗ୍ୟ ଯେ, ପତ୍ରପ୍ରାପ୍ତିର ଚାରି ବର୍ଷ ପରେ, ଅର୍ଥାତ୍ ୧୯୭୬ରେ ସେ ନିଶ ରଖିଥିଲେ ।




■ ୧୯୭୭ରେ ପ୍ରକାଶିତ ହୋଇଥିଲେ ବି ଜଗନ୍ନାଥ ପ୍ରସାଦଙ୍କ 'ସୂର୍ଯ୍ୟାସ୍ତ ପୂର୍ବରୁ' ଲିଖିତ ହୋଇଥିଲା ୧୯୭୨ରେ ଏବଂ ପ୍ରଥମେ ଏହା ୧୯୭୪ରେ କଲିକତାରୁ ବାହାରୁଥିବା 'ନବରବି' ପତ୍ରିକାରେ ପ୍ରକାଶ ଲାଭ କରିଥିଲା । ବିଶେଷ ଉଲ୍ଲେଖଯୋଗ୍ୟ ଯେ ସେହି ୧୯୭୨ରେ ଏହାର ବଂଗଳା ଅନୁବାଦ 'ସୂର୍ଯ୍ୟାସ୍ତେର ଆଗେ' କଲିକତାର ଥିଏଟର ଗିଲ୍ଡ ଦ୍ୱାରା ଶ୍ୟାମଳ ସେନ୍‌ଙ୍କ ନିର୍ଦ୍ଦେଶନାରେ ମଞ୍ଚସ୍ଥ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା । ବଂଗଳା ଭାଷାରେ ଏହି ନାଟକର ଅନୁବାଦ ପୁସ୍ତକରେ (ଅନୁବାଦକ: ଶିବଶେଖର ସରକାର) ବିଶିଷ୍ଟ ଲେଖକ ପ୍ରମଥନାଥ ବିଶି ମୁଖବନ୍ଧରେ ଲେଖିଥିଲେ ଯେ ନାଟକଟି ଏକ ନୂତନ ଢଙ୍ଗରେ ଲେଖାଯାଇଛି । ବିଶେଷତଃ ନାଟକୀୟ ସଂଳାପ ସହ ତର୍କପୂର୍ଣ୍ଣ ଭାଷାର ମିଶ୍ରଣ ଦ୍ୱାରା ଏଥିରେ ଏକ ନୂତନ ନାଟକୀୟ କୌଶଳର ପ୍ରୟୋଗ ହୋଇପାରିଛି । ପରେ ୧୯୭୪ରେ କଟକ ଆକାଶବାଣୀରୁ ପ୍ରସାରିତ ହୋଇ କୌଣସି ପୁରସ୍କାର ପାଇବାରୁ ଏହାର ଅନୁବାଦ ଦିଲ୍ଲୀକୁ ପଠାଯାଇଥିଲା । ୧୯୭୬ ମସିହା (୨୫-୨୭ ମେ') ରେ ଏହାର ହିନ୍ଦୀ ଅନୁବାଦ 'ସୂର୍ଯ୍ୟାସ୍ତକ୍'ର ସଫଳ ପରିବେଷଣ କରିଥିଲେ ଦିଲ୍ଲୀର ନାଟ୍ୟସଂସ୍ଥା 'ଦିଶାନ୍ତର' । ନାଟକଟିର ନିର୍ଦ୍ଦେଶନା ଦେଇଥିଲେ ରାମ

ଗୋପାଲ୍ ବଜାଜ ଓ ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ ଓମ୍ ପୁରୀ । ଅବଶ୍ୟ ପୁସ୍ତକ ପ୍ରକାଶନ ସମୟରେ (ଅନୁବାଦିକା: କାନ୍ତିଦେବ)ପ୍ରକାଶକଙ୍କ ପ୍ରସ୍ତାବ ଅନୁଯାୟୀ ନାମକରଣରୁ 'କ' ଅକ୍ଷର ଉଠାଇ ଦିଆଯାଇ ଥିଲା । ନାଟକଟିର ହିନ୍ଦୀ ରୂପାନ୍ତର ବେଦ ସିହ୍ନାଙ୍କ ନିର୍ଦ୍ଦେଶନାରେ ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରରୁ ମଧ୍ୟ ପ୍ରସାରିତ ହୋଇଥିଲା । ୧୯୭୭ ଜୁଲାଇରେ ଇଣ୍ଟର ନ୍ୟାସ୍‌ନାଲ୍ ଥିଏଟର ଦ୍ୱାରା ଏହା ମୂଳ ଓଡ଼ିଆରେ ଅଭିନୀତ ହୋଇଥିଲା ।

୧୯୭୭ରେ ମଧ୍ୟ ଏହା ଓଡ଼ିଆରେ ପୁସ୍ତକ ଆକାରରେ ପ୍ରକାଶଲାଭ କରିଥିଲା । (ପୁସ୍ତକଟିର ଦ୍ୱିତୀୟ ସଂସ୍କରଣ ୧୯୮୬ରେ ପ୍ରକାଶ ପାଇଥିଲା ବେଳେ ଚଳିତବର୍ଷ (୨୦୧୫) ଟାଇମ୍‌ପାସ୍ ପ୍ରକାଶନ ଦ୍ୱାରା ଏହାର ତୃତୀୟ ସଂସ୍କରଣ ପ୍ରକାଶିତ ହୋଇଛି ।) ୧୯୭୮ରେ ଲେଖକଙ୍କ ଦ୍ୱାରା ଏହାର ଇଂରାଜୀ ଅନୁବାଦ Before the Sunset ପ୍ରକାଶିତ ହୋଇଥିଲା । ସେହି ୧୯୭୮ରେ 'ଐକ୍ୟତାନ' ପ୍ରଯୋଜନାରେ ଅହମିୟା ଭାଷାରେ ଏହାର ମଞ୍ଚନ ଗୌହାଟୀ ଠାରେ ହୋଇଥିଲା । ୧୯୭୯ରେ ଏହାର ପଞ୍ଜାବୀ ଅନୁବାଦ 'ଆଠନ ବେଳେ' ଚଣ୍ଡୀଗଡ଼ରେ ମଞ୍ଚସ୍ଥ ହୋଇଥିଲା ଓ ସେହିବର୍ଷ ଏହା ପଞ୍ଜାବୀ ଭାଷାରେ (ଅନୁବାଦକ: ଜଗଜିତ ଗଗନ) ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । ନାଟକଟି କନ୍ନଡ଼ ଭାଷାରେ ଅନୂଦିତ ହେଲା ୧୯୮୦ରେ । ଶ୍ରୀ ପରମେଶଙ୍କ ଦ୍ୱାରା ଏହାର କନ୍ନଡ଼ ଶିରୋନାମା ରହିଲା 'ହୋଜୁ ମୁଲୁଗୁୱା ମୁନ୍ନା ।' ପୁସ୍ତକର ମୁଖବନ୍ଧରେ ବି.ଭି.କାରନ୍ଥ ମନ୍ତବ୍ୟ ଦେଇଥିଲେ ଯେ କନ୍ନଡ଼ ସାହିତ୍ୟ ପାଇଁ ଏହି ଅନୂଦିତ ପୁସ୍ତକ ଏକ ମହାର୍ଘ ଅବଦାନ । ଏହା ହେଉଛି ପ୍ରଥମ ଆଧୁନିକ ଓଡ଼ିଆ ନାଟକ, ଯାହା କନ୍ନଡ଼ ଭାଷାରେ ଅନୂଦିତ ହୋଇଥିଲା । ଏତଦ୍‌ଭିନ୍ନ ଗୁଜରାତୀରେ ମଧ୍ୟ ଏହା ବମ୍ବେ ଆକାଶବାଣୀରୁ (୧୯୮୦ ନଭେମ୍ବର ୨୩ରେ) ପ୍ରସାରିତ ହୋଇଥିଲା । ନାଟକଟି ସଂପର୍କରେ ପ୍ରତିକ୍ରିୟା ପ୍ରକାଶ କରି 'ହିନ୍ଦୁସ୍ତାନ ଷ୍ଟାଣ୍ଡାର୍ଡ' ଲେଖିଥିଲା- "ଏହା ଏକ ସଂବେଦନଶୀଳ, ମାର୍ଜିତ ଏବଂ ଉଚ୍ଚକୋଟୀର ନାଟକ ।" ପରବର୍ତ୍ତୀ ସମୟରେ ଆଧୁନିକ ଭାରତୀୟ ନାଟକର ଏକ ସଂକଳନରେ ଏହି ନାଟକ ଅନ୍ତର୍ଭୁକ୍ତ ହେଲା, ଯାହାର ସମ୍ପାଦନା କରିଥିଲେ ଚନ୍ଦ୍ରଶେଖର କମ୍ବର । ସମ୍ଭବତଃ ଏହା ପୂର୍ବରୁ ଅନ୍ୟ କୌଣସି ଓଡ଼ିଆ ନାଟକ ଏଭଳି ସଫଳତା ଲାଭ କରି ନ ଥିଲା ।

■ ଜଗନ୍ନାଥ ପ୍ରସାଦ ଦାସଙ୍କର ଗବେଷଣାମୂଳକ ଗ୍ରନ୍ଥ 'ପୁରୀ ପେଣ୍ଟିଙ୍ଗ୍‌ସ: ଦ ଚିତ୍ରକର ଆଣ୍ଡ ହିଜ୍ ୱାର୍କ'୧୯୮୨ରେ ହ୍ୟୁମ୍ୟାନିଟିଜ୍ ପ୍ରେସ୍ (ଆମେରିକା) ଏବଂ ଆର୍‌ନଲ୍ଡ ହାଇନେମ୍ୟାନ୍ (ଭାରତ) ଦ୍ୱାରା ଏକସଙ୍ଗେ ପ୍ରକାଶିତ ହୋଇଥିଲା । ଏହି ଗ୍ରନ୍ଥ ପ୍ରକାଶନ ପରେ ଜଣେ ପ୍ରମୁଖ କଳା ସମାଲୋଚକ ଭାବରେ ଜଗନ୍ନାଥ ପ୍ରସାଦଙ୍କ ଖ୍ୟାତି ଦେଶ ବିଦେଶରେ ବ୍ୟାପି ଯାଇଥିଲା । ଗ୍ରନ୍ଥଟି ଉଦ୍ଦେଶ୍ୟରେ ଆବଶ୍ୟକ ତଥ୍ୟ ସଂଗ୍ରହ ପାଇଁ ଶ୍ରୀ ଦାସ ୧୯୭୯-୮୦ ମଧ୍ୟରେ ପ୍ରାୟ ଆଠ ମାସ ପୁରୀ ଓ ପଟଚିତ୍ର ଶିଳ୍ପୀମାନଙ୍କ ଗ୍ରାମ ରଘୁରାଜପୁରରେ ବିତାଇଥିଲେ । ଏତଦ୍‌ବ୍ୟତୀତ ସେ ବନାରସ, ଲଣ୍ଡନ ଓ ଅହମଦାବାଦର ବିଭିନ୍ନ ମ୍ୟୁଜିୟମ୍‌ରୁ ମଧ୍ୟ ତଥ୍ୟ ସଂଗ୍ରହ କରିଥିଲେ । ଗ୍ରନ୍ଥଟି ସଂପର୍କରେ ବରିଷ୍ଠ ଚିତ୍ରଶିଳ୍ପୀ, କଳା ସମାଲୋଚକ ତଥା ଲେଖକ

ଦିନନାଥ ପାଠୀ ଟିପ୍ପଣୀ ପ୍ରଦାନ କରିଥିଲେ- "ଓଡ଼ିଆ ପ୍ରତି ଜଗନ୍ନାଥ ପ୍ରସାଦଙ୍କର ସବୁଠାରୁ ମହାର୍ଘ ଅବଦାନ 'ପୁରୀ ପେଣ୍ଟିଙ୍ଗ୍‌ସ' ଗ୍ରନ୍ଥଟି । ପ୍ରତିଷ୍ଠିତ ଓଡ଼ିଆ ଲେଖକ ଓ ଅନୁବାଦକ ଗଣେଶ୍ୱର ମିଶ୍ରଙ୍କ ଭାଷାରେ- 'ଓଡ଼ିଶାର କଳା ସମାଲୋଚନା କ୍ଷେତ୍ରରେ 'ପୁରୀ ପେଣ୍ଟିଙ୍ଗ୍‌ସ' ଏକ ଦିଗବାରେଣୀ, ଏହା ଯେ କେହି ସ୍ୱୀକାର କରିବେ । ×× କଳା ସମାଲୋଚନା କ୍ଷେତ୍ରରେ ଏହା ଏକ ସାର୍ବକାଳିକ କୃତି ବା କ୍ଲାସିକ୍ ।" ଓଡ଼ିଶାର ପ୍ରବୀଣ ରାଜନୀତିଜ୍ଞ ତଥା ଐତିହାସିକ ହରେକୃଷ୍ଣ ମହତାବ ଡିସେମ୍ବର ୧୯୮୨ ସଂଖ୍ୟା 'ଝଙ୍କାର' ସମ୍ପାଦକୀୟରେ ଗ୍ରନ୍ଥଟି ସମ୍ପର୍କରେ ଉଲ୍ଲେଖ କରିଥିଲେ "ଲେଖକ ଓଡ଼ିଶାର ସାଂସ୍କୃତିକ ଜୀବନର ଏକ ଅନ୍ଧକାରମୟ ଅଂଶରେ ଉଜ୍ଜ୍ୱଳ ଆଲୋକପାତ କରିଛନ୍ତି ।" ଗ୍ରନ୍ଥଟି ପ୍ରକାଶିତ ହେବା ପରେ ଓଡ଼ିଶାର ପଟଚିତ୍ର ତଥା ପାରମ୍ପରିକ ଚିତ୍ରକଳା ଓ ରଘୁରାଜପୁରର ପ୍ରସିଦ୍ଧି ବେଶ୍ ବୃଦ୍ଧି ଲାଭ କରିଛି । ପଟଚିତ୍ର କଳା ସଂପ୍ରତି ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ମାନ୍ୟତାପ୍ରାପ୍ତ ହୋଇଛି । ରଘୁରାଜପୁରର ଚିତ୍ରଶିଳ୍ପୀ ଜଗନ୍ନାଥ ମହାପାତ୍ରଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ ୧୯୯୭ ସମାବର୍ତ୍ତନ ଉତ୍ସବରେ ଡି.ଲିଟ୍. ଉପାଧିରେ ଭୂଷିତ କରିଛନ୍ତି । ରଘୁରାଜପୁର ନିକଟସ୍ଥ ଦାଣ୍ଡସାହିର ପଟଚିତ୍ର ଶିଳ୍ପୀ ଅନନ୍ତ ମହାରଣା ସମଗ୍ର ଦେଶର ଶ୍ରେଷ୍ଠତମ ଶିଳ୍ପୀ ଭାବରେ ୨୦୦୩ରେ 'ଶିଳ୍ପଗୁରୁ' ସମ୍ମାନରେ ସମ୍ମାନିତ ହୋଇଛନ୍ତି ।

■ ୧୯୮୨ରେ ଜଗନ୍ନାଥ ପ୍ରସାଦଙ୍କ Puri Paintings ବହି ପ୍ରକାଶ ପାଇଲା । ଏଥିରେ ଗୋଟିଏ ଚିତ୍ର ଥିଲା 'Young Apprentice Learning Painting' । ଗୋଟିଏ ଛୋଟ ପିଲା ଚିତ୍ର ଆଙ୍କୁଥିବାର ଫଟୋ ଉଠାଇଥିଲେ ଡେଭିଡ ମେ । ୧୯୮୩ରେ ପପୁଲ ଜୟକରଙ୍କ ତତ୍ତ୍ୱାବଧାନରେ ଲଣ୍ଡନରେ 'ଅଦିତି' ନାମକ ଏକ ଭାରତୀୟ ମେଳା ହେଲା । ସେଠାକୁ କିଛି କଳାର ନମୁନା ଓ କିଛି କଳାକାର ପଠାଇବାର ଦାୟିତ୍ୱ ଦିଆଯାଇଥିଲା ରାଜୀବ ସେଠୀଙ୍କୁ । ସେ ଓଡ଼ିଶା ଯାଇ Puri Paintings ବହିରେ ଥିବା ଚିତ୍ରର ପିଲାଟିକୁ ଖୋଜି ବାହାର କରିଥିଲେ ଏବଂ ସେହି ପିଲା ଶରତ କୁମାର ସାହୁକୁ ଲଣ୍ଡନ ପଠାଇବା ପାଇଁ ଠିକ୍ କରିଥିଲେ । ଜଗନ୍ନାଥ ପ୍ରସାଦ ସେଇ ପିଲାଟିର ଲଣ୍ଡନ ଯିବାର ବ୍ୟବସ୍ଥା କରିଦେଇଥିଲେ ।

■ ଜଗନ୍ନାଥ ପ୍ରସାଦଙ୍କର 'ପୁରୀ ପେଣ୍ଟିଙ୍ଗ୍‌ସ' (୧୯୮୨)ର ଅଭୂତପୂର୍ବ ସଫଳତା ପରେ ସେ ଆମେରିକୀୟ ଜୋଆନ୍ନା ଉଇଲିଆମ୍‌ସଙ୍କ ସହଯୋଗରେ ପ୍ରକାଶ କଲେ 'ଚିତ୍ରପୋଥି: ଓଡ଼ିଶାର ଚିତ୍ରିତ ତାଳପତ୍ର ପୋଥି'(୧୯୮୫) । ପ୍ରଥମ ପୁସ୍ତକଟି କେବଳ ପୁରୀ ଜିଲ୍ଲାର ପଟଚିତ୍ର ବିଷୟବସ୍ତୁ ଉପସ୍ଥାପନାରେ ସୀମିତ ଥିଲା ବେଳେ ଦ୍ୱିତୀୟ ପୁସ୍ତକଟି ଏକ ସମ୍ପ୍ରସାରିତ ଦୃଷ୍ଟିଭଙ୍ଗୀ ନେଇ ସମଗ୍ର ଓଡ଼ିଶାର କଳା ପରମ୍ପରା ସମ୍ପର୍କିତ (ଅବଶ୍ୟ କେବଳ ତାଳପତ୍ର ପୋଥି ସମ୍ବନ୍ଧୀୟ) ବହୁ ଉପାଦେୟ ତଥ୍ୟ ବହନ କରିଥିଲା । ବାସ୍ତବରେ ଏହା ଥିଲା ଏକ ଅନନ୍ୟ କୃତି, କାରଣ ଏହା ପୂର୍ବରୁ ସମ୍ଭବତଃ ଏପରି ଲେଖା ପ୍ରକାଶ ପାଇ ନ ଥିଲା । 'ମାର୍ଗ' ପତ୍ରିକାର ସମ୍ପାଦକ ଶ୍ରୀ ପ୍ରତାପାଦିତ୍ୟ ପାଲ ପୁସ୍ତକଟି ସମ୍ପର୍କରେ ମନ୍ତବ୍ୟ ଦେଇ ଲେଖିଥିଲେ, "ଓଡ଼ିଶାର ପଟଚିତ୍ର ଓ



ଜୋଆନ୍ନା ଉଇଲିଆମ୍ସଙ୍କ ସହ ଶ୍ରୀ ଦାସ

ଚିତ୍ରପୋଥି ସଂପର୍କିତ ଗବେଷଣା ପାଇଁ ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କ କାର୍ଯ୍ୟ ବିଶେଷ ଉଲ୍ଲେଖନୀୟ । ଜଣେ ହେଲେ ଜେପି ଓ ଆଉ ଜଣେ, ଆମେରିକୀୟ ଜୋଆନ୍ନା ଉଇଲିଆମ୍ସ, ଯାହାଙ୍କର ଅବଦାନ ଚିର ସ୍ମରଣୀୟ ହୋଇ ରହିବ ।"

ଏ ସମ୍ପର୍କରେ ଓଡ଼ିଶା କଳାକାର ସଂଘର ତତ୍‌କାଳୀନ କାର୍ଯ୍ୟକାରୀ ସଭାପତି ମତବ୍ୟକ୍ତ କରିଥିଲେ, "ଜୋଆନ୍ନା ଉଇଲିଆମ୍ସ ଓ ଜେପିଙ୍କ ଦ୍ୱାରା ପ୍ରସ୍ତୁତ ଗବେଷଣାତ୍ମକ ଉପଲବ୍ଧିକୁ ଲକ୍ଷ୍ୟ କରି ଆମେ ସେମାନଙ୍କୁ ଯେତେ ପ୍ରଶଂସା କଲେ ବି ତାହା ଯଥେଷ୍ଟ ନୁହେଁ ।"

■ ଭୁବନେଶ୍ୱରର ଉତ୍କଳ ରଙ୍ଗମଞ୍ଚ ଟ୍ରଷ୍ଟର ଜଗନ୍ନାଥ ପ୍ରସାଦ ଅନ୍ୟତମ ଟ୍ରଷ୍ଟି । ଏକଦା (୧୯୬୮-୭୭) ସେ କଟକ କଳାବିକାଶ କେନ୍ଦ୍ରର କାର୍ଯ୍ୟକାରୀ ସଭାପତି ଥିଲେ । ଦିଲ୍ଲୀର ନ୍ୟାସ୍‌ନାଲ୍ ସ୍କୁଲ ଅଫ୍ ଡ୍ରାମା ଅନୁଷ୍ଠାନର ସେ କାର୍ଯ୍ୟକାରୀ ପରିଷଦର ସଭ୍ୟ ତଥା ଉପସଭାପତି ଭାବରେ କାର୍ଯ୍ୟ କରିଛନ୍ତି । ସେ ଇଣ୍ଟରନ୍ୟାସନାଲ ଥିଏଟର ଗ୍ରୁପ୍‌ର ଅନ୍ୟତମ ପ୍ରମୁଖ ସଭ୍ୟ ଭାବରେ ସ୍ୱିଡେନ୍ ଓ ସୋଭିଏତ୍ ୟୁନିୟନ୍ ଗସ୍ତ କରି ନାଟ୍ୟ ଆନ୍ଦୋଳନ ସଂପର୍କରେ ତଥ୍ୟ ସଂଗ୍ରହ କରିଛନ୍ତି ।

■ ସିନେମା ଜଗତ ସହ ଜଗନ୍ନାଥ ପ୍ରସାଦଙ୍କର ସଂପୃକ୍ତି ବେଶ୍ ଉଲ୍ଲେଖଯୋଗ୍ୟ । ୧୯୮୫ରେ ସେ ଥିଲେ ଚିଲ୍‌ଡ୍ରେନ୍‌ସ ଫିଲ୍ମ ସୋସାଇଟି ଅଫ୍ ଇଣ୍ଡିଆ (ସି.ଏଫ୍.ଏସ୍.ଆଇ.)ର କାର୍ଯ୍ୟକାରୀ ପରିଷଦର ସଭ୍ୟ । ଏଥିରେ ଅନ୍ୟତମ ସଭ୍ୟ ଥିଲେ ପ୍ରମୁଖ ଗୀତିକାର ଗୁଲ୍‌ଜାର ।

୧୯୮୫ରେ ବାଙ୍ଗାଲୋର୍‌ରେ ଅନୁଷ୍ଠିତ ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ସେ ସଭାପତିତ୍ୱ କରିଥିଲେ । ୧୯୮୭ରେ ତାଙ୍କ ଉଦ୍ୟମରେ ସି.ଏଫ୍.ଏସ୍. ଆଇ. ପକ୍ଷରୁ



ଗୁଲଜାରଙ୍କ ସହ ଶ୍ରୀ ଦାସ

ଭୁବନେଶ୍ୱରଠାରେ ଆୟୋଜିତ ହୋଇଥିଲା ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ମହୋତ୍ସବ । ଏଥିରେ ସେ ବିଶିଷ୍ଟ ଚିତ୍ରତାରକା ଅମୋଲ୍ ପାଲେକରଙ୍କ ସହିତ କାର୍ଯ୍ୟ କରିଥିଲେ । ୧୯୮୯ରେ ଇଣ୍ଟରନ୍ୟାସ୍‌ନାଲ୍ ଚିଲଡ୍ରେନ୍‌ସ ଫିଲ୍ମ ଫେଷ୍ଟିଭାଲ୍‌ର ସେ ଥିଲେ ସଭାପତି । ୧୯୯୦ରେ ଫିନ୍‌ଲ୍ୟାଣ୍ଡର ଅବୋଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ସେ ଥିଲେ ବିଚାରକ ମଣ୍ଡଳୀର ସଦସ୍ୟ । ଦୂରଦର୍ଶନର ଚଳଚ୍ଚିତ୍ର ସ୍କ୍ରିପ୍ଟ ସିଲେକ୍‌ସନ କମିଟି ସହିତ ସେ ମଧ୍ୟ ସଂପୃକ୍ତ ଥିଲେ । ସେ ୧୯୮୮ରୁ ୧୯୯୩ ପର୍ଯ୍ୟନ୍ତ ଓଡ଼ିଶା ଫିଲ୍ମ ଡେଭେଲପମେଣ୍ଟ କର୍ପୋରେସନରେ ସାମିଲ ହୋଇଥିଲେ । ସତ୍ୟଜିତ ରାୟ, ମୃଣାଳ ସେନ୍, ଜୟା ବଚ୍ଚନ, ଓମ୍ ପୁରୀ, ହୃଷୀକେଶ ମୁଖାର୍ଜୀ, ରବି ଘୋଷ, ଶରତ ପୂଜାରୀ, ଧୀର ବିଶ୍ୱାଳ, ବାବୁଲାଲ୍ ଦୋଶୀ ଆଦି ଚଳଚ୍ଚିତ୍ର ଜଗତର ପ୍ରମୁଖ ବ୍ୟକ୍ତିତ୍ୱଙ୍କ ସହ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା ।

■ ଜେପିଙ୍କର ଗୋଟିଏ କ୍ଷୁଦ୍ରଗଳ୍ପ 'ସାକ୍ଷାତ୍‌କାର'ର ହିନ୍ଦୀ ଟେଲିଫିଲ୍ମ 'ଇଣ୍ଟରଭ୍ୟୁ'ନାମରେ ପ୍ରସାରିତ ହୋଇଥିଲା । ସେଇଭଳି ତାଙ୍କ ଗଳ୍ପ, 'ଲୋକ ସଂସ୍କୃତି' ଓ 'ଶେଷ ପର୍ଯ୍ୟନ୍ତ' ର ଓଡ଼ିଆ ଟେଲିଫିଲ୍ମ ମଧ୍ୟ ପ୍ରସାରିତ ହୋଇଥିଲା ।

■ ୧୯୮୪ ମସିହାରେ ଦିଲ୍ଲୀରେ ଗଠିତ 'ଦ ପ୍ରୋଏଟ୍ରି ସୋସାଇଟି ଅଫ୍ ଇଣ୍ଡିଆ'ର ସେ ଥିଲେ ସଭାପତି । ୧୯୮୮ରୁ ବ୍ରିଟିଶ୍ କାଉନ୍‌ସିଲ୍ ସହଯୋଗରେ ଏହି ଅନୁଷ୍ଠାନ ସର୍ବଭାରତୀୟ କବିତା ପ୍ରତିଯୋଗିତାଟିଏ ଆୟୋଜନ କରିଆସୁଛି । ତରୁଣ କବିମାନଙ୍କୁ କବିତା ରଚନାରେ ଦିଗ୍‌ଦର୍ଶନ ତଥା ଉତ୍ସାହ ପ୍ରଦାନ କରିବା ସୋସାଇଟିର ଏକ ମୁଖ୍ୟ କାର୍ଯ୍ୟକ୍ରମ । ଏହା ମଧ୍ୟ 'ଦ

ଜର୍ଣ୍ଣାଲ୍ ଅଫ୍ ଦ ପୋଏଟ୍ରି ସୋସାଇଟି ଅଫ୍ ଇଣ୍ଡିଆ' ନାମରେ ଇଂରାଜୀରେ ଷାଣ୍ମାସିକ କବିତା ପତ୍ରିକାଟିଏ ପ୍ରକାଶ କରେ । ୧ ୯ ୯ ୨ରେ ଜଗନ୍ନାଥ ପ୍ରସାଦ ତରୁଣ କବିମାନଙ୍କ ପାଇଁ କବିତା କର୍ମଶାଳାର ପରିକଳ୍ପନା କରି କେନ୍ଦ୍ର ସରକାରଙ୍କ ମାନବ ସମ୍ବଳ ବିଭାଗ ପକ୍ଷରୁ ଆବଶ୍ୟକ ଆର୍ଥିକ ସହାୟତାର ବନ୍ଦୋବସ୍ତ କରିଥିଲେ । ଅଦ୍ୟାବଧି ତାଙ୍କ ଉଦ୍ୟମରେ କବିତା କର୍ମଶାଳା ଆୟୋଜିତ ହୋଇ ଆସୁଛି ।

■ ଦିଲ୍ଲୀରେ ସାହିତ୍ୟ ଅକାଦେମି ଦ୍ୱାରା ଆୟୋଜିତ ଏକ ସାକ୍ଷାତ୍‌କାରରେ କବି କେକି ଦାରୁୱାଲା ଜଗନ୍ନାଥ ପ୍ରସାଦଙ୍କୁ ପଚାରିଥିଲେ, "ଆଇ.ଏ.ଏସ୍. ଚାକିରିରୁ ଇସ୍ତଫା ଦେଇଥିବାରୁ ଆପଣ ଦୁଃଖ କରନ୍ତି କି ?" ଉତ୍ତରରେ ସେ କହିଥିଲେ, "ହଁ, ମୁଁ ଦୁଃଖ କରେ- ଏ ଚାକିରିରୁ ଆଗରୁ ଇସ୍ତଫା ଦେଇ ନ ଥିଲି ବୋଲି ।"

■ ବିକାଶ ପବ୍ଲିଶିଙ୍ଗ୍ ହାଉସ୍‌ର ପ୍ରକାଶକ ନରେନ୍ଦ୍ର କୁମାର ଜେପି ଓ ଫରାସୀ କବି କ୍ୟାଥରିନ୍ କ୍ଲେମାଁଙ୍କ ମିଳିତ ଲେଖାକୁ ନେଇ ଏକ ପୁସ୍ତକ ପ୍ରକାଶ କରିବାକୁ ଆଗ୍ରହୀ ଥିଲେ । ତାଙ୍କର ପ୍ରସ୍ତାବ ଥିଲା ଯେ କ୍ୟାଥରିନ୍ ଭାରତ ଉପରେ ଫରାସୀ ଭାଷାରେ କବିତା ଲେଖନ୍ତୁ ଓ ଜେପି ତାହାର ଅନୁବାଦ କରନ୍ତୁ । ଉଭୟ କଲିକତାର ପ୍ରସିଦ୍ଧ ଦର୍ଶନୀୟ ସ୍ଥାନ କାଳୀଘାଟର କାଳୀମନ୍ଦିର ପରିଦର୍ଶନ କରିଥିଲେ । କ୍ୟାଥରିନ୍ ପରେ 'କାଳୀଘାଟ' ଶୀର୍ଷକ କବିତା ରଚନା କରିଥିଲେ, ଯାହାର ଅନୁବାଦ ଉଭୟ ଜେପି ଓ କ୍ୟାଥରିନ୍ କରିଥିଲେ । ପରିଶେଷରେ ଅନୂଦିତ ପୁସ୍ତକଟି 'ବିକାଶ ପ୍ରକାଶନ ସଂସ୍ଥା' ଦ୍ୱାରା ୧ ୯ ୯ ୧ ମସିହାରେ 'ଗ୍ରୋଇଙ୍ଗ୍ ଆନ୍ ଇଣ୍ଡିଆନ୍ ଷ୍ଟାର୍' ଶିରୋନାମାରେ ପ୍ରକାଶିତ ହେଲା । ସେଥିରେ ଜେପିଙ୍କ ପ୍ରତି କ୍ୟାଥ୍ରିନ୍‌ଙ୍କ କୃତଜ୍ଞତା ଥିଲା ଏମିତି– "କେ.ପି.ଦାସଙ୍କ ଅବିରାମ ସାହାଯ୍ୟ, ସହଯୋଗ, ସମର୍ଥନ ବିନା ଏ ପୁସ୍ତକର ଆତ୍ମପ୍ରକାଶ କେବେ ହେଁ ସମ୍ଭବ ହୋଇପାରି ନ ଥା'ନ୍ତା ।" ଚଳିତବର୍ଷ ( ୨ ୦ ୧ ୫ ) ପ୍ରକାଶ ଲାଭ କରିଥିବା ନିଜର ଆତ୍ମଜୀବନୀରେ ମଧ୍ୟ କ୍ୟାଥରିନ୍ ତାଙ୍କର କାଳୀ ମନ୍ଦିର ଦର୍ଶନ ସମ୍ପର୍କରେ ଏକ କୌତୂହଳପ୍ରଦ ବିବରଣୀ ପ୍ରଦାନ କରିଛନ୍ତି । ପ୍ରାସଙ୍ଗିକତା ଦୃଷ୍ଟିରୁ ଏଠାରେ ତାହା ଅବିକଳ ଉଦ୍ଧାର କରାଗଲା:

Pages 409 – 410: "D'ordinaire ... deuxièmeIndien."

"Usually, in this temple, Kali is a small black stone with a red tongue and two white eyes. But on her feast day, there's a large clay statue with its tongue stuck out, and its eight arms holding swords, knives, axes, or severed heads. I was pushed towards her, my arms were raised and the palms of my hands placed against the hands of clay. I was covered in blood, I was wading in blood, the white marble floor was dripping with blood, and the priest, a horrible man, was demanding money. The Indian official who was accompanying me looked at me in desperation. Before

going into the temple everything made of leather – handbags, sandals, belts – had been removed. We had nothing with us, not even one rupee. The police had to be called and finally we got away.




It wasn't blood on the hands of the goddess or on the white marble, but juice made from the petals of hibiscus flowers. I saw that when I was cleaning the palms of my hands, the red juice was turning purple and I could feel the pistils of the flowers beneath my fingers. I felt foolish.

To get over what had just happened, the official suggested we get a glass of lemonade. And I saw the woman who was selling the lemonade rinse two glasses in a small muddy stream before filling them. Could I refuse to drink it? Impossible. I drank it. That time, there was no problem. But years later, when I was giving a talk in Delhi, I got a frog in my throat; I accepted a glass of water. Typhoid. It's from details such as these that one can understand the importance of potable water when it's not available. In India, it's widely not available, except in the houses of well-off people, who buy filters costing what an upper-level manager would earn in a month.

My official and I were drinking our lemonades when, because of what I had just gone through, a sentence escaped my lips.

– Well, Marx was right!

– Yes, truly, religion is the opium of the people, isn't it? My Indian official answered immediately.

To my great joy, there were indeed atheist Marxists in India! This was the excellent poet J.P. Das, from Orissa, who was to become a dear friend. I looked at him. A small mustache, dark complexioned, alert and sensitive eyes, bright smile, great sensitivity. J.P. – pronounced Djaipi – was my second Indian."

Page 508: "Je montrai ... *Indian Star*."

"I showed my landslide poems to poet J.P. Das, the good friend with

whom I had been crushed in the Kali temple in Kolkata, six years earlier. In India, poetry is a part of life; people meet in public to recite it, endless evenings lit by clay lamps are spent two or three times a week. J.P. thought my poems weren't too bad, found an Indian publisher, helped me translate them, and they were published in English in Delhi by Vikas, with a title suggested by SudhirKakar, *Growing an Indian Star*."

■ ଭାରତର ପ୍ରାନ୍ତୀୟ ଭାଷାମାନଙ୍କରେ ନାରୀକବିଙ୍କ ଲିଖିତ କବିତାକୁ ଅନୁବାଦ କରିବା ଉଦ୍ଦେଶ୍ୟରେ ଓଡ଼ିଆ କବିତା ବିଭାଗ ଅନୁବାଦ କଲା ବେଳେ ଆର୍ଲିନ୍ ଜାଇଡ୍ ଜେପିଙ୍କ ଅକୁଣ୍ଠ ସାହାଯ୍ୟ ଲୋଡ଼ିଥିଲେ । ପନ୍ଦର ଜଣ ଓଡ଼ିଆ କବିଙ୍କର ଅଠରଟି କବିତାର ଇଂରାଜୀ ଅନୁବାଦ ପେଙ୍ଗୁଇନ୍‌ର 'ଇନ୍ ଦେୟାର ଓନ୍ ଭଏସ' ସଂକଳନରେ ପ୍ରକାଶ ପାଇଲା ୧୯୯୩ ମସିହାରେ । ଏହା ପୂର୍ବରୁ ବିକାଶ ପ୍ରକାଶନ ସଂସ୍ଥା ୧୯୯୨ ମସିହାରେ ଅନ୍ୟ ଏକ ସଂକଳନ ପ୍ରକାଶ କରିଥିଲେ, ଯାହାର ଶିରୋନାମା ଥିଲା 'ଅଣ୍ଡର୍ ଏ ସାଇଲେଣ୍ଟ ସନ୍' । ଏହି ସଂକଳନରେ ଅନ୍ତର୍ଭୁକ୍ତ ଥିଲା ଜାଇଡ୍ ଓ ଜେପିଙ୍କ ଦ୍ୱାରା ଅନୂଦିତ ଓଡ଼ିଆ ନାରୀକବିଙ୍କ କବିତା । ପେଙ୍ଗୁଇନ୍ ସଂକଳନରେ ସ୍ଥାନିତ ହୋଇଥିବା କବିତା ଏଥିରୁ ଗ୍ରହଣ କରାଯାଇଥିଲା ।

■ ଷ୍ଟକହମ୍‌ରେ ଥିବା ସମୟରେ ଜଗନ୍ନାଥ ପ୍ରସାଦ ସ୍ୱିଡିଶ କବି ଓ୍ୱେର୍ନର ଆସ୍‌ପେନ୍‌ଷ୍ଟମ୍‌ଙ୍କ କବିତା ଦ୍ୱାରା ପ୍ରଭାବିତ ହୋଇଥିଲେ ଓ ତାକୁ ଓଡ଼ିଆରେ ଅନୁବାଦ କରିବା ପାଇଁ ତାଙ୍କର ଅନୁମତି ନେଇଥିଲେ । ବହିଟି 'ସ୍ୱପ୍ନବିଚାର' ନାଆଁରେ ୨୦୦୦ରେ ପ୍ରକାଶିତ ହୋଇଥିଲା ଓ ସେ ତାକୁ ଏଲିଜାବେଥଙ୍କୁ ଉତ୍ସର୍ଗ କରିଥିଲେ ।

■ ଜେପି କବି ବାସୁଦେବ ସୁନାନୀଙ୍କର କିଛି କବିତାର ଇଂରାଜୀ ଅନୁବାଦ କରି ସଂକଳନଟିଏ ପ୍ରସ୍ତୁତ କରିଥିଲେ, ଯାହା ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପାଠ୍ୟ ଖସଡ଼ାରେ ସ୍ଥାନିତ ହୋଇଛି । ସଂକଳନଟିର ଶୀର୍ଷକ Cast Out.

■ ଜଗନ୍ନାଥ ପ୍ରସାଦଙ୍କ 'କଳାହାଣ୍ଡି' କବିତାର ଇଂରାଜୀ ଅନୁବାଦ (ସ୍ୱୟଂ କବିଙ୍କ ଦ୍ୱାରା) ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପାଠ୍ୟ ପୁସ୍ତକରେ ଅନ୍ତର୍ଭୁକ୍ତ । ତାଙ୍କର 'ଲୋକ ସଂସ୍କୃତି' ଗଳ୍ପଟି ୧୯୯୯ରେ ମକ୍ଗେରି ବିଶ୍ୱବିଦ୍ୟାଳୟର ପାଠ୍ୟ ଭାବରେ ଗୃହୀତ ହୋଇ ବେଶ୍ ପ୍ରଶଂସିତ । ଏତଦ୍‌ଭିନ୍ନ ତାଙ୍କର 'ପ୍ରିୟ ବିଦୂଷକ' ଗଳ୍ପଟି ମଧ୍ୟ ଏକଦା ରେଭେନ୍‌ସା ସ୍ନାତକୋତ୍ତର ପାଠ୍ୟ ପୁସ୍ତକରେ ଅନ୍ତର୍ଭୁକ୍ତ ହୋଇଥିଲା ।

■ ଜଗନ୍ନାଥ ପ୍ରସାଦଙ୍କ କବିତାର ଇଂରାଜୀ ଅନୁବାଦର ପରିମାଣ ପର୍ଯ୍ୟାପ୍ତ । ସେ ତାଙ୍କର ବହୁ କବିତାର ଇଂରାଜୀ ଅନୁବାଦ ନିଜେ ହିଁ କରିଛନ୍ତି । ଦୁଇଟି ଓଡ଼ିଆ କବିତା ସଂକଳନ ସେ ଇଂରାଜୀରେ ଅନୁବାଦ କରିଛନ୍ତି । ପ୍ରଥମଟି ଫରାସୀ କବି କ୍ୟାଥରିନ୍ କ୍ଲେମାଁଙ୍କ ସହିତ 'ଗ୍ରୋଇଙ୍ଗ୍ ଆନ୍ ଇଣ୍ଡିଆନ ଷ୍ଟାର୍' (୧୯୯୧) ଏବଂ ଦ୍ୱିତୀୟଟି ଆଲିନ୍ ଜାଇଡ୍‌ଙ୍କ ସହିତ 'ଅଣ୍ଡର ଏ

ସାଇଲେଣ୍ଟ ସନ୍' (୧୯୯୨) । ସେଇଭଳି ସେ ପ୍ରସିଦ୍ଧ ଉର୍ଦ୍ଦୁ କବି ଗୁଲ୍‌ଜାରଙ୍କ କେତେକ କବିତାର ଇଂରାଜୀ ଅନୁବାଦ କରିଛନ୍ତି 'ଅଟମ୍ ମୁନ୍' (୧୯୯୯) ସଂକଳନରେ । ସେଥିପାଇଁ ପ୍ରଫେସର ଏନ୍. ଦ୍ୱିବେଦୀ ତାଙ୍କ ସଂପାଦିତ 'ଇଣ୍ଡିଆନ୍ ପୋଏଟ୍‌ସ ଇନ୍ ଇଂଲିଶ୍' (ହାଇନେମ୍ୟାନ୍) ଗ୍ରନ୍ଥରେ ଜଗନ୍ନାଥ ପ୍ରସାଦଙ୍କୁ ଜଣେ ଭାରତୀୟ ଇଂରାଜୀ କବି ଭାବରେ ଗ୍ରହଣ କରିଛନ୍ତି ।

■ ଜଗନ୍ନାଥ ପ୍ରସାଦ ୧୯୬୫ରେ ଆଲାହାବାଦ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ପ୍ରାୟ ଗୋଟିଏ ବର୍ଷ ସେହି ବିଶ୍ୱବିଦ୍ୟାଳୟରେ ଗବେଷଣା ଓ ଅଧ୍ୟାପନା କରିଥିଲେ । ଅବଶ୍ୟ ୧୯୫୮ରେ ଭାରତୀୟ ପ୍ରଶାସନିକ ସେବାରେ ଯୋଗଦେବା ଉଦ୍ଦେଶ୍ୟରେ ତାଙ୍କୁ ଅଧ୍ୟାପନା ବୃତ୍ତିରୁ ବିଦାୟ ନେବାକୁ ପଡ଼ିଥିଲା । ତେବେ ଜେପି ବେଶୀ ଦିନ ଅଧ୍ୟାପନା ବୃତ୍ତି ସହ ଜଡ଼ିତ ରହିପାରି ନ ଥିଲେ ବି ଶିକ୍ଷା ଜଗତ ସହ ତାଙ୍କର ସଂପର୍କ ଅତୁଟ ରହିଥିଲା । ନବମ ଦଶକରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟ ଭାବରେ ଶିକ୍ଷା କ୍ଷେତ୍ରରେ ଦିଗ୍‌ଦର୍ଶନ ପ୍ରଦାନ କରିଥିଲେ; ଏପରିକି ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ପ୍ରସ୍ତୁତି କମିଟିର ବରିଷ୍ଠ ସଭ୍ୟ ଭାବରେ ଦାୟିତ୍ୱ ନିର୍ବାହ କରିଥିଲେ । ଐତିହାସିକ ନୁରୁଲ୍ ହାସନ୍ ଓଡ଼ିଶାର ରାଜ୍ୟପାଳ ତଥା ଓଡ଼ିଶାର ବିଶ୍ୱବିଦ୍ୟାଳୟମାନଙ୍କର କୁଳାଧିପତି ଥିବା ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ମଧ୍ୟରୁ ଯେ କୌଣସି ଗୋଟିଏ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ଗ୍ରହଣ କରିବା ପାଇଁ ତାଙ୍କୁ ଅନୁରୋଧ କରାଯାଇଥିଲା । ଅବଶ୍ୟ ସେ ଏଥିପାଇଁ ନିଜର ଅନିଚ୍ଛା ପ୍ରକାଶ କରିଥିଲେ ।

■ କିଛିବର୍ଷ ତଳେ ଗୋଟିଏ ଓଡ଼ିଆ ଦୈନିକରେ ପ୍ରକାଶ ପାଇଥିଲା- 'ଜେ.ପି.ଦାସ ନାମ ଧାରଣ କରିଥିବା ତିନିଜଣ ପ୍ରମୁଖ ବ୍ୟକ୍ତି ଅଛନ୍ତି ଓଡ଼ିଶାରେ । ସେମାନେ ହେଲେ-ଜେ.ପି. ଦାସ (ହୃଦ୍‌ରୋଗ ବିଶେଷଜ୍ଞ), ଜେ.ପି. ଦାସ (ମନସ୍ତତ୍ତ୍ୱବିତ୍) ଓ ଜେ.ପି.ଦାସ (ଦେଶ କାଳ ପାତ୍ର) । ଏଥିରୁ 'ଦେଶ କାଳ ପାତ୍ର'ର ଲେଖକ ଭାବେ ଜଗନ୍ନାଥ ପ୍ରସାଦ କେତେ ଲୋକପ୍ରିୟ, ତାହା ସହଜରେ ଅନୁମେୟ ।

■ ଜଗନ୍ନାଥ ପ୍ରସାଦଙ୍କ ସହଧର୍ମିଣୀ ମିତ୍ରା ଦାସ ଜଣେ ସଂଗୀତ ଶିଳ୍ପୀ ଭାବରେ ବେଶ୍ ପରିଚିତା । ଅକ୍ଷୟ ମହାନ୍ତି, ସିକନ୍ଦର ଆଲାମ ଓ ପ୍ରଣବ ପଟ୍ଟନାୟକଙ୍କ ଭଳି ପ୍ରମୁଖ କଣ୍ଠଶିଳ୍ପୀମାନଙ୍କର ସେ ସମସାମୟିକ ଓ ସହଗାୟିକା । ରେଭେନ୍ସା କଲେଜର ସାଂସ୍କୃତିକ କାର୍ଯ୍ୟକ୍ରମ ତଥା ଦିଲ୍ଲୀରେ ଅନୁଷ୍ଠିତ ଆନ୍ତଃ ବିଶ୍ୱବିଦ୍ୟାଳୟ ଯୁବ ଉତ୍ସବରେ ସେ ଭାଗ ନେଇଥିଲେ । ୧୯୬୦ରେ ତାଙ୍କର ବିବାହ ପରେ ତାଙ୍କ ସଂଗୀତ ସାଧନା ପୂର୍ବ ଭଳି ଅବ୍ୟାହତ ରହିପାରି ନ ଥିଲା । ସ୍ୱାମୀଙ୍କ ସହିତ ଦିଲ୍ଲୀରେ ଅବସ୍ଥାନ କରିବା ପରେ ସେ ଦିଲ୍ଲୀ ଅଲ୍ ଇଣ୍ଡିଆ



ସ୍ତ୍ରୀ, କନ୍ୟା, ଜାମାତା, ଓ ଦୁଇ ନାତୁଣୀଙ୍କ ଗହଣରେ ଶ୍ରୀ ଦାସ

ରେଡିଓରେ ଓଡ଼ିଆ ସମ୍ବାଦ ପାଠିକା ଭାବରେ କାର୍ଯ୍ୟ କରିଛନ୍ତି । ସେ ଇଂରାଜୀ, ହିନ୍ଦୀ ଓ ବଂଗଳାରୁ କେତେକ ଗ୍ରନ୍ଥ ଓଡ଼ିଆକୁ ଅନୁବାଦ କରିଛନ୍ତି । ସେଥିମଧ୍ୟରେ ଅଛି -ନୀଲା ଚାନ୍ଦ(ହିନ୍ଦୀ), ଗୋଷ୍ଠବିହାରୀର ଜୀବନଯାପନ (ବଂଗଳା) ଇତ୍ୟାଦି । ଏହା ଯଥାକ୍ରମେ ସାହିତ୍ୟ ଅକାଦେମି ଓ ନ୍ୟାସନାଲ ବୁକ୍ ଟ୍ରଷ୍ଟ ଦ୍ୱାରା ପ୍ରକାଶିତ । ମିତ୍ରାଙ୍କ ଅନୂଦିତ ମୁଲ୍କ ରାଜ୍ ଆନନ୍ଦଙ୍କ 'କୁଲି' ଉପନ୍ୟାସ ପ୍ରକାଶ କରିଛନ୍ତି ଓଡ଼ିଶା ଟେକ୍ସ୍‌ଟ ବୁକ୍ ବ୍ୟୁରୋ । ନ୍ୟାସନାଲ୍ କାଉନ୍‌ସିଲ୍ ଫର୍ ଏଜୁକେସନାଲ୍ ରିସର୍ଚ୍ଚ ଏଣ୍ଡ ଟ୍ରେନିଂର କେତେକ କାର୍ଯ୍ୟକ୍ରମରେ ମିତ୍ରା ସ୍ୱରଦାନ (ଡବିଂ) କରିଛନ୍ତି ।

■ ଜଗନ୍ନାଥ ପ୍ରସାଦଙ୍କ ପିତା ଶ୍ରୀଧର ଦାସ ବାଣପୁର ହାଇସ୍କୁଲ ତଥା ଅନ୍ୟ କେତେକ ସ୍କୁଲରେ ଶିକ୍ଷକତା ପରେ କଟକର ଉତ୍କଳ ଖ୍ରୀଷ୍ଟିଆନ କଲେଜ (ଖ୍ରାଏଷ୍ଟ କଲେଜ)ରେ ପ୍ରାୟ

କୋଡ଼ିଏ ବର୍ଷ କାଳ ଓଡ଼ିଆ ସାହିତ୍ୟର ଅଧ୍ୟାପକ ଭାବରେ ନିଯୁକ୍ତ ହୋଇଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ପାଇଁ ସେ ପ୍ରଭୂତ ସମ୍ମାନର ଅଧିକାରୀ ହୋଇପାରିଛନ୍ତି । ନିଜ ଜୀବଦ୍ଦଶା ମଧ୍ୟରେ ସେ ସମାଲୋଚନା, ଅଭିଧାନ, ବ୍ୟାକରଣ, ପାଠ୍ୟପୁସ୍ତକ, ଅନୁବାଦ, ଜୀବନୀ, ଆତ୍ମଜୀବନୀ ଆଦି ପ୍ରାୟ ଶହେ କୋଡ଼ିଏରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରିଥିଲେ। ଏଗୁଡ଼ିକ ମଧ୍ୟରେ ତାଙ୍କର କେତୋଟି ଓଡ଼ିଆ କବିତା ସଂକଳନ ଓ ଗୋଟିଏ ସଂସ୍କୃତ କବିତା ସଂକଳନ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ନିଜେ ଜେପି ମଧ୍ୟ ସ୍ୱୀକାର କରନ୍ତି- "ମୋର ବାପାଙ୍କର ଲେଖା ବିଷୟରେ କହିବା ମୋ ପକ୍ଷରେ ଧୃଷ୍ଟତା ହେବ । ସେ ବିଶେଷରେ ଅନୁବାଦକ ଓ ବୈୟାକରଣିକ ଭାବରେ ଜଣାଶୁଣା ଥିଲେ । ମୁଁ ଏବେ ବି ସେ ସଂକଳନ କରିଥିବା ଅଭିଧାନ ଓ ବିବିଧ କୋଷ ବ୍ୟବହାର କରେ ।"

■ ଜେପିଙ୍କ ଜୀବନର ପ୍ରେରଣା ଓ ପୃଷ୍ଠଭୂମି ଥିଲେ ତାଙ୍କର ପିତା ଶ୍ରୀଧର ଦାସ । ପିତାଙ୍କ ଭଳି ଶୃଙ୍ଖଳିତ ଜୀବନଚର୍ଯ୍ୟା ଓ ନୀରବ ସାଧନାର ଫଳଶ୍ରୁତି ହିଁ ତାଙ୍କ ବିପୁଳ ସାରସ୍ୱତ କୃତି । ତେବେ ପିତାଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ବି ଯଥେଷ୍ଟ । କଟକର ଉତ୍କଳ ସାହିତ୍ୟ ସମାଜ ପ୍ରାଙ୍ଗଣରେ ଭାଇଭଉଣୀଙ୍କ ସହ ମିଶି ସେ ନିର୍ମାଣ କରିଛନ୍ତି 'ଶ୍ରୀଧର ଦାସ ସ୍ମୃତି ପାଠାଗାର' । ଏତଦ୍‌ଭିନ୍ନ ୧୯୯୫ରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇ ଆସୁଥିବା 'ଶ୍ରୀଧର ଦାସ ସ୍ମାରକୀ ବକ୍ତୃତାମାଳା' ଉପଲକ୍ଷେ ସେ ଆବଶ୍ୟକ ସହାୟତା ମଧ୍ୟ ଯୋଗାଇ ଆସିଛନ୍ତି ।

■ ପ୍ରାଚୀନ ଓଡ଼ିଆ କବିମାନଙ୍କ ପ୍ରତି ଶ୍ରୀଦାସଙ୍କର ଯଥେଷ୍ଟ ସମ୍ମାନ ରହିଆସିଛି । ତାଙ୍କ ଦ୍ୱାରା ଇଂରାଜୀରେ ଅନୂଦିତ ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀର କବି ବଳରାମ ଦାସଙ୍କ 'ଲକ୍ଷ୍ମୀ ପୁରାଣ' ଦିଲ୍ଲୀରୁ ପ୍ରକାଶିତ 'ମାନୁଷୀ' ପତ୍ରିକା (ସଂଖ୍ୟା-୭୩)ର ନଭେମ୍ବର -ଡିସେମ୍ବର, ୧୯୯୨ ଅର୍ଘ୍ୟରେ ପ୍ରକାଶ ଲାଭ କରିଥିଲା । ସେହିଭଳି ଇଂରାଜୀ 'ଆଉଟଲୁକ' ପତ୍ରିକାର ୧୦ ମେ ୨୦୧୦ ସଂଖ୍ୟାରେ ଯେତେବେଳେ ଏକ ସମ୍ବାଦ ପ୍ରକାଶ ପାଇଲା ଯେ କୋଟିପତି ନାରାୟଣ ମୂର୍ତ୍ତିଙ୍କ ସହାୟତାରେ ଏକ କ୍ଲାସିକାଲ୍ ଲାଇବ୍ରେରୀ ସିରିଜ ବାହାର କରାଯିବ କଲମ୍ବିଆ ବିଶ୍ୱବିଦ୍ୟାଳୟର ଭାଷାବିତ୍ ଶେଲ୍‌ଡନ ପୋଲ୍ଲକଙ୍କ ସଂପାଦନାରେ, (ଯେଉଁ କ୍ଲାସିକ୍ ତାଲିକାରେ ପଞ୍ଜାବୀ, ତେଲୁଗୁ, ବଙ୍ଗାଳା, ଗୁଜରାଟୀ ପୁସ୍ତକର ନାମ ଥିଲେ ମଧ୍ୟ ଓଡ଼ିଆ ପୁସ୍ତକର ନାମ ନ ଥିଲା) ଶ୍ରୀ ଦାସ ପ୍ରଫେସର ପୋଲ୍ଲକଙ୍କୁ ଏକ ଦୀର୍ଘ ଇ-ମେଲ୍ ପଠାଇ ଏହି ତାଲିକାରେ ଓଡ଼ିଆ କ୍ଲାସିକ୍ ମଧ୍ୟ ରଖାଯାଉ ବୋଲି ଦୃଢ଼ତାର ସହ ପ୍ରସ୍ତାବ ବାଢ଼ିଥିଲେ। ପ୍ରାୟ ଦୁଇଘଣ୍ଟା ପରେ ପ୍ରଫେସର ପୋଲ୍ଲକଙ୍କ ଠାରୁ ଉତ୍ତର ଆସିଥିଲା- 'ଆଉଟ୍‌ଲୁକ୍' ରେ ଉଲ୍ଲେଖ କରାଯାଇଥିବା ପୁସ୍ତକଗୁଡ଼ିକର ନାମ କେବଳ ଏକ ନମୁନା ଥିଲା । ଆପଣଙ୍କ ଉଲ୍ଲେଖିତ କାରଣଗୁଡ଼ିକ ଯୋଗୁଁ ଆମେ ମଧ୍ୟ ଓଡ଼ିଆ ଅନୁବାଦ ପାଇଁ ଆଗ୍ରହୀ ଥିଲୁ ଏବଂ ସାରଳା ଦାସଙ୍କର ଏକ କୃତିର ଅନୁବାଦ ପାଇଁ ଗୁରୁତ୍ୱର ସହିତ ବିଚାର କରୁଛୁ ।

ଜଗନ୍ନାଥ ପ୍ରସାଦ ଦାସ ତାଙ୍କର ପ୍ରଥମ ଗଳ୍ପ 'ଶବ୍ଦ ଅଥବା ଭବନାଥ କାହିଁକି ପାଗଳ ହୋଇଗଲା'(ପରବର୍ତ୍ତୀ ସମୟରେ 'ଶବ୍ଦଭେଦ')ରେ ଠାଏ ଲେଖିଥିଲେ- "ଶବ୍ଦ ହେଉଛି ଗୋଟାଏ ଅସ୍ତ୍ର; ତାକୁ ଯେ ଯେମିତି ସଫଳ ଭାବରେ ବ୍ୟବହାର କରିପାରିଲା, ସେ ସେତିକି କ୍ଷମତାଶୀଳ । ମୁଁ ଯେତେବେଳେ ଗୋଟାଏ ଶବ୍ଦକୁ ବ୍ୟବହାର କରେ, ମୁଁ ଯାହା ଚାହେଁ ଶବ୍ଦ ତାହା ହିଁ ବୁଝାଏ; ବେଶୀ ନୁହେଁ କି କମ୍ ନୁହେଁ।"

ସେହି ଶବ୍ଦକୁ ଶ୍ରୀ ଦାସ ନିଜ ରଚନାରେ କିଭଳି ସଫଳ ଭାବରେ ବ୍ୟବହାର କରିଛନ୍ତି, ତାହାର ଝଲକ ସ୍ୱରୂପ ନିମ୍ନ ଉଦ୍ଧୃତିଗୁଡ଼ିକ ପ୍ରଦତ୍ତ।

"ଲେଖକର କାମ ହେଲା ବର୍ଣ୍ଣନା କରିବା । ଯଦି ନ୍ୟାୟ ଓ ନିଷ୍ଠାର ସହିତ ସେ ଦେଖୁଥିବା ଘଟଣାମାନଙ୍କୁ ଲିପିବଦ୍ଧ କରିପାରିଲା, ସେଇ ଯଥେଷ୍ଟ । ତା'ପରେ ବିପ୍ଳବ ହେଉ ନ ହେଉ, ତା' ଅନ୍ୟମାନଙ୍କର ଦାୟିତ୍ୱ । ଯଦି ତା'ର ବିପ୍ଳବ କରିବାର କଥା, ସେ କାହିଁକି କାଗଜ କଲମ ଧରି ଟେବୁଲ ପାଖରେ ବସି ରହନ୍ତା ? ସେ ତ ଓହ୍ଲାଇ ଯାଆନ୍ତା ରାସ୍ତା ଉପରକୁ ହାତମୁଠାକୁ ଉପରକୁ ଉଠାଇ।"

'ପ୍ରିୟ ବିଦୂଷକ'- 'ପ୍ରିୟ ବିଦୂଷକ'- ଜଗନ୍ନାଥ ପ୍ରସାଦ ଦାସ ■■■

"ଅନେକ ସମୟରେ ଏ କଥା ନେଇ ବାଦ ବିସମ୍ବାଦ ହୁଏ । ସାମ୍ବାଦିକର କର୍ତ୍ତବ୍ୟ କ'ଣ ? ××× ଖବର କାଗଜର ଫଟୋଗ୍ରାଫର କ'ଣ କରିବ: ନିଜକୁ ନିଆଁ ଲଗାଇ ଆତ୍ମାହୁତି ଦେଉଥିବା ଲୋକର ଫଟୋ ଉଠାଇବ, ନା ଯାଇ ତାକୁ ରକ୍ଷା କରିବ ? ବୁଦ୍ଧିଜୀବୀମାନେ ସବୁବେଳେ ଚାହାନ୍ତି ଘଟଣାସ୍ଥଳରେ ପର୍ଯ୍ୟଟକ ଭଳି ପହଞ୍ଚି ଆନ୍ଦୋଳନରେ ଯୋଗଦେବେ, ସେଠାରେ ଖୁବ୍ ଅଳ୍ପ ସମୟ ରହି ଆନ୍ଦୋଳନର ପ୍ରସ୍ତୁତି ଓ ପରିଣାମର କୌଣସି ବି କଷ୍ଟ ନ ସହି ତା'ର ରୋମାଞ୍ଚକୁ ଉପଭୋଗ କରିବେ ଏବଂ ନିରାପଦରେ ସେଠାରୁ ପୁଣି ଚାଲିଯିବେ । ସଂବିତ ଅନେକ ଏ ବିଷୟରେ ଭାବେ, କିନ୍ତୁ କେବେ କୌଣସି ସମାଧାନ ପାଏ ନାହିଁ ଏ ପ୍ରଶ୍ନର।"

'ଦେଖଣାହାରି'- 'ପ୍ରିୟ ବିଦୂଷକ'- ଜଗନ୍ନାଥ ପ୍ରସାଦ ଦାସ ■■■

"କାହିଁକି ସେ ଏଭଳି ସଭାମାନଙ୍କୁ ଆସେ ? ପ୍ରଶ୍ନ କଲା ତାରାପଦ । ନିଜର ସ୍ୱର ଶୁଣିବାର ଇଚ୍ଛା ? ନିଜର ପ୍ରତିଷ୍ଠା ଓ ଲୋକପ୍ରିୟତା ବ୍ୟାହତ ହୋଇ ନ ଥିବାର ଆଶ୍ୱାସନା ? କଥାର ଜାଲରେ ଗୋଟିଏ ଶ୍ରୋତା ମଣ୍ଡଳୀକୁ ବାନ୍ଧି ରଖିବାର ସନ୍ତୋଷ ? ବହୁ ପ୍ରସ୍ତୁତି ଓ ପୂର୍ବାଭ୍ୟାସ ପ୍ରସୂତ କୌଣସି ମହତ୍ତ୍ୱପୂର୍ଣ୍ଣ ବକ୍ତବ୍ୟ ପାଇଁ ମିଳୁଥିବା ହାତ ତାଳିର ଶ୍ରୁତିମଧୁର ଧ୍ୱନି ? କିମ୍ବା ଏସବୁ ଏବଂ ଆହୁରି କିଛି ?"

'ସବୁ ଅଛି କିଛି ନାହିଁ'-'ପ୍ରିୟ ବିଦୂଷକ'- ଜଗନ୍ନାଥ ପ୍ରସାଦ ଦାସ ■■■

"ଲେଖକ ବନ୍ଧୁ କହିଲେ, ସହରଟା ଗୋଟାଏ କଂକ୍ରିଟ୍‌ର ଜଙ୍ଗଲ । ଏଥିରେ ବାଘ, ଭାଲୁ ଆତଯାତ ହେବେ ନାହିଁ ତ ଆଉ କ'ଣ ? ରାତିରେ ଯୋଉ ଚୋର, ତସ୍କର, ଗୁଣ୍ଡା, ବଦମାସ ଯିବାଆସିବା କରୁଛନ୍ତି, ସେମାନେ ଗୋଟିଏ ଗୋଟିଏ ହିଂସ୍ରଜନ୍ତୁ ।"

'ବାଘ'- 'ଆମେ ଯେଉଁମାନେ'- ଜଗନ୍ନାଥ ପ୍ରସାଦ ଦାସ ■■■

"ସେ ପ୍ରଥମ ଥର ପାଇଁ ବିନା କାମରେ ଗୋଟିଏ ଜାଗାରେ ବସି ବାହାରର ପୃଥିବୀକୁ ଦେଖୁଥିଲା । ଏ ତା'ର ଦୁଇ ମହଲା ଉପର ଶୀତତାପ ନିୟନ୍ତ୍ରିତ କୋଠରି ଭିତରୁ ତଳ ରାସ୍ତାର ଦୃଶ୍ୟ ନ ଥିଲା, ଯେଉଁଥିରେ ଲୋକମାନେ ଏକ ବିଚିତ୍ର ଦୃଷ୍ଟିରେ ଦେଖିବା ବେଳେ ଖର୍ବକାୟ ପାଲଟି ଯାଉଥିଲେ । ବର୍ତ୍ତମାନ ଲୋକମାନଙ୍କୁ ସେ ସେଇମାନଙ୍କ ଉଚ୍ଚତାରୁ ଦେଖୁଥିଲା ଏବଂ ତା' ପାଇଁ ଏ ଏକ ସଂପୂର୍ଣ୍ଣ ନୂଆ ଅଭିଜ୍ଞତା ଥିଲା । ପ୍ରାତ୍ୟହିକ ଜୀବନଯାତ୍ରାରେ ଯେ ଏତେ ରଙ୍ଗ ଥାଇପାରେ, ଅନଙ୍ଗ ଆବିଷ୍କାର କଲା ପ୍ରଥମ ଥର ପାଇଁ ।"

'ମାୟାମୃଗ'- 'ଭବନାଥ ଓ ଅନ୍ୟମାନେ'- ଜଗନ୍ନାଥ ପ୍ରସାଦ ଦାସ ■■■

"କବିତାର ଅସଂଲଗ୍ନ ପଂକ୍ତିସବୁ ତା'ର ମନ ଭିତରକୁ ପଶିଆସି ଏଇଭଳି ତାକୁ ଅସ୍ତବ୍ୟସ୍ତ କରନ୍ତି କେବେ କେବେ । ହଜିଯାଇଥିବା ପ୍ରେମର ବ୍ୟଥା ଭଳି ମନ ଗହୀରକୁ ଛୁଇଁଯାଏ କେତୋଟି ଶବ୍ଦର ଲଳିତ ମିତ୍ରାକ୍ଷର ମୁହୂର୍ତ୍ତକ ପାଇଁ । ଦେବନାଥ ପୁଣି ସଜାଡ଼ିନିଏ ନିଜକୁ; ସଜାଗ ହୋଇଯାଏ । ସେ କାହିଁକି ତା'ର ସହଜ ସଂସାରକୁ ଛାଡ଼ି ଆଶ୍ରୟ ଖୋଜିବ କେଉଁ ଅଳୀକ ପରାବାସ୍ତବରେ ?"

'କବିତାର ଦୀର୍ଘ ଜୀବନ'- 'ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ'–ଜଗନ୍ନାଥ ପ୍ରସାଦ ଦାସ ■■■

"ରମାନାଥ ଏଥରକ କାଗଜଟିର ନୀଳବର୍ଣ୍ଣର ଘନତ୍ୱ ପ୍ରଣିଧାନ କଲା । ଗାଢ଼ ନୀଳ ରଂଗ ହୋଇଥିଲେ, ସେ ତାକୁ ଅପରିଣତ ବୟସର ଅନଭ୍ୟସ୍ତ ପସନ୍ଦ ବୋଲି ଭାବିଥା'ନ୍ତା; କିନ୍ତୁ ଏଇଟି ଥିଲା ହାଲୁକା ଉଜ୍ଜ୍ୱଳ ନୀଳ, ଯାହା ଆଦର ଓ ଅନୁରାଗର ରଂଗ । ଛୋଟ କାଗଜ ଟୁକୁରାରୁ ହିଁ ଉକୁଟି ଆସୁଥିଲା ଏକ ଅପ୍ରତିହତ ଅନୁଭବର ପଲ୍ଲବିତ ସନ୍ଦେଶ ।"

'ଜଣା ଅଜଣା'- 'ପ୍ରିୟ ବିଦୂଷକ'-ଜଗନ୍ନାଥ ପ୍ରସାଦ ଦାସ ■■■

"ମାଧବୀ ଯେ କେବଳ ଶୀତଳ ନ ଥିଲା ତା' ନୁହେଁ, ମାଧବୀ ଥିଲା ଇନ୍ଦ୍ରନାଥର ସ୍ୱପ୍ନ ବହିର୍ଭୂତ ଏକ ଆଗ୍ନେୟ ଚମତ୍କାର । ××× ତା'ର ଆଶ୍ଳେଷ ଥିଲା ବହ୍ନିବଳୟ, ତା'ର ପ୍ରଶ୍ୱାସ ଥିଲା ନିଦାଘର ନିର୍ମମ ଝଂଜା, ଚୂର୍ଣ୍ଣ କୁନ୍ତଳ ଥିଲା ଅଗ୍ନିଶିଖା ଏବଂ ପ୍ରତିଟି ଲୋମ ଥିଲା ଏକ ସ୍ୱତନ୍ତ୍ର ସ୍ଫୁଲିଙ୍ଗ । ତା'ର ଅଭ୍ୟନ୍ତର ଥିଲା ଏକ ପ୍ରଜ୍ୱଳିତ ଯଜ୍ଞକୁଣ୍ଡ, ଯାହା ଭିତରୁ ଇନ୍ଦ୍ରନାଥ ପ୍ରତିଟି ଥର ଜଳିପୋଡ଼ି ସିଝି ତରଳି ପୁଣି ଶୁଦ୍ଧପୂତ ଓ ଦୀପ୍ତିମାନ ହୋଇ ବାହାରି ଆସୁଥିଲା ।"

'ସ୍ୱର୍ଣ୍ଣ'- 'ଆମେ ଯେଉଁମାନେ'-ଜଗନ୍ନାଥ ପ୍ରସାଦ ଦାସ ■■■

"ସାଧନା ପୃଥିବୀର ସବୁଠାରୁ ସୁନ୍ଦରୀ ଝିଅ ନ ଥିଲା, କିନ୍ତୁ ରୋହିତ ପାଇଁ ସାଧନା ଥିଲା ସବୁଠାରୁ ଅଧିକ କାମ୍ୟ ଏବଂ ତା'ର ଜୀବନଠାରୁ ମହତ୍ତ୍ୱପୂର୍ଣ୍ଣ । ସାଧନାକୁ ଜାଣିବା ପରେ ଆଉ ସବୁକିଛି ତା' ପାଖରେ ଗୌଣ ଥିଲା । ଯୋଉଦିନ ପ୍ରଥମ ଥର ପାଇଁ ସାଧନା ତାକୁ ସ୍ୱୀକାର କଲା, ରୋହିତର ମନେହୋଇଥିଲା, ଏଇ ସ୍ୱୀକାର ସହିତ ତା'ର ଏଇ ମୁହୂର୍ତ୍ତରେ ମୃତ୍ୟୁ ହୋଇଯାଉ; ଏହାଠାରୁ ବଳି ଆଉ କୌଣସି ସୌଭାଗ୍ୟ ଆସି ନ ପାରେ ତା' ଜୀବନରେ ।"

'ବୁଢ଼ିଆଣୀ ଜାଲ'- 'ଆମେ ଯେଉଁମାନେ' - ଜଗନ୍ନାଥ ପ୍ରସାଦ ଦାସ ■■■

"କେବେ କେଉଁ ସୁଦୂର ଅତୀତରେ ତିନି ଭାଇ ଏକାଭଳି ଥିଲେ, ଏକା ସ୍କୁଲରେ ପାଠ ପଢୁଥିଲେ, ପୋଖରୀରେ ବୁଡ଼ିଯାଉଥିଲାବେଳେ ଏକା ଲୋକ ହାତରେ ଉଦ୍ଧାର ପାଇଥିଲେ । ସେସବୁ ଘଟଣା ଆଉ କାହାରି ମନେ ନାହିଁ । ଏବେ ଆଉ ପରସ୍ପର ସହିତ କଥାବାର୍ତ୍ତା କରିବା ପାଇଁ ସେମାନଙ୍କ ପାଖରେ କୌଣସି ସାଧାରଣ ବିଷୟବସ୍ତୁ ନାହିଁ । ତିନିଜଣ ବର୍ତ୍ତମାନ ଅଲଗା ଅଲଗା ଲୋକ, କେବଳ କିଛି ସମୟ ପାଇଁ ଏକାଠି ହୋଇଛନ୍ତି ଏବଂ ଆଉ ଦୁଇ ଦିନ ସମୟ ଏମିତି କଟିଯିବ ଅତି ମୂଲ୍ୟହୀନ କଥାବାର୍ତ୍ତା କରିବାରେ ।"

'ସହୋଦର'- 'ସାକ୍ଷାତ୍‌କାର'- ଜଗନ୍ନାଥ ପ୍ରସାଦ ଦାସ ■■■

"କାଠପଟାର ଅସ୍ୱସ୍ତିକର ଆସନ ଉପରେ ବସି ଛୁଟିଦିନର ବିରକ୍ତିକର ଅପରାହ୍ଣରେ ଘରକଥା ଭାବିବା ବେଳେ ସଦାନନ୍ଦର ମନ ଏକ ଶ୍ୱାସରୁଦ୍ଧକାରୀ ଦୁଃଖରେ ଭରିଗଲା । ଅନେକ ଶ୍ରମ ଓ କଷ୍ଟରେ ତିଆରି ହେଉଥିବା ଏଇ ନୂଆ ଘର ତାକୁ ଏକ ବିଡ଼ମ୍ବନା ଭଳି ମନେହେଲା । ××× କେଉଁ ଉପଲବ୍ଧି ଆଶାରେ ସଞ୍ଜ ସକାଳ, ସମୟ ଅସମୟ, ଛୁଟିଦିନର ଖରାବେଳମାନଙ୍କରେ ଘରର ଦୀର୍ଘାୟୁ ପାଇଁ ତା'ର ଏ ଉର୍ଦ୍ଧ୍ୱଶ୍ୱାସ ତତ୍ତ୍ୱାବଧାନ ? କେତେ ଜମି ଅବା ଲୋଡ଼ା ମଣିଷର ?"

'ଘର'- 'ଦିନଚର୍ଯ୍ୟା'-ଜଗନ୍ନାଥ ପ୍ରସାଦ ଦାସ ■■■

"ମୁଁ ଭାବୁଥିଲି, ମୃତ୍ୟୁ କିଛି ନୁହେଁ ଏବଂ ମୃତ୍ୟୁ ପରେ ବି କିଛି ନାହିଁ । ନିର୍ଲିପ୍ତ ଭାବରେ ମୁଁ ସବୁକଥା ସ୍ୱୀକାର କରି ନେଉଥିଲି । କିନ୍ତୁ ଯେତେବେଳେ ମୋ ଉପରେ ସାଂସାରିକ ଦାୟିତ୍ୱସବୁ ପଡ଼ିଲା, ମୁଁ ଭବିଷ୍ୟତ କଥା ଜାଣିବାକୁ ଚାହିଁଲି । ଏବଂ ଭବିଷ୍ୟତ କଥା ଜାଣିବା ହିଁ ହେଉଚି ନିଜର ମୃତ୍ୟୁର ତାରିଖ ଜାଣିବା । କାରଣ ଜୀବନଟା ହଉଚି ଗୋଟିଏ ପରିସମାପ୍ତିର ପ୍ରସ୍ତୁତି ମାତ୍ର । ଜଣା ହେଉ, ଅଜଣା ହେଉ, ମଣିଷ ଏଇ ପ୍ରସ୍ତୁତିରେ ଲାଗିଥାଏ । ଶେଷ ଋଣ ପରିଶୋଧ କରିବା ହିଁ ହେଉଚି ମୃତ୍ୟୁ ।"

'ମୃତ୍ୟୁବୋଧ'- 'ଭବନାଥ ଓ ଅନ୍ୟମାନେ'-ଜଗନ୍ନାଥ ପ୍ରସାଦ ଦାସ ■■■

"ପୃଥିବୀରେ କିଛି ଲୋକ ଅଛନ୍ତି, ଯେଉଁମାନେ ଜୀବନର କେଉଁ ଏକ ସନ୍ଧିସ୍ଥଳରେ ପହଞ୍ଚି ନିର୍ଣ୍ଣୟ ନେଇନିଅନ୍ତି ଯେ ସେମାନଙ୍କ ବଞ୍ଚିବାର ଗୋଟିଏ ମାତ୍ର ଅଭୀଷ୍ଟ ଅଛି, ଯାହାକୁ ପାଇବାକୁ ହିଁ ହେବ। ଏହାପରେ ସେମାନଙ୍କ ପାଇଁ ଆଉ ସବୁ କିଛି ତୁଚ୍ଛ ଓ ଅପ୍ରାସଙ୍ଗିକ ହୋଇଯାଏ ଏବଂ ସେମାନେ ନିଜ ଜୀବନର ଅବଶିଷ୍ଟ ସମୟ, ସମ୍ବଳ ଓ ଉଦ୍ୟମ ବିନିଯୋଗ କରିଦିଅନ୍ତି ସେହି ଲକ୍ଷ୍ୟର ସନ୍ଧାନରେ।"

'ଭାରସାମ୍ୟ'- 'ଶେଷ ପର୍ଯ୍ୟନ୍ତ' - ଜଗନ୍ନାଥ ପ୍ରସାଦ ଦାସ ■■■

"ସେ କହିଥିଲା, ପ୍ରତି ଗବେଷକକୁ ଗୋଟିଏ ସମୟରେ ନିର୍ଣ୍ଣୟ ନେବାକୁ ହୁଏ ଯେ ସେ ଆଉ ଅନୁସନ୍ଧାନ କରିପାରିବ ନାହିଁ। ଏ କଥା ଶୁଣିବା ବେଳେ ମଲ୍ଲିକାର ମନେ ହୋଇଥିଲା ଯେ ଉକ୍ତିଟି ଜୀବନ ପ୍ରତି ମଧ୍ୟ ପ୍ରଯୁଜ୍ୟ । ମଣିଷକୁ ମଧ୍ୟ ନିର୍ଣ୍ଣୟ ନେବାକୁ ହୁଏ, କେଉଁଠାରେ ତା'ର ଅନ୍ୱେଷଣର ସୀମା ।"

'ପୂଜାସ୍ୱଦେଷ୍ଟୁ'- 'ଶେଷ ପର୍ଯ୍ୟନ୍ତ'- ଜଗନ୍ନାଥ ପ୍ରସାଦ ଦାସ ■■■



"ମୁଁ ସବୁବେଳେ ଭାବୁଥିଲି ଯେ ଜଣକ ପାଖକୁ ଜଣକର ଚିଠି କେବଳ ସେଇମାନଙ୍କର, ନିଜର ସୁଖଦୁଃଖ ଭଳି । ପରେ କିନ୍ତୁ ମୋର ଉପଲବ୍ଧି ହେଲା ଯେ ସୁଖଦୁଃଖ ଭଳି ଚିଠିକୁ ମଧ୍ୟ ବାଣ୍ଟି ଦିଆଯାଇପାରେ । ପ୍ରାୟ ଚାଳିଶ ବର୍ଷ ହେଲା ମୋ ପାଖକୁ ଯେତେସବୁ ଚିଠି ଆସିଥିଲା, ତାକୁ ମୁଁ ଫିଙ୍ଗି ନ ଦେଇ ସଞ୍ଚୟ କରି ରଖିଛି, ଏବଂ ବେଳେ ବେଳେ ତାକୁ ଓଲଟାଇ ଦେଖିଥାଏ, ପଛକୁ ମନେପକାଇବା ପାଇଁ"- ଏ ହେଉଛି ସୁମନ୍ୟୁ ଶତପଥୀ ସଂପାଦିତ 'ପ୍ରିୟ ଜେପି-ଜଗନ୍ନାଥ ପ୍ରସାଦ ଦାସଙ୍କୁ ଚିଠି' ପତ୍ର ସଂକଳନରେ ଶ୍ରୀ ଦାସଙ୍କ 'ନିଜକଥା'ର ପ୍ରଥମାଂଶ । ଆସନ୍ତୁ, ଶ୍ରୀ ଦାସଙ୍କ ସୁଖଦୁଃଖରେ ସାମିଲ ହେବା ତାଙ୍କଦ୍ୱାରା ପ୍ରାପ୍ତ ପାଞ୍ଚଟି ପତ୍ର ମାଧ୍ୟମରେ :



## ପତ୍ର-୧

(ଲବ୍ଧପ୍ରତିଷ୍ଠ କବି ଓ ସମାଲୋଚକ ଚିନ୍ତାମଣି ବେହେରାଙ୍କଠାରୁ)

ବଲାଙ୍ଗୀର, ୫।୨।୭୨

ଶ୍ରଦ୍ଧେୟ ଜଗନ୍ନାଥବାବୁ,

ମୋର ଆନ୍ତରିକ ପ୍ରଣତି, ଶୁଭେଚ୍ଛା ଓ ନମସ୍କାର ଗ୍ରହଣ କରିବେ । ଆପଣ ପଠାଇଥିବା 'ପ୍ରଥମ ପୁରୁଷ' ତା ୩୧ରେ ମୁଁ ପାଇଲି । ମୁଁ ଯେ ସ୍ମରଣରେ ରହିଛି, ତାହା ହିଁ ମୋର ସୌଭାଗ୍ୟ ।

ଗତବର୍ଷ ଭୁବନେଶ୍ୱରରେ ମହାପାତ୍ର ନୀଳମଣି ସାହୁଙ୍କ ସହିତ ଆପଣଙ୍କ ପ୍ରତିଭା ସଂପର୍କରେ ଆଲୋଚନା ହୋଇଥିଲା ଏବଂ ଆପଣଙ୍କ ଦୀର୍ଘ ନୀରବତା (ସୃଷ୍ଟି କ୍ଷେତ୍ରରେ) ପାଇଁ ଆମେ ଉଭୟେ ବ୍ୟଥିତ ହୋଇଥିଲୁ । 'ପ୍ରଥମ ପୁରୁଷ' ଆମ ପାଇଁ ତ ଆଶା ଓ ଆଶ୍ୱାସନାର ବାର୍ତ୍ତାବହ

ହେବା ସ୍ୱାଭାବିକ; ଓଡ଼ିଶାର ବହୁ କାବ୍ୟାମୋଦୀ ପାଠକଙ୍କ ପାଇଁ ମଧ୍ୟ ଏହା ନିଶ୍ଚିତ ଭାବରେ ଆପଣଙ୍କ ସଫଳ ସିଦ୍ଧିର ସାଙ୍କେତିକ, ଯେଉଁମାନେ କି ପାଉଥିଲେ ଆପଣଙ୍କ ସୃଜନୀ ପ୍ରତିଭାର ପ୍ରଥମ ପ୍ରତିଶ୍ରୁତି । ଲେଖନୀ ଏଣିକି ମନ୍ଥର ବା ନିଷ୍କ୍ରିୟ ନ ହେଉ, ଏହା ହିଁ ମୋର ବ୍ୟକ୍ତିଗତ ଅନୁରୋଧ । ଅଧିକାଂଶ କବିତାର ଅନ୍ତର୍ନିହିତ ରସଚେତନା, ପ୍ରଥମ ପୁରୁଷ ମାଧ୍ୟମରେ ତୃତୀୟ ତଥା ଯୁଗପୁରୁଷର ଆତ୍ମିକ ସଂକଟର ଉପଲବ୍ଧି ଏବଂ ତା'ର ରସୋତ୍ତୀର୍ଣ୍ଣ ପ୍ରକାଶଭଙ୍ଗୀ ବାସ୍ତବରେ ମୋତେ ମୁଗ୍ଧ କରିଛି । ଅନ୍ୟ କିଏ କିପରି ଏହାକୁ ଘେନିଥିବ, ତା' ମୁଁ ଜାଣେନା।

ପ୍ରଥମେ 'ପ୍ରଜାତନ୍ତ୍ର'ରେ ଏହାର ସମୀକ୍ଷା (ଶ୍ରୀମାନ୍ ହରପ୍ରସାଦ ଦାସଙ୍କ ଦ୍ୱାରା ଲିଖିତ) ମୁଁ ପଢ଼ିଥିଲି । ଗତ ତା ୩୦ରେ ସ୍ଥାନୀୟ ଏକ ପୁସ୍ତକ ଦୋକାନରେ ବହିଟିକୁ ଦେଖି ରମାକାନ୍ତବାବୁଙ୍କ 'ନିଷିଦ୍ଧ ମୃଗୟା' ସହିତ କିଣି କରି ମଧ୍ୟ ଆଣିଥିଲି । ତା' ପରଦିନ ଆପଣ ପଠାଇଥିବା ବହିଟି ପାଇ କିଣିଥିବା ବହିଟିକୁ ଅନ୍ୟ ଜଣେ ବନ୍ଧୁଙ୍କୁ ଦେଇଦେଲି । ସାଂପ୍ରତିକ କାଳର ବହୁ ସୃଷ୍ଟିର ଅଯଥା ସ୍ଫୀତି, ଶ୍ରମସାଧ୍ୟ ଦୁର୍ବୋଧ୍ୟତା, ଅଗଭୀର ଜୀବନ ଜିଜ୍ଞାସା ଏବଂ ଅହେତୁକ କ୍ଲିଷ୍ଟ ପ୍ରକାଶଭଙ୍ଗୀ ମଧ୍ୟରେ 'ପ୍ରଥମ ପୁରୁଷ' ନିର୍ମଳ ଓ ଶୁଦ୍ଧ କବିତ୍ୱର ଆଲୋକ-ବର୍ତ୍ତିକା ପ୍ରକାଶ କରିବ ବୋଲି ମୋର ବିଶ୍ୱାସ । ଆପଣଙ୍କ ଆଦ୍ୟ ଜୀବନର ସୃଷ୍ଟିସମ୍ଭାରକୁ ଏକ ସ୍ୱତନ୍ତ୍ର ସଂକଳନ ଭାବରେ ପ୍ରକାଶ କରନ୍ତୁ । ନିୟମିତ ଭାବରେ ମୁଁ ସେଗୁଡ଼ିକୁ ପଢୁଥିଲି ଏବଂ ଆଶାୟୀ ଦୃଷ୍ଟିରେ ପ୍ରତିଭାର ବିକାଶ ମଧ୍ୟ ଲକ୍ଷ୍ୟ କରୁଥିଲି । କିନ୍ତୁ ହଠାତ୍ ହୋଇଗଲେ ଆପଣ ନୀରବ । ସେଥିରେ ମୁଁ ବ୍ୟଥିତ ମଧ୍ୟ ହୋଇଥିଲି । ଯାହାହେଉ, ହଜିଲା ରତ୍ନକୁ ଫେରିପାଇବାରେ ଯେଉଁ ଆନନ୍ଦ, ସେ ଆନନ୍ଦ ମୁଁ ଆଜି ଉପଲବ୍ଧି କରିଛି 'ପ୍ରଥମ ପୁରୁଷ' ଅଧ୍ୟୟନ କରି । ସମୟ ଓ ସୁବିଧା ଦେଖି ତା'ର ଏକ ସମୀକ୍ଷା ମଧ୍ୟ ମୁଁ ଲେଖିବି । × × ଜୀବନର ବହୁ ଉତ୍ଥାନ-ପତନ, ସୁଖ-ଦୁଃଖ, ଆବର୍ତ୍ତ-ପ୍ରବାହ, ସଂକଟ ଓ ସମାଧାନ ମଧ୍ୟରେ ଏ ପର୍ଯ୍ୟନ୍ତ ଗତି କରି ଚାଲିଛି । ସାକ୍ଷାତରେ ସୁଖ-ଦୁଃଖର କଥା କହିବି ।

ପୁଣି ଥରେ ମୋର ଅନୁରୋଧ ଲେଖନୀକୁ ନିରନ୍ତର ଚାଳନା କରିବା ପାଇଁ । ମରାଳର ଅନୁପସ୍ଥିତିରେ କାକ-ବକ ମଧ୍ୟ ବିପଦ ଓ ସଂକଟ ସମୟରେ ସାରସ୍ୱତ ମର୍ଯ୍ୟାଦା ଲାଭ କରିଥା'ନ୍ତି ଏବଂ ଆମ ସାହିତ୍ୟରେ ଏହାର ଦୃଷ୍ଟାନ୍ତ ବିରଳ ନୁହେଁ । × × ଆପଣଙ୍କର ସର୍ବାଙ୍ଗୀଣ କୁଶଳ କାମନା ସହିତ ପ୍ରତିଭାର ଉତ୍ତରୋତ୍ତର ବିକାଶ ଓ ପ୍ରତିଷ୍ଠା କାମନା କରି ରହୁଛି ।

॥ ଇତି ॥

ଶୁଭାନୁଧ୍ୟାୟୀ,

**ଚିନ୍ତାମଣି ବେହେରା**



## ପତ୍ର-୨

(ଜଣେ ଅପରିଚିତ ପାଠକଙ୍କଠାରୁ)

ସମ୍ବଲପୁର, ୨୯।୭।୯୫

ସମ୍ମାନନୀୟ ମହାଶୟ,

ନମସ୍କାର ନେବେ । ୧୦ ମାସ ଆଗରୁ କବିତାର ନାଁ ଶୁଣିଲେ ବିରକ୍ତ ଲାଗୁଥିଲା । କୌଣସି ସାହିତ୍ୟ ପତ୍ରିକା ପାଇଲେ କବିତା ବ୍ୟତୀତ ଅନ୍ୟସବୁ ପଢୁଥିଲୁ । କବିତା ଥିଲା ଆମ ପାଇଁ ଦୁର୍ବୋଧ୍ୟ ତଥା ବିରକ୍ତିକର ଏବଂ ଆଧୁନିକ କବିକୁ ଆମେ ଥଟ୍ଟାରେ ବସ୍ କଣ୍ଡକ୍ଟର କହୁଥିଲୁ । (ବସ୍ କଣ୍ଡକ୍ଟର ଟିକଟରେ କ'ଣ ଲେଖେ, ସେ ନିଜେ ଜାଣେ ଓ ଆଧୁନିକ କବି କବିତାରେ କ'ଣ ଲେଖେ, ସେ ନିଜେ ବୁଝେ ବୋଲି କହୁଥିଲୁ) କିନ୍ତୁ ଆକସ୍ମିକ ଭାବେ ପୁରୁଣା 'ଝଙ୍କାର'ରେ ଆପଣଙ୍କ ଲିଖିତ କବିତା 'ସାର୍ବଜନୀନ' ପଢ଼ିଲା ପରେ କବିତା ପ୍ରତି ଅସ୍ୱାଭାବିକ ଦୁର୍ବଳତା ଜାତ ହେଲା ଏବଂ ଘରେ ଥିବା ପୁରୁଣା 'ଝଙ୍କାର' ସବୁ ଖୋଜି ଆପଣଙ୍କ କବିତାସବୁ ପଢ଼ିବା ଆରମ୍ଭ କଲୁ । ଆପଣଙ୍କ କବିତା ପଢ଼ିଲା ପରେ କବିତା ପ୍ରତି ଥିବା ଆମର ଭୁଲ୍ ଧାରଣା ଦୂର ହେଲା ଏବଂ ହୃଦୟଙ୍ଗମ ହେଲା କି କବିତା ବିନା ଆଧୁନିକ ସାହିତ୍ୟର ସୃଷ୍ଟି ଅସମ୍ଭବ । କବିତା ଖୁବ୍ କମ୍ ସମୟରେ ଜଣକ ମନକୁ ଛୁଇଁପାରେ, ଯାହାକି ସାହିତ୍ୟର ଅନ୍ୟ ବିଭାଗ, ଯଥା ଗଳ୍ପ କିମ୍ବା ଉପନ୍ୟାସ ଦ୍ୱାରା ସମ୍ଭବ ନୁହେଁ । ତେବେ ଅନେକ କବି ଅଛନ୍ତି, ଯେଉଁମାନଙ୍କ କବିତା ଅତ୍ୟନ୍ତ ଦୁର୍ବୋଧ୍ୟ ଓ ସାଧାରଣ ପାଠକଙ୍କ ପକ୍ଷରେ ସେସବୁ ବୁଝିବା କଷ୍ଟକର ହେଉଥିବାରୁ ବିରକ୍ତିକର ନିଶ୍ଚୟ ।

University Libraryରୁ ଆପଣଙ୍କ କବିତା ସଂକଳନ ଯାହା ମିଳୁଛି, ତା'ର xerox copy ରଖୁଛୁ । ଏ ପର୍ଯ୍ୟନ୍ତ ଆପଣଙ୍କ ଦ୍ୱାରା ଲିଖିତ 'ପ୍ରଥମ ପୁରୁଷ', 'ଅନ୍ୟସବୁ ମୃତ୍ୟୁ', 'ଯେ ଯାହାର ନିର୍ଜନତା', 'କିଛି ବର୍ଷା କିଛି ରାସ୍ତା କିଛି ନିର୍ଜନତା', 'ଯାତ୍ରାର ପ୍ରଥମ ପାଦ' ଓ 'ଶ୍ରେଷ୍ଠ କବିତା ସଂକଳନ' ସବୁ ପଢ଼ିସାରିଛୁ । କିନ୍ତୁ ଆପଣଙ୍କ କେନ୍ଦ୍ର ସାହିତ୍ୟ ଅକାଦେମି ପୁରସ୍କାରପ୍ରାପ୍ତ

କାବ୍ୟଗ୍ରନ୍ଥ 'ଆହ୍ନିକ' ତଥା ବହୁଚର୍ଚ୍ଚିତ ସଂକଳନ 'ପ୍ରେମ କବିତା' ଏଠାରେ ମିଳୁ ନ ଥିବାରୁ ପଢ଼ିବାର ସୁଯୋଗରୁ ବଞ୍ଚିତ ହୋଇଛୁ । ତେଣୁ ଦୟାକରି ଉକ୍ତ ପୁସ୍ତକ ଦୁଇଟିର ବିତରକଙ୍କ ନାମ ଜଣାଇବାକୁ ଅନୁରୋଧ ।

ମୁଁ ଯଦିଓ ଆପଣଙ୍କ କବିତାକୁ ସମୀକ୍ଷା କରିବାର ଦୁଃସାହସ କରୁନାହିଁ, ଯେହେତୁ ଆପଣଙ୍କ କବିତାର ସମୀକ୍ଷକ ହେବା ପାଇଁ ମୋର ଯୋଗ୍ୟତା ଏ ପର୍ଯ୍ୟନ୍ତ ହୋଇନି, ତଥାପି ଏତିକି କହିରଖେ କି ଆପଣଙ୍କ କେତେକ କବିତାର Philosophy ଆମେ (କବିତାର ନୂଆ ପାଠକ) ବୁଝି ନ ପାରିଲେ ବି କବିତାକୁ ବାରମ୍ବାର ପଢ଼ିବାକୁ ଇଚ୍ଛା ହୁଏ । ଏହା ହିଁ ଆପଣଙ୍କ କବିତାର ବିଶେଷତ୍ୱ, ଯେଉଁଟାକି ମୁଁ ଅନ୍ୟ କବିଙ୍କ କବିତାରେ ପାଏ ନାହିଁ । 'କିଛି ବର୍ଷା କିଛି ରାସ୍ତା କିଛି ନିର୍ଜ୍ଜନତା'ର 'ଦେବୀ' ଓ 'ଝଙ୍କାର' କବିତା ଦୁଇଟି 'ଶ୍ରେଷ୍ଠ କବିତା' ସଂକଳନରେ ସ୍ଥାନ ପାଇବା ଉଚିତ ଥିଲା ବୋଲି ମୁଁ ଭାବୁଛି । ଆମର ପୂର୍ବରୁ ଧାରଣା ଥିଲା କି ଆପଣଙ୍କର କେବଳ Romantic Poemରେ ଏକଚାଟିଆ ଅଧିକାର ଅଛି । କିନ୍ତୁ 'ବଡ଼ଦାଣ୍ଡରେ ଭିଖାରି' କବିତା ପଢ଼ିଲା ପରେ ଆପଣଙ୍କ ସମ୍ପର୍କରେ ଆମର ଧାରଣା ଭୁଲ୍ ପ୍ରମାଣିତ ହୋଇଥିଲା । ମୋ ମତରେ ଏହା 'ଶ୍ରେଷ୍ଠ କବିତା' ସଂକଳନର ଶ୍ରେଷ୍ଠ କବିତା । ଆପଣଙ୍କ କବିତା କୌଣସି ଏକ ନିର୍ଦ୍ଦିଷ୍ଟ ଭାବରେ ସୀମାବଦ୍ଧ ନୁହେଁ, ଯଦିଓ Romantic Poem ଲେଖିବାରେ ଆପଣଙ୍କୁ ଅପରାଜେୟ ସମ୍ରାଟ କହିଲେ କିଛି ଭୁଲ୍ ହେବ ନାହିଁ ।

ଆପଣଙ୍କ କବିତା ସଂକଳନସବୁ ପଢ଼ିଲା ପରେ ମୁଁ ଆପଣଙ୍କ କବିତାରେ ଅନୁପ୍ରାଣିତ ହୋଇ ନିଜ ଡାଏରୀରେ କବିତା ଲେଖିବା ଆରମ୍ଭ କରିଦେଇଛି । ଅବଶ୍ୟ ସେସବୁ କୌଣସି ପତ୍ରିକାରେ ପ୍ରକାଶ ଉପଯୋଗୀ ହେବ ବୋଲି ମୁଁ ଭାବୁ ନାହିଁ । ମୋର ଅଜାଣତରେ କବିତାଗୁଡ଼ିକରେ ଆପଣଙ୍କ ଶୈଳୀ ଚୋରି ହୋଇଯାଇଛି; ଯଥା: ମୁଁ ପଠାଇଥିବା କବିତା 'ନିରୁଦ୍ଦିଷ୍ଟ ହଳଦୀ ବସନ୍ତ'ରେ ପରିଚୟହୀନତାର ଅଚିହ୍ନା ମୁହଁଙ୍କ ଭିତରେ ତଥା 'ଯୌବନର ଅଭିଷେକ' କବିତାରେ ବୀତସ୍ପୃହ, ପୁରୋହିତଙ୍କ ସ୍ତୋତ୍ରପାଠ । ଆପଣଙ୍କ ଦ୍ୱାରା ବ୍ୟବହୃତ ଶବ୍ଦକୁ ନେଇ କବିତା ଲେଖିବା ଆପଣଙ୍କ copyrightରେ ମୋର ଅନଧିକାର ପ୍ରବେଶ ଭାବୁଛି । ତେଣୁ ମୁଁ ପଠାଇଥିବା କବିତା ଦୁଇଟି ପଢ଼ି ଆବଶ୍ୟକ ସଂଶୋଧନ କରି ମୋତେ ଆପଣଙ୍କ ସୁଚିନ୍ତିତ ପରାମର୍ଶ ଦେବାକୁ ଅନୁରୋଧ ।

ଆପଣଙ୍କ ଅପ୍ରକାଶିତ କବିତାସବୁ ନିକଟ ଭବିଷ୍ୟତରେ କେଉଁସବୁ ପତ୍ରିକାରେ ପ୍ରକାଶ ପାଇବ, ଲେଖି ଜଣାଇବେ । ଶେଷରେ ଆପଣଙ୍କ ବହୁମୂଲ୍ୟ ସମୟ ନଷ୍ଟ କରିଥିବାରୁ କ୍ଷମା ଚାହୁଁଛି ।

॥ ଇତି ॥

ଆପଣଙ୍କର ବିଶ୍ୱସ୍ତ,

ଭାରତ କିଶୋର ପ୍ରଧାନ



## ପତ୍ର-୩

(ସ୍ୱନାମଧନ୍ୟ ଶିଶୁସାହିତ୍ୟିକ ମହେଶ୍ୱର ମହାନ୍ତିଙ୍କଠାରୁ)

କଟକ, ତା ୧୩।୭।୨୦୦୯

ମାନନୀୟେଷୁ,

ମଫସଲ ହାଇସ୍କୁଲରେ ଛାତ୍ର ଥିବା ବେଳେ ଭବିଷ୍ୟତରେ କ'ଣ ଗୋଟିଏ ହେବି ବୋଲି କିଛି ଚିନ୍ତା କରି ନ ଥିଲି । ଗପ କବିତା ଲେଖୁଥିଲି, ତାହା ପତ୍ରପତ୍ରିକାରେ ଛପାହେଉଥିଲା । ସେହି କାରଣରୁ ସାହିତ୍ୟ ପ୍ରତି ଶ୍ରଦ୍ଧା ଥିଲା । ଶେଷରେ ଏଭଳି ହେଲା, ବୃତ୍ତି ଜୀବନରେ ସାହିତ୍ୟ ପଢ଼ାଇଲି, ଆଲୋଚନା କଲି । କବି ଲେଖକମାନଙ୍କୁ ଚିହ୍ନିଲି, ଶ୍ରେଣୀଗୃହରେ ପିଲାମାନଙ୍କୁ ଚିହ୍ନାଇଲି; ଅଥଚ କିଶୋର ବୟସରେ ଏଇ କ୍ଷୁଦ୍ର ପ୍ରାଣକୁ ଆଲୋଡ଼ିତ କରିଥିବା ଏବଂ ଅଭିଭୂତ କରିଥିବା ଜଣେ କବିଙ୍କୁ ଖୋଜି ପାଇଲି ନାହିଁ । ଦୀର୍ଘ ୫୦ବର୍ଷ ଧରି ତାଙ୍କର ନୀରବ ଅନ୍ୱେଷଣ କରିଛି; ହେଲେ ସଫଳ ହୋଇପାରି ନାହିଁ । ବେଳେ ବେଳେ ସେ ନାଆଁଟି ଦ୍ୱିତୀୟା ଚାନ୍ଦ ଭଳି ମନରେ ଉଙ୍କିମାରି ପରକ୍ଷଣରେ କେଉଁଆଡ଼େ ଲିଭିଯାଏ । ଆଉ ବେଳେ ବେଳେ ସେ ପଛପଟୁ ଆସି ମୋର ଦୁଇ କାନ୍ଧରେ ତାଙ୍କ ହାତ ଭରା ଦେଇ କିଶୋର ବୟସରେ ପଢ଼ିଥିବା କବିତାର କେଇପଦ କାନ ପାଖରେ ଗୁଣୁଗୁଣୁ କରି ଗାଇ ଦେଇ, ମୁଁ ବେକ ଭାଙ୍ଗି ପଛକୁ ଚାହିଁଦେଲା ବେଳକୁ କୁଆଡ଼େ ଲୁଚିଯାଆନ୍ତି । ଏଇଭଳି ଗୋଟିଏ କବିତା ଥିଲା-

ବାଲୁକା-ପ୍ରାନ୍ତରେ ତୁମେ ଶାୟିତା କେ ପାଷାଣ ରୂପସୀ  
ଯୌବନର ଅଭିଶାପ ଘେନି କିବା ମଂଜୁଳା ଉର୍ବଶୀ ।  
ଉର୍ଦ୍ଧ୍ୱେ ତବ ଆକାଶର ଶାନ୍ତ ଛବି, ଅବନତ ଧରା-  
ଜ୍ୟୋତ୍ସ୍ନାସିକ୍ତ ସନ୍ଧ୍ୟାବାଳା ଜ୍ୟୋତ୍ସ୍ନାୟିତ ନଭ ଆତ୍ମହରା ।

ମଲାଟରେ ବୋଧହୁଏ କୌଣସି ଛବି ନ ଥିବା ତିନି ଅକ୍ଷର ବିଶିଷ୍ଟ ଗୋଟିଏ ଛୋଟ ପୁସ୍ତକର

ଏଇଟି ଥିଲା ପ୍ରଥମ କବିତା । ପୁସ୍ତକର ନାଆଁ ମନେନାହିଁ, କେବଳ କବିଙ୍କର ନାଆଁ ମନେଅଛି- ଜଗନ୍ନାଥ ପ୍ରସାଦ ଦାସ । କେଉଁ ଏକ ଉପନ୍ୟାସର କାହାଣୀ ଭଳି ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ମନେ ମନେ ନୀରବରେ ଅନ୍ୱେଷଣ କରିଛି ଏଇ କବିଙ୍କୁ ।

ସ୍କୁଲ ଜୀବନରେ ମୋର କେତୋଟି କବିତା କଲିକତାରୁ ପ୍ରକାଶ ପାଉଥିବା 'ଆସନ୍ତାକାଲି'ର 'କିଶୋର ସଂସାର' ବିଭାଗରେ ମଝିରେ ମଝିରେ ଛପା ଯାଇଥିଲା । ସେଇ ଅବସରରେ ମୁଁ ପ୍ରାୟ ନିୟମିତ 'ଆସନ୍ତାକାଲି' ଖଣ୍ଡିଏ ସଂଗ୍ରହ କରି ପଢୁଥିଲି । ସେଇ 'ଆସନ୍ତାକାଲି'ରେ ପ୍ରାୟ ୧୯୫୩ / ୫୪ ବେଳକୁ ଜଗନ୍ନାଥ ପ୍ରସାଦଙ୍କ ନାମରେ ନିୟମିତ କବିତା ପ୍ରକାଶ ପାଉଥିଲା । ଅସ୍ପଷ୍ଟ ଭାବରେ ସେଥିରୁ ଏବେ ମଧ୍ୟ ଧାଡ଼ିଏ ଦୁଇଧାଡ଼ି ମନେଅଛି-

ମତେ ଆଜି ଦୂରେ ଧୂସର ମରୁର
ପାନ୍ଥ ନିବାସ ଡାକେ...
××× ପାନ୍ଥଶାଳାର ମଧୁର ସ୍ୱପ୍ନ ବ୍ୟାକୁଳ କରିଛି ପ୍ରାଣ ।

ଏହି କବିତାର ଶିରୋନାମା ଅବଶ୍ୟ ମନେନାହିଁ । ସେଦିନର ସେଇ କିଶୋର ପ୍ରାଣକୁ ଅଧିକ ଅଭିଭୂତ କରିଥିଲା ଆଉ ଗୋଟିଏ କବିତା, ଯାହାର କିଛି ଅଂଶ ମନେପଡୁଛି-

ରକ୍ତର ତଳେ ନାମହୀନ କେଉଁ
ଜୀବାଣୁର ଦଳ ଛୁଟେ,
ମଣିଷ ଦେହରୁ ତିଳ ତିଳ କରି
ରକତ ମାଉଁସ ଲୁଟେ ।

ଏ ପଦଟି ମନକୁ ଖୁବ୍ ପାଇଯାଇଥିଲା । ମୋର ସ୍ମୃତିଶକ୍ତି ଏତେ ପ୍ରଖର ନୁହେଁ । ଏହାକୁ ପାଠ ଘୋଷିଲା ଭଳି ମୁଖସ୍ଥ କରି ନ ଥିଲି । କିଶୋର ବୟସରେ ବୋଧେ ଏଇଭଳି ମନଛୁଆଁ ଗୀତ ବା କବିତା ବେଳେ ବେଳେ ମନେ ରହିଯାଏ । ଏଇଭଳି ଆଉ ଗୋଟିଏ ମନଛୁଆଁ କବିତାର କିୟଦଂଶ ହେଉଛି:

ଗର୍ଜେ କମାଣ ଗର୍ଜଇ ପରମାଣୁ
ଧ୍ୱଂସର ମହା ଅଗ୍ନି ତୋଳଇ ଶିଖା ×××
ମଣିଷ କରିଛି ମଣିଷରେ ଆଜି ଦାସ ।

ଆଉ ମନେପଡୁ ନାହିଁ । ବୟସ ଆଗେଇ ଯିବା ସଂଗେ ସଂଗେ ସ୍ମୃତି ଦୁର୍ବଳ ହୋଇଯାଉଛି । ଏଇଟି 'ଆସନ୍ତାକାଲି'ରେ ଛପାଯାଇଥିଲା କି ସେଇ ତିନି ଅକ୍ଷରିଆ ବହିରେ ଛପା ଥିଲା, ମନେ ନାହିଁ ।

୫୦ବର୍ଷ ତଳର 'ଜଗନ୍ନାଥ ପ୍ରସାଦ ଦାସ' ନାମଟି ସହିତ ବର୍ତ୍ତମାନର ଜଗନ୍ନାଥ ପ୍ରସାଦଙ୍କୁ ମୁଁ କେବେ ଯୋଡ଼ି ପାରି ନ ଥିଲି। ବର୍ତ୍ତମାନର ଜଗନ୍ନାଥ ପ୍ରସାଦଙ୍କୁ ସେତେବେଳେ କେତେ ବର୍ଷ ହୋଇଥିବ କି ? ସେ କ'ଣ ସେତେବେଳକୁ କବି ହେଲେଣି, ତାଙ୍କର ପୁଣି ବହି ଛପାଯିବ ! ସେତେବେଳେ ଜଗନ୍ନାଥ ପ୍ରସାଦ ନିଶ୍ଚେ ଜଣେ ବୟସ୍କ ବ୍ୟକ୍ତି ହୋଇଥିବେ, ପରିପକ୍ୱ ଚିନ୍ତାଧାରାର ମଣିଷଟିଏ ହୋଇଥିବେ । ସେ କୁଆଡ଼େ ହଜିଗଲେଣି, ତାଙ୍କ ଖବର କେହି ରଖି ନାହାନ୍ତି । ଏଇଭଳି ଏକ ଦୃଢ଼ନିଶ୍ଚିତ ଭ୍ରମ ଧାରଣା ମନରେ ପୋଷଣ କରି ତାଙ୍କୁ ସେଇଠି ପରିତ୍ୟାଗ କରିଥିଲି।

ପ୍ରାୟ ଦୁଇବର୍ଷ ତଳେ ମୋର ପ୍ରତିବେଶୀ ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କୁ କୌଣସି ଏକ ପ୍ରସଙ୍ଗରେ ଥରେ ଏଇ କଥାଟି ପଚାରିଲି । ସେ ସନ୍ଦେହମିଶ୍ରିତ ସ୍ୱରରେ କହିଲେ, ଜଗନ୍ନାଥ ପ୍ରସାଦ ଛାତ୍ରାବସ୍ଥାରେ କବିତା ଲେଖୁଥିଲେ । ହୁଏତ ସେଇ ହୋଇପାରନ୍ତି । ପରବର୍ତ୍ତୀ କାଳରେ ସେ ଆଧୁନିକ କବିତା ଲେଖୁଛନ୍ତି। ଏଣିକି ଗୋଟିଏ ସୂତ୍ର ମିଳିଗଲା ଏତେଦିନ ପରେ। ନୀରବ ଅନ୍ୱେଷଣ ଅପେକ୍ଷା ଏଇ ପ୍ରଶ୍ନଟି ତାଙ୍କ ଆଗରେ ବହୁ ଆଗରୁ ଥୋଇଥିଲେ ଅଥବା ଟିକିଏ ସାଧାରଣ ଜ୍ଞାନ ଖଟାଇଥିଲେ ହୁଏତ ଏଭଳି ଘନ କୁହୁଡ଼ି ଭିତରେ ଏତେକାଳ ରହିବାକୁ ହୋଇ ନ ଥା'ନ୍ତା । ଜଗନ୍ନାଥବାବୁ ପିଲାଦିନୁ କବିତା ଲେଖୁଥିଲେ। କିଶୋର ବୟସରେ ତାଙ୍କର ବହି ଛପା ହୋଇଥିଲା।

ବାସ୍, ତା'ପର ଘଟଣା:

ଠିକଣା ଓ ଟେଲିଫୋନ୍ ନମ୍ବର ମୋ ପାଖରେ ନ ଥିଲା । ତାହାକୁ ସଂଗ୍ରହ କଲି ଅନ୍ୟ ସୂତ୍ରରୁ । ମିଳିଗଲା ମୋର ଉତ୍ତର । ସେଇ ତିନିଅକ୍ଷର ବିଶିଷ୍ଟ କବିତା ପୁସ୍ତକର ନାମ ହେଉଛି 'ସ୍ତବକ' । ଜଣେ ସୁଖ୍ୟାତ ଆଧୁନିକ କବି, ଚିତ୍ରକର, ଗବେଷକ, 'ପ୍ରଥମ ପୁରୁଷ', 'ଅନ୍ୟସବୁ ମୃତ୍ୟୁ', 'ଯେ ଯାହାର ନିର୍ଜ୍ଜନତା', 'ଦେଶ କାଳ ପାତ୍ର', 'ଦିନଚର୍ଯ୍ୟା' ଇତ୍ୟାଦି ବହୁ ପୁସ୍ତକର ରଚୟିତା ଜଗନ୍ନାଥ ପ୍ରସାଦ ଦାସ ତେବେ ହେଉଛନ୍ତି ମୋର କିଶୋର ପ୍ରାଣକୁ ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱକାଳ ଧରି ଆଚ୍ଛନ୍ନ କରି ରହିଥିବା ସେହି 'ସ୍ତବକ' ପୁସ୍ତକର ରଚୟିତା । ଦୁହେଁ ଏକ ଓ ଅଭିନ୍ନ !

x x x

॥ ଇତି ॥

ଶ୍ରଦ୍ଧେୟ,

ମହେଶ୍ୱର ମହାନ୍ତି



## ପତ୍ର-୪

(ବଲିଉଡ୍‌ର ବିଶିଷ୍ଟ ଚିତ୍ରତାରକା ଅମୋଲ ପାଲେକରଙ୍କଠାରୁ)

Bombay, 30.11.1987

My dear J.P.,

This is the last time that I'm writing to you as the Chairman, Children's Film Society, India.

Lots of memories, I would cherish very fondly; every moment when you respected me in spite of my being the youngest member of our team; each moment when you encouraged me to take a step that was much more firm and positive; every time we argued vehemently and managed to come closer- I wouldn't ever forget!

And then, to be in a position to look back not only with satisfaction but with immense pride, at our performance as a team-in spite of all the problems (which by now have become part of history) and to be able to make a very dignified exit- I'm sure none of us would forget the last two and a half years !!

And again, it is not very often that I find myself in a situation when I want to say so much and yet cannot !!

Thus looking forward to continued friendship.

With fondest regards,
Sincerely
**Amol**



## ପତ୍ର-୫

(ହିନ୍ଦୀ ଚଳଚ୍ଚିତ୍ର ଜଗତର ପ୍ରଖ୍ୟାତ ସଂଗୀତକାର ଗୁଲଜାରଙ୍କଠାରୁ)

Bombay, 20.8.93

My Dear J. P. Da',

I just returned from Bhopal, and found your book in front of me. It's always a pleasure to meet you in person or by post. I will write to you after going through the book. CFSI's one big contribution is that it has given me a friend like you.

I am sending you a few more poems, translated by Rina. I will be happy if you find them worthy of publication in the journal of TPS. You can make any changes you like. We respect your suggestion & opinion much above us– both of us. I can say that on Rina's behalf also.

Do let me know your reactions.

Yours most truthfully,

**Gulzar**
CFSI- Children's Film Society of India
TPS: The Poetry Society



ରାମ ଗୋପାଳ ବଜାଜ
ଓ
ସୀତାଂଶୁ ଯଶଶ୍ ଚନ୍ଦ୍ର
(ଗୁଜରାଟୀ କବି)ଙ୍କ ସହ

ବସ୍ତୁତଃ ସେ ଜଣେ ସ୍ୱୟଂସମ୍ପୂର୍ଣ୍ଣ କଳାକାର । କବିତା, କ୍ଷୁଦ୍ରଗଳ୍ପ, ନାଟକ, ଉପନ୍ୟାସ, ଗବେଷଣାମୂଳକ ନିବନ୍ଧ, ଚିତ୍ରକଳା-ସୃଜନଶୀଳତାର ଦିଗନ୍ତ ତାଙ୍କର ବହୁମୁଖୀ ଏବଂ ପ୍ରତ୍ୟେକରେ ଅନ୍ୟ ବିଭାବର ଛାୟା ବିଦଗ୍ଧ ପାଠକଙ୍କୁ ଦୁଶିଯାଏ । ତାଙ୍କ କବିତାରେ ମୁଁ ଗଳ୍ପ କଥନର ଭଙ୍ଗୀ ଲକ୍ଷ୍ୟ କରେ, ଗଳ୍ପରେ କବିତା ପଢ଼େ, କବିତାରେ ଚିତ୍ରକଳାର ଝଲକ୍ ପାଏ, ନାଟକରେ କାବ୍ୟ ବିଭବର ସୂଚନା ମିଳେ ।

**ସୀତାକାନ୍ତ ମହାପାତ୍ର**

ମୁଁ ଲକ୍ଷ୍ୟ କରିଛି- ତାଙ୍କ ଭିତରେ ଅଛି କବିର ହୃଦୟ ଓ ଗବେଷକର ଅନୁସନ୍ଧିତ୍ସା । ଏକ ଜିଜ୍ଞାସୁ ବ୍ୟକ୍ତିସତ୍ତା ତାଙ୍କୁ ସବୁବେଳେ ଉଦ୍‌ବେଳିତ କରୁଥାଏ ।

**ବଳ୍ପନାଥ ରଥ**

ଶ୍ରୀ ଦାସ ଚରିତ୍ର ପ୍ରତି ନିରାସକ୍ତ, ପକ୍ଷପାତଶୂନ୍ୟ ଏବଂ ଆବେଗ ବିଷୟରେ ନିର୍ବିକାର; ଅଧିକନ୍ତୁ ଶିଳ୍ପୀ ଭାବରେ ନିର୍ମମ ଭାବେ ପରିବେଶ ସଚେତନ । ××× ଆବେଗପ୍ରବଣତାର କଠୋର ନିୟନ୍ତ୍ରଣ ଓ ଭାବାର୍ଦ୍ରତା ବର୍ଜନ ତାଙ୍କର ମୁଖ୍ୟ ବିଶେଷତ୍ୱ ।

**ଦାଶରଥି ଦାସ**

'ଭାବ' ଓ 'ଭାବନା'ର ଆକର୍ଷଣ ସେ ସହଜରେ ଛାଡ଼ିପାରି ନାହାନ୍ତି । ବୋଧହୁଏ ଏହି 'ନ ଛାଡ଼ିପାରିବା' ଓ ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସାହିତ୍ୟର ବା କଳାର ସର୍ଜନାତ୍ମକ ଆଲୋଚନାର ପରିସର ଭିତରେ ତାଙ୍କର ଶାଣିତ ଓ ରସାଣିତ ଦୃଷ୍ଟିଭଙ୍ଗୀକୁ ଉପସ୍ଥାପିତ କରିବା କ୍ଷେତ୍ରରେ ସେ ଅନେକଙ୍କ ଭିତରେ ବାରିହୋଇ ପଡ଼ନ୍ତି ।



× × ତାଙ୍କୁ ମୁଁ ସମ୍ମାନ ଦେଇ ଆସିଛି ତାଙ୍କର କଳାତ୍ମକ ବ୍ୟକ୍ତିତ୍ୱ ପାଇଁ । ମୋ ବିଚାରରେ ସେ ଜଣେ ଗଭୀର ଓ ଗମ୍ଭୀର ସ୍ରଷ୍ଟା-ଯିଏ ବେଳେ ବେଳେ ଦାର୍ଶନିକ ପର୍ଯ୍ୟାୟକୁ ଚାଲିଯାଇଛନ୍ତି ।

**ଆଚାର୍ଯ୍ୟ ଭାବାନନ୍ଦ**

ଜଗନ୍ନାଥ ପ୍ରସାଦଙ୍କ ସୌନ୍ଦର୍ଯ୍ୟ ଚେତନା ଓ କଳାତ୍ମକ ଦୃଷ୍ଟିଭଙ୍ଗୀ ସତରେ ବିଚିତ୍ର । ସାହିତ୍ୟ ରଚନା ତାଙ୍କର ବିଳାସ ନୁହେଁ, ବରଂ ପ୍ରବୃତ୍ତି—ଚିନ୍ତା ଓ ଭାବନାର ପୂର୍ଣ୍ଣାଙ୍ଗ ମାନଚିତ୍ର ।

**ବିଜୟାନନ୍ଦ ସିଂହ**

ଜେପି ଜଣେ ବରିଷ୍ଠ ଓ ଖ୍ୟାତିସମ୍ପନ୍ନ ଓଡ଼ିଆ କବି । ସାମ୍ପ୍ରତିକ କବିତାର ପ୍ରେକ୍ଷାପଟରେ ସେ ଅଛନ୍ତି କେତେଜଣ ନିଗୁଡା କବିମାନଙ୍କ ମଧ୍ୟରେ ଅନ୍ୟତମ ।

**ଗୁଲଜାର**

ଚିତ୍ରଶିଳ୍ପୀ ହୋଇଥିବାରୁ ଶବ୍ଦରେ ସେ ଅଙ୍କନ କରିଛନ୍ତି ଅଗଣିତ ଚିତ୍ରକଳ୍ପ । ବହୁ ଚିତ୍ରକଳ୍ପ ତାଙ୍କର ଏକାନ୍ତ ନିଜସ୍ୱ ଓ ସ୍ୱତଃସ୍ଫୂର୍ତ୍ତ ।

**ପ୍ରଫେସର ସର୍ବେଶ୍ୱର ଦାଶ**

ଜଗନ୍ନାଥ ପ୍ରସାଦଙ୍କ ରଚନା ସାର୍ବଜନୀନ; ସଫଳ କଳାର ତ ଏହା ହିଁ ଧର୍ମ ।

**ଭ୍ୟାସିଲିସ୍ ଭିଟାସ୍ୟାକ୍ଲିସ୍ (ଗ୍ରୀକ୍ କବି ଓ ସମାଲୋଚକ)**

ଜଗନ୍ନାଥ ପ୍ରସାଦ ପ୍ରାପ୍ତ ସଂସାରର ମାନବୀୟ ସମ୍ବନ୍ଧଗୁଡ଼ିକୁ ନିଜର ଦ୍ୱନ୍ଦ୍ୱ ମଧ୍ୟ ଦେଇ ବୁଝିବାକୁ ପ୍ରୟାସ କରିଛନ୍ତି ।

**ଶ୍ରୀକାନ୍ତ ବର୍ମା**

ଜେପିଙ୍କ ବ୍ୟକ୍ତିତ୍ୱର ବିଶେଷ ଦିଗଟି ହେଉଛି, ତାଙ୍କ ସରଳ ଓ ସହଜ ଜୀବନଶୈଳୀ, ଯାହା ଜଣକୁ ସ୍ୱତଃ ଆକର୍ଷିତ କରିଥାଏ । ବାକ୍‌ସଂଯମ ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ବିଶେଷ ଦିଗ । × × ନିଜ ଜୀବନ ଅଥବା କଳାକୃତି ସମ୍ପର୍କରେ ସେ କିଛି ମନ୍ତବ୍ୟ ଦିଅନ୍ତି ନାହିଁ । ଏ ସବୁ କ୍ଷେତ୍ରରେ ତାଙ୍କର ଅଖଣ୍ଡ ନୀରବତାରୁ ଜାଣିହେବ, ସେ କେତେ ମାତ୍ରାରେ ମୋହମୁକ୍ତ, ନିରହଂକାର ଓ ପ୍ରାଜ୍ଞ ।

**ସୁମନ୍ୟୁ ଶତପଥୀ**

ସେ ଥିଲେ ଉତ୍କଳ ତଥା ଆଲାହାବାଦ ବିଶ୍ୱବିଦ୍ୟାଳୟର ଉଜ୍ଜ୍ୱଳତମ ଛାତ୍ରମାନଙ୍କ ମଧ୍ୟରେ ଅନ୍ୟତମ । ମୋ ମତରେ ସେ ଜଣେ ଆଦର୍ଶ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ହୋଇପାରିଥା'ନ୍ତେ । ତାଙ୍କର ଆଇ.ଏ.ଏସ୍.ରେ ଯୋଗଦାନ ଆମର ଶିକ୍ଷା ଜଗତର ବିଶେଷ କ୍ଷତି ।

**ପ୍ରଫେସର ଏ.ବି.ଲାଲ**

ତାଙ୍କ ବ୍ୟକ୍ତିତ୍ୱର ସବୁଠୁ ଆକର୍ଷଣୀୟ ବିଭାବ ହେଉଛି ତାଙ୍କ ଆଖି । ଏତେ ଶାଣିତ ଓ ତୀକ୍ଷ୍ଣ, ସତେ ଯେମିତି ହୃଦୟକୁ ଭେଦିଯିବ ସେ ଚାହାଣି ! ଅଦ୍ଭୁତ ଚମକ ଥାଏ ସେ ଆଖିରେ । କିଛି ସମୟ ଚାହିଁଲେ ଜଣେ ମୋହଗ୍ରସ୍ତ ହୋଇଯିବା ବି ଅସମ୍ଭବ ନୁହେଁ ।

**ପ୍ରୀତିଧାରା ସାମଲ**

ଗଦ୍ୟର ପରିଚ୍ଛନ୍ନତା ସଙ୍ଗେ କାବ୍ୟର ଆବେଗ ସଂଚାରୀ ସ୍ୱଭାବର ଏକ ସମ୍ମିଶ୍ରଣ ତାଙ୍କ କବିତାଗୁଡ଼ିକରେ ଦେଖିବାକୁ ମିଳେ । × × କବିତାଗୁଡ଼ିକ ସଂହତ, ସପ୍ରତିଭ ଏବଂ ଚିତ୍ରଧର୍ମୀ ହେଲେ ମଧ୍ୟ ଦୁର୍ବୋଧ୍ୟ ନୁହେଁ ।

**ସଚ୍ଚି ରାଉତରାୟ**

(କବିତା ସଂକଳନ 'ପ୍ରଥମ ପୁରୁଷ' ପରିପ୍ରେକ୍ଷୀରେ)

'ପ୍ରଥମ ପୁରୁଷ' ସାମ୍ପ୍ରତିକ ଓଡ଼ିଆ କବିତା କାକଳିରେ 'ଏକ ନୂତନ ସ୍ୱର' ଓ ଏ ସ୍ୱର ଶୁଦ୍ଧ କବିତାର । × × କବିତାଗୁଡ଼ିକରେ ଭାରତୀୟ ଆଧ୍ୟାତ୍ମିକ କବିତାର ଧାରା ଯେପରି ନିରବଚ୍ଛିନ୍ନ ରହିପାରିଛି, ଆଧୁନିକ ଓଡ଼ିଆ କବିତାର ତାହା ଏକ ନୂତନ ଐଶ୍ୱର୍ଯ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ସୁରେନ୍ଦ୍ର ମହାନ୍ତି**

ଏହି ପ୍ରତିଭାବାନ ଆଗନ୍ତୁକଙ୍କର ଅନ୍ୟ ଏକ ବିଶେଷତ୍ୱ ହେଲା, ତାଙ୍କର କବିତାଗୁଡ଼ିକ ପ୍ରତିଷ୍ଠିତ କବିମାନଙ୍କର ପ୍ରଭାବରୁ ସଂପୂର୍ଣ୍ଣ ଭାବରେ ମୁକ୍ତ । ସାହିତ୍ୟ-ରାଜ୍ୟର ଏକ କ୍ଷୁଦ୍ର ଅଳିନ୍ଦ ଦେଇ ସେ ଆକସ୍ମିକ ଭାବରେ ପଶି ଆସିଛନ୍ତି ଚୈତ୍ରର ସୁରଭିତ ମଳୟ ପରି ଓ କହିଛନ୍ତି, 'ମୁଁ ଜଗନ୍ନାଥ ପ୍ରସାଦ ଦାସ ଆସିଛି-ମୁଁ କିଛି କବିତା ଲେଖିଛି ।' ବାସ୍ ଏତିକି । ପ୍ରବେଶ ଆକସ୍ମିକ ହେଲେ ମଧ୍ୟ ତାହା ସଂପୂର୍ଣ୍ଣ ନିରାଡ଼ମ୍ବର ଓ ଅହଙ୍କାରମୁକ୍ତ ।

**ଅଖିଳ ମୋହନ ପଟ୍ଟନାୟକ**

('ପ୍ରଥମ ପୁରୁଷ' ପରିପ୍ରେକ୍ଷୀରେ)

ଜଗନ୍ନାଥ ପ୍ରସାଦ ଦାସଙ୍କ ସ୍ୱାତନ୍ତ୍ର୍ୟ ତାଙ୍କର ସ୍ୱଚ୍ଛ କାବ୍ୟରୀତି । ଏହି ସ୍ୱଚ୍ଛତାର କାରଣ ହୁଏତ ତାଙ୍କର ନିର୍ମଳ କାବ୍ୟ ଚେତନା । ତାଙ୍କ କବିତାର ଭାଷା ଭାରାକ୍ରାନ୍ତ ନୁହେଁ ଓ ଭାଷାର ବହମାନତା ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରାଯାଇଛି । ଏ ଧରଣର କବିତା ବର୍ତ୍ତମାନ ପ୍ରାୟ ବିରଳ ।

**ହରପ୍ରସାଦ ଦାସ** ('ପ୍ରଥମ ପୁରୁଷ' ପରିପ୍ରେକ୍ଷୀରେ)

ତାଙ୍କଠାରେ ସଚ୍ଚିଦାନନ୍ଦୀୟ ଭାବସ୍ୱାଚ୍ଛନ୍ଦ୍ୟ, ଚିତ୍ରକଳ୍ପ ଓ ପ୍ରତୀକର ସୃଷ୍ଟି ଓ ପ୍ରୟୋଗ ନୈପୁଣ୍ୟ ସହ ଗୁରୁପ୍ରସାଦୀୟ ବକ୍ତବ୍ୟ ଓ ଛନ୍ଦ-ସ୍ୱାଚ୍ଛନ୍ଦ୍ୟ, ସମୟ ବିଶେଷରେ ରମାକାନ୍ତୀୟ quasi-mystical search ଇତ୍ୟାଦି ଲକ୍ଷିତ ହେଉଥିଲେ ହେଁ ଏମାନଙ୍କ ମଧ୍ୟରୁ କାହାରି ପ୍ରଭାବରେ ସେ ଆଚ୍ଛନ୍ନ ହୋଇନାହାନ୍ତି; ବରଂ ତାଙ୍କର କବିତା ସମୂହ ଏମାନଙ୍କ କବିତାର ସମଶ୍ରେଣୀୟ ଓ ସମକକ୍ଷ । ଯଦିବା କିଛି ସାମ୍ୟ ଲକ୍ଷିତ, ତାହା କେବଳ ଯୁଗଧର୍ମଗତ ଓ ସମକାଳୀନତାଗତ ସାମ୍ୟ ମାତ୍ର ।

**ଗିରିବାଳା ମହାନ୍ତି**

ଆଧୁନିକ କବିତାର ଅନେକ ବିଫଳତା ଭିତରେ ଆତ୍ମାର ନିବିଡ଼ ପରିଚୟ 'ପ୍ରଥମ ପୁରୁଷ'ର ଏକ ନିର୍ଘାତ ଧର୍ମ ।

**ନିତ୍ୟାନନ୍ଦ ମହାପାତ୍ର**

ଜଗନ୍ନାଥ ପ୍ରସାଦ ମୋ' ଠାରୁ ଅଧିକ ବରିଷ୍ଠ କବି ବୋଲି କୁହାଯାଇପାରେ । କୌଣସି ପତ୍ରିକାରେ ମୋର କବିତା ପ୍ରକାଶ ହେବା ପୂର୍ବରୁ ତାଙ୍କର ପ୍ରଥମ କବିତା ସଂକଳନ ପ୍ରକାଶିତ ହୋଇସାରିଥିଲା । ଏବଂ ତାଙ୍କୁ ଜଣେ ପ୍ରତିଭାବାନ କବିର ମର୍ଯ୍ୟାଦା ମିଳିଥିଲା ।

**ରମାକାନ୍ତ ରଥ**

କବି ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ ଜଣେ ନୀରବ ସାଧକ । ତାଙ୍କ କବିତାର ବକ୍ତବ୍ୟ ପ୍ରତ୍ୟକ୍ଷ ଏବଂ ବୌଦ୍ଧିକ ଛଳନାଶୂନ୍ୟ ।

**ସୌଭାଗ୍ୟ କୁମାର ମିଶ୍ର**

ସରଳତା, ପ୍ରାଞ୍ଜଳତା ଓ ବୋଧଗମ୍ୟତା କବି ଜଗନ୍ନାଥ ପ୍ରସାଦଙ୍କ କବିତାର ବିଶେଷ ପରିଚୟ ବହନ କରେ, ଯେଉଁଠି ବୌଦ୍ଧିକତା ଓ ଆବେଗର ଚମତ୍କାର ମିଶ୍ରଣ ଘଟିଥାଏ । ଶବ୍ଦଚୟନ ନିପୁଣତାରେ ଚିତ୍ର ଫୁଟାଇବା, ଚିତ୍ରକଳ୍ପର ଜଗତ ନିର୍ମାଣ କରିବା ତାଙ୍କ ଅଭିବ୍ୟକ୍ତିର ଅନ୍ୟତମ ଦିଗ । ରୂପକାୟିତ, ଚିତ୍ରାୟିତ ହୋଇ, ଏ ଚୟନ କେବଳ ବର୍ଣ୍ଣନା ଚାତୁର୍ଯ୍ୟ ନୁହେଁ, କବିତାର ଆବେଦନକୁ ପୁଷ୍ଟ କରେ ।

**ଶତୃଘ୍ନ ପାଣ୍ଡବ**

ଜଗନ୍ନାଥ ପ୍ରସାଦ ଏପରି ଏକ ବିରଳ ତଥା ସମର୍ଥ ଓଡ଼ିଆ କବି ଯିଏ କି 'ଏକଦୃଷ୍ଟିସମ୍ପନ୍ନ' କବି ଭାବରେ ନିଜର ଲକ୍ଷ୍ୟାଭିମୁଖୀ ଦୃଷ୍ଟି ବା ସଂପ୍ରୟୋଜନବାଦୀ ସୌନ୍ଦର୍ଯ୍ୟର ଅଭିଯୋଜନ କରିପାରିଛନ୍ତି । × × ସେ କେବଳ ଶବ୍ଦର ଯାଦୁକର ନୁହନ୍ତି, ଅଧିକନ୍ତୁ ଶବ୍ଦର ସମସ୍ତ ଚିତ୍ରକୁ ଚିତ୍ରଣ କରିପାରୁଥିବା ଏକ ସଫଳ କବି ମଧ୍ୟ । × × ସେ ଏପରି ଏକ ସଜାଗ / ଜାଗ୍ରତ କବି, ଯିଏ ନିଜର ପାଖାପାଖି ଥିବା ସମସ୍ତ ଅବ୍ୟକ୍ତକୁ କବିତାର ବିଷୟରେ ପରିଣତ କରିଛନ୍ତି । ତାଙ୍କର ଅଧିକାଂଶ କବିତାର ପ୍ରବୃତ୍ତି ହିଁ ଏତାଦୃଶ । ତଥାପି ସେ ଭୌତିକ ଜଗତରୁ ସେହି ବିଶେଷ ଅନୁଭବମାନଙ୍କୁ ନିଜ କବିତା ସଂସାରର ଏକ ଏକ ଅଂଶରେ ପରିଣତ କରିଥାଆନ୍ତି, ଯାହା କେବଳ ଏକାନ୍ତ ନିଜସ୍ୱ ଓ ସାର୍ବଜନିକ ମଧ୍ୟ ।

**ଗଙ୍ଗା ପ୍ରସାଦ ବିମଳ**

ଡ. ଜଗନ୍ନାଥ ପ୍ରସାଦ ଦାସଙ୍କ କାବ୍ୟିକ ଉଦ୍‌ଗୀରଣରେ ରହିଛି ମାନବିକତାର ମଧୁର ଝଙ୍କାର, ପ୍ରତୀତି ଓ ପ୍ରଣୟର ନିର୍ବିକାର ମୟୂର ନୃତ୍ୟର ସମ୍ମୋହକ ନାଦ ଏବଂ ସାମୟିକ ଭାବରେ ବୈପ୍ଲବିକ ପରିବର୍ତ୍ତନ ପାଇଁ ଉଦ୍‌ବେଳନର ସ୍ୱର ।

**ଓମ୍ ପ୍ରକାଶ ଅଗ୍ରୱାଲା**

ତାଙ୍କ କବିତା, ଦୀର୍ଘ ଅନୁଭବ ଶୃଙ୍ଖଳାର ରଚନାତ୍ମକ ଅଭିଲେଖ ।

**କେଦାରନାଥ ସିଂହ**

ଯଦି ସମକାଳୀନ ଓଡ଼ିଆ କବିତା ଏକ ନୂଆ ପରିସର ଏବଂ ଦୃଷ୍ଟିଭଙ୍ଗୀରେ ରୁଚିଶୀଳତା ଅର୍ଜନ କରିଥାଏ, ଶୈଳୀଗତ ସ୍ୱଚ୍ଛତା ଏବଂ ସୃଜନସତ୍ତାର ନବ ପ୍ରବର୍ତ୍ତନ ଘଟାଇଥାଏ, ତେବେ ତାହା

ଶ୍ରୀ ଦାସଙ୍କ ଅବଦାନ ଯୋଗୁଁ ସମ୍ଭବ ହୋଇଛି ବୋଲି କହିହେବ । ଅପାରଂପରିକ ସୌନ୍ଦର୍ଯ୍ୟବୋଧ, ଜିଇଁବାର ଆବେଗ ଓ ଆନନ୍ଦଭାବ ତାଙ୍କ କବିତାକୁ ମାର୍ମିକ ଓ ଅତିମାତ୍ରାରେ ପଠନୀୟ କରିଛି ।

**କାବ୍ୟଭାରତୀ ( ୧୯୯୭ )**

ସେ ଜଣେ ବିଶିଷ୍ଟ କବି, ଖ୍ୟାତିମାନ ନାଟ୍ୟକାର । କିନ୍ତୁ କବିତାର ଶବ୍ଦଖେଳର ବ୍ୟଂଜନା ଅଥବା ନାଟକୀୟ ସଂଳାପର ଯାଦୁକରୀ ମାୟା ତାଙ୍କ ଗଳ୍ପକୁ କ୍ୱଚିତ୍ ସ୍ପର୍ଶ କରେ । × × ଅନେକ ଗଳ୍ପର ପରିଣତି ପାଠକ ମନକୁ ପ୍ରଭାବିତ କରେ; ଆଲୋଡ଼ନ ସୃଷ୍ଟି କରି ଧୀରେ ଧୀରେ ବିସ୍ମୃତିର ଅନ୍ଧକାରରେ ବିଲୀନ ହୋଇଯାଏ ନାହିଁ । ଗଳ୍ପ ତାଙ୍କ ପରିଣତ ମାନସିକତାର ସୁବର୍ଣ୍ଣ ଶସ୍ୟ; ଅତିଶୟୋକ୍ତି, ଭାବପ୍ରବଣତା ଦ୍ୱାରା ଆକ୍ରାନ୍ତ ନୁହେଁ ।

**ବିଭୂତି ପଟ୍ଟନାୟକ**

ଜଗନ୍ନାଥ ପ୍ରସାଦଙ୍କ କବିତା ଓ କଳା ସମାଲୋଚନା ଗ୍ରନ୍ଥମାନଙ୍କ ତୁଳନାରେ ତାଙ୍କ କ୍ଷୁଦ୍ରଗଳ୍ପମାନଙ୍କର ପର୍ଯ୍ୟାପ୍ତ ଆଲୋଚନା ହୋଇନାହିଁ । କିନ୍ତୁ ତାଙ୍କ କ୍ଷୁଦ୍ରଗଳ୍ପ ଗୁଡ଼ିକର ଭୂମି ଓ ବିସ୍ତୃତି ଯଥାର୍ଥରେ ବ୍ୟାପକ ଓ ଏଥିରୁ ତାଙ୍କର ଜୀବନ ଓ ସମୟ ପ୍ରତି ଦୃଷ୍ଟିଭଙ୍ଗୀର ସ୍ପଷ୍ଟ ପରିଚୟ ମିଳେ । ସେହିଭଳି ତାଙ୍କର ସାମଗ୍ରିକ କୃତି ଆକଳନରେ ଅନୁବାଦକ ଭାବରେ ତାଙ୍କର ସଫଳତା ପ୍ରତି ଏ ଯାବତ୍ ସମାଲୋଚକମାନେ ଗୁରୁତ୍ୱ ପ୍ରଦାନ କରିଥିବା ଭଳି ମନେହୁଏ ନାହିଁ ।

**ଗଣେଶ୍ୱର ମିଶ୍ର**

କାବ୍ୟିକ ଆବେଦନ, ନାଟକୀୟ ଉତ୍କଣ୍ଠା, ଗବେଷଣାଗତ ବିଶ୍ଳେଷଣ, ଶବ୍ଦ ମାଧ୍ୟମରେ ଦୃଶ୍ୟ-ଚିତ୍ର ଅଙ୍କନ, ଆକର୍ଷଣୀୟ କଥନ ଶୈଳୀର ସମ୍ମିଶ୍ରଣ ତାଙ୍କ ଗଳ୍ପର ବୈଶିଷ୍ଟ୍ୟ ।

**ଗୁରୁଚରଣ ବେହେରା**

ପ୍ରଥମରୁ ହିଁ ମନେହୁଏ, ନାଟକୀୟତା ନୁହେଁ, ସଲିଲକି ବା ନିଜସ୍ୱ ସଂଳାପ ଜଗନ୍ନାଥ ପ୍ରସାଦଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକର ମୂଳ ନିର୍ଯ୍ୟାସ ।

**ହିମାଂଶୁ ଶେଖର ମହାପାତ୍ର**

ପରିଚିତ ପୃଥିବୀରୁ ଅପରିଚିତ ପୃଥିବୀରେ ପହଞ୍ଚାଇଦେବା ଜଗନ୍ନାଥ ପ୍ରସାଦଙ୍କ ଗଳ୍ପର ବିଶେଷତ୍ୱ

**ମୀନାକ୍ଷି ମୁଖାର୍ଜୀ**

ଜଗନ୍ନାଥ ପ୍ରସାଦଙ୍କ ଗଳ୍ପଗୁଡ଼ିକ ଗଢ଼ଣରେ ନିହିତ ଥାଏ ଏକ ଆଇରନି ବା ଶ୍ଳେଷଭାବ ବା ବିରୋଧାଭାସ; ସେଥିପାଇଁ ଜୀବନ ପ୍ରତି ଏକ ସହଜ ହାଲ୍‌କା ମନୋବୃତ୍ତି ତାଙ୍କ ରଚନାରେ ବାରିହୁଏ ।

**ଶାମ୍‌ସ ଅଫିଫ୍ ସିଦ୍ଦିକି**

ମୁଁ ଆଶ୍ଚର୍ଯ୍ୟଚକିତ ହେଲି, ଯେତେବେଳେ ଜାଣିବାକୁ ପାଇଲି ଯେ ଜେପିଙ୍କର ସାହିତ୍ୟ ସମ୍ପର୍କରେ ଯଥେଷ୍ଟ ଜ୍ଞାନ ଓ ପାରଦର୍ଶିତା ଥିବା ସହ ନାଟକ ଓ ଚଳଚିତ୍ର ବିଷୟରେ ସେ ପୂରା ଓସ୍ତାଦ୍ ।

**ଅନନ୍ତ ମହାପାତ୍ର (ବିଶିଷ୍ଟ ଅଭିନେତା ଓ ନିର୍ଦ୍ଦେଶକ)**

ଜେପିଙ୍କ ରଚିତ ନାଟକରେ ମଧ୍ୟ ତାଙ୍କ କବିସତ୍ତାର ଉପସ୍ଥିତି ଉପଲବ୍ଧି କରିହୁଏ ।

**କାରନ୍ତ**

ନାଟକ 'ସୁନ୍ଦର ଦାସ' ଭାରତୀୟ ନାଟ୍ୟ ସାହିତ୍ୟକୁ ଏକ ବିଶେଷ ଅବଦାନ । ଧର୍ମାନ୍ତରୀକରଣ ରାଜନୀତିର ଏହା ଏକ ଅନ୍ତର୍ଦୃଷ୍ଟିସମ୍ପନ୍ନ ବିଶ୍ଳେଷଣ ।

**ଏଚ୍.ଏସ୍. ଶିବପ୍ରକାଶ**

ଐତିହାସିକସୁଲଭ ସତ୍ୟନିଷ୍ଠା, ଶିଳ୍ପୀସୁଲଭ ପରିମିତ-ମାର୍ଜିତ ରୁଚି, ବିଷୟବିନ୍ୟାସର କଳାକୌଶଳ ଓ ଭାଷା ପ୍ରୟୋଗର ନୈପୁଣ୍ୟ ଯୋଗୁଁ 'ଦେଶ କାଳ ପାତ୍ର' ଓଡ଼ିଆ ସାହିତ୍ୟରେ ନୂତନ ପୁରୋଦୃଷ୍ଟି ଓ ରୂପଗନ୍ଧର ଏକ ସଫଳ ସାହିତ୍ୟ କର୍ମ ।

**ଶ୍ରୀନିବାସ ମିଶ୍ର**

ଓଡ଼ିଶା ପ୍ରତି ଜଗନ୍ନାଥ ପ୍ରସାଦଙ୍କର ସବୁଠାରୁ ମହାର୍ଘ ଅବଦାନ 'ପୁରୀ ପେଣ୍ଟିଙ୍ଗ୍ସ' ଗ୍ରନ୍ଥଟି ।

**ଦିନନାଥ ପାଠୀ**

ଉର୍ଦ୍ଦୁ କବିତାର ଇଂରାଜୀ ଅନୁବାଦ ବହୁତ କଷ୍ଟକର କାର୍ଯ୍ୟ; ମାତ୍ର ଜେପିଙ୍କୁ ମିଳିଛି ଏଥିରେ ଅପୂର୍ବ ସଫଳତା ଓ ସେଥିପାଇଁ ତାଙ୍କୁ ଯେତେ ତାରିଫ୍ କଲେ ହେଁ ତାହା କମ୍ ପଡ଼ିବ । ଗୁଲଜାରଙ୍କ କବିତାର ଇଂରାଜୀ ଅନୁବାଦ ଏ ସଫଳତାର ଏକ ଜ୍ୱଳନ୍ତ ନିଦର୍ଶନ । କବିତାର ଗାଠନିକ ଶିଳ୍ପକୁ ଇଂରାଜୀ ଭାଷାନ୍ତର କରିବା ପ୍ରକ୍ରିୟାରେ କବିତାର ମୂଳ ଉପାଦାନକୁ ଇଂରାଜୀ ଶବ୍ଦରେ ଫୁଟାଇ ପାରିବା ପଛରେ ଅଛି ଜେପିଙ୍କ ଅଭୂତପୂର୍ବ କାବ୍ୟିକ ଛଟା । ଉଭୟ ଆହରଣ ଓ ପ୍ରକାଶଭଙ୍ଗୀରେ ସେ ଅନନ୍ୟ ।

**ମାଲାଶ୍ରୀ ଲାଲ**

As a sensible poet, a full-blown short-story writer, an erudite research scholar and critic, an outstanding novelist, an unbeaten playwright and a thoughtprovoking painter, Shri Das has proved his dexterity in each field with composure.

**Manu Dash**

The world that Das creats is both magical & historical, lost & redeemed.

**Mary O' Connor**

His poetry is universal as true poetry should be & ranks with some of the best in any language.

**Vassilis Vitsaxis**

J.P. Das's poetry is a procession of shadows and these shadows are reflections of our own experience. Das's sensibility is easily comparable with that of Faiz in Urdu.

**K.K. Khullar**

('ପ୍ରଥମ ପୁରୁଷ'ର ହିନ୍ଦୀ ରୂପାନ୍ତର 'ପରଛାଇଓଁ କି ଜୁଲୁସ୍' ପରିପ୍ରେକ୍ଷୀରେ)

He reveals himself to himself and others from the underlayers of a poignant sensibility in delicate nuances of feelings. The feelings are, however, not all imperceptible, but cognisable reveries, fantasies and dreams of a lyrical 'first person' in intense being-in-situations. This is authentic poetic expression in new metaphors.

**Mulk Raj Anand**

(on English translation of 'First Person')

J.P. Das is the quintessential raconteur with an instinctive mastery of form.

**The Hindu**

J.P. Das has now secured his place among the leading playwrights of the country.

**Enact**



ଦୁଇ ନାତୁଣୀ ହିନା ଓ ସାଚିଙ୍କ ମେଳରେ

## ସ୍ୱୀକାରୋକ୍ତି

■ ଆମ ଘରେ ଅନେକ ବହି ଓ ପୁରୁଣା ପତ୍ରପତ୍ରିକା ଥିଲା । ତା' ବ୍ୟତୀତ ଆମ ଘରକୁ ଅନେକ ଲେଖକ ଆସୁଥିଲେ ଏବଂ ସବୁବେଳେ ଏକ ସାହିତ୍ୟିକ ବାତାବରଣ ରହୁଥିଲା। ବୋଧହୁଏ ଏହାଦ୍ୱାରା ମୁଁ ସାହିତ୍ୟ ଆଡ଼କୁ ଆକର୍ଷିତ ହୋଇଥିଲି ।

■ ଲେଖକ ପାଇଁ ପ୍ରେରଣା ସବୁ ଦିଗରୁ ଆସେ; ଶିକ୍ଷକ, ପିତା, ପରିବାର, ଗୁରୁ ଗୁରୁଜନ, ପୁସ୍ତକ, ସମାଜ, ପରିବେଶ ଇତ୍ୟାଦି ଇତ୍ୟାଦି । ମୋ ପାଇଁ ଲେଖିବାର କୌଣସି ବିଶେଷ ପ୍ରେରଣା ଥିବାର ମୋର ମନେହେଉ ନାହିଁ।

■ କାହାରି ସାହିତ୍ୟ ପ୍ରତି ଆକୃଷ୍ଟ ହେବା ପଛରେ ଯେତିକି ପୂର୍ବଜଙ୍କର ଭୂମିକା ନ ଥାଏ, ସେତିକି ଥାଏ ପୂର୍ବବର୍ତ୍ତୀ ଲେଖକଙ୍କର ।

■ କବିତା, ଗଳ୍ପ, ନାଟକ, ଚିତ୍ର, ଗବେଷଣା-ଏଥିରୁ କୌଣସିଟି ମୋର ବୃତ୍ତି ନୁହେଁ ଏବଂ ଏସବୁ କେବଳ ନିଜର ଖୁସି ପାଇଁ  ଉଦ୍ଦିଷ୍ଟ । ଓଡ଼ିଶାରେ ବୋଧହୁଏ କୌଣସି ପେସାଦାର ସାହିତ୍ୟିକ ନାହାନ୍ତି, ଯାହାର ବୃତ୍ତି ସାହିତ୍ୟ ହିଁ । ଅବଶ୍ୟ ଖୁସିରେ ସାହିତ୍ୟ ଚର୍ଚ୍ଚା କରିବାର ଅର୍ଥ ନୁହେଁ ଯେ ଏ କାମକୁ ଗଭୀରତାର ସହିତ ନିଆଯିବ ନାହିଁ; ଅଥବା ଏହାକୁ ଯଥା କଥା ଅଯତ୍ନର ସହିତ କରାଯିବ ।

■ ମୁଁ ଯେତିକି କବିତା, ଗଳ୍ପ, ନାଟକ ଲେଖିଛି ବା ଯାହା ଗବେଷଣା କରିଛି, ତାହା ଯେତେ ସମ୍ଭବ ଶ୍ରମ, ଧ୍ୟାନ ଓ ଅଧ୍ୟବସାୟ ସହିତ ।

■ ମୁଁ ଯେତେବେଳେ ଯାହା ଇଚ୍ଛା ହୋଇଛି, ଲେଖିଛି । ସାହିତ୍ୟ (ଅବଶ୍ୟ ନିଜର ଲେଖା) ବିଷୟରେ ତାତ୍ତ୍ୱିକ ଦୃଷ୍ଟିକୋଣରୁ ଭାବିବାକୁ ଚେଷ୍ଟା କରି ନାହିଁ, ତଥା ସେଭଳି ଭାବିବାରେ ମୋର ଆଗ୍ରହ ନାହିଁ।

■ ଗଳ୍ପର ବା କବିତାର ଭାଷା, ଶୈଳୀ ଇତ୍ୟାଦି ବିଷୟରେ ମୁଁ କେବେ ଭାବି ନାହିଁ । ମତେ ଯେଭଳି ଠିକ୍ ଲାଗେ, ମୁଁ ସେଇଭଳି ଲେଖେ । ତେବେ ଭାବି ଚିନ୍ତି ଶବ୍ଦ ପ୍ରୟୋଗ ଓ ବାକ୍ୟ ଗଠନ କରିବାକୁ ଚେଷ୍ଟା କରିଥାଏ ଏବଂ ଅଭିଧାନର ସାହାଯ୍ୟ ନେବା ସଂଗେ ସଂଗେ ଲେଖାକୁ ବାରମ୍ବାର ସଂଶୋଧନ କରିଥାଏ ।

■ ପ୍ରତିଟି ଲେଖା ଲେଖିବା ବେଳେ ସେଇଟି ପ୍ରଥମ ଲେଖା ଭଳି ମନେହୁଏ; ସେଇଟି ସଂପୂର୍ଣ୍ଣ କରିବାର ଆନନ୍ଦ ପ୍ରତିଥର ଏକ ପ୍ରଥମ ପୁଲକ ।

■ ଲେଖକଙ୍କର ଜୀବନ ମଧ୍ୟ ଅନ୍ୟ ସମସ୍ତଙ୍କ ଜୀବନ ଭଳି । ଲେଖକ ପାଇଁ କୌଣସି

ବିଶେଷ ପୃଷ୍ଠଭୂମି ନ ଥାଏ । ଲେଖକର (ଅନ୍ତତଃ ମୋର) ଲେଖକ ଜୀବନ ତା'ର ସଂପୂର୍ଣ୍ଣ ଜୀବନ ଉପରେ ଆଧାରିତ; କୌଣସି ନିର୍ଦ୍ଦିଷ୍ଟ ଘଟଣା ବା ପରିସ୍ଥିତି ଉପରେ ନୁହେଁ ।

■ ମୁଁ ପ୍ରଥମେ କବିତା ଲେଖୁଥିଲି । ମୋର ମନେହେଲା, ମୁଁ ଏପରି କିଛି କଥା କହିବାକୁ ଚାହୁଁଛି, ଯାହା କବିତାରେ (ଅନ୍ତତଃ ମୁଁ ଯେଉଁଭଳି କବିତା ଲେଖୁଥିଲି, ସେଥିରେ) କହିବା ସମ୍ଭବ ନୁହେଁ । ସେଥିପାଇଁ ମୁଁ ଗଳ୍ପରେ ହାତ ଦେଲି । ଅବଶ୍ୟ ତା' ପୂର୍ବରୁ ମୁଁ ନାଟକ ମଧ୍ୟ ଲେଖିଥିଲି । ତେବେ ଗଳ୍ପ ଲେଖିବା ପରେ ଗୋଟିଏ ନୂଆ କଥା ହେଲା ଯେ, ମୁଁ କିଛି ଭିନ୍ନ ପ୍ରକାର କବିତା ଲେଖିବା ଆରମ୍ଭ କଲି । ସମାଜମନସ୍କ ଗଳ୍ପରୁ ସମାଜମନସ୍କ କବିତାକୁ ଆସିଲି ।

■ କବିତାକୁ ବୁଝିବା ପାଇଁ କବିର ଜୀବନ ଯେପରି ଅବାନ୍ତର, ସେହିପରି ସାହିତ୍ୟର ମୂଲ୍ୟାୟନ ପାଇଁ ଲେଖକର ଅନୁଭବ, ପ୍ରେରଣାର ଉତ୍ସ ଓ ଉନ୍ମେଷ ଖୋଜିବା ଅର୍ଥହୀନ ।

■ ମୁଁ କୌଣସି ଲେଖକଙ୍କର ଗଳ୍ପ ବ୍ୟବସ୍ଥିତ ଭାବରେ ପଢ଼ି ନାହିଁ । ତେବେ ବିଭିନ୍ନ ସମୟରେ ଅନେକ ଦେଶୀବିଦେଶୀ ଜଣାଅଜଣା ଲେଖକଙ୍କ ଗଳ୍ପ ପଢ଼ିଛି । ମୋ ଜୀବନର ଅନ୍ୟ ଅଭିଜ୍ଞତାମାନଙ୍କ ଭଳି ଏମାନେ ମଧ୍ୟ ନିଶ୍ଚିତ ଭାବେ ମୋତେ ପ୍ରଭାବିତ କରିଛନ୍ତି । କୌଣସି ନିର୍ଦ୍ଦିଷ୍ଟ ଲେଖକ ବା ଗଳ୍ପ ଦ୍ୱାରା ପ୍ରଭାବିତ ହୋଇଥିବା ମୋର ମନେପଡୁ ନାହିଁ ।

■ ମୁଁ କେବେ କେବେ ଗଳ୍ପକୁ ଏକାଥରେ ଲେଖି ସାରିଦିଏ; ପୁଣି ଆଉ କେବେ ଧୀରେ ଧୀରେ ଅନେକ ଥରରେ ମୋ ଗଳ୍ପ ଲେଖା ଶେଷ ହୁଏ । ତେବେ ମୁଁ କୌଣସି ଲେଖାକୁ ଅଧା ଛାଡ଼ିଦେଇ ଅନ୍ୟ ଲେଖା ଆରମ୍ଭ କରେ ନାହିଁ ।

■ କୌଣସି ଗଳ୍ପର ଚରିତ୍ର ଓ ଘଟଣା ପୂରାପୂରି କାଳ୍ପନିକ ହେବା ସମ୍ଭବ ନୁହେଁ । ପ୍ରତିଟି ଚରିତ୍ର ଓ ଘଟଣା ଉପରେ ଜାଣିଥିବା କୌଣସି ଲୋକ ଓ ଦେଖିଥିବା, ଶୁଣିଥିବା, ପଢ଼ିଥିବା କୌଣସି ଘଟଣାର ପ୍ରଭାବ ପଡ଼ିବ ହିଁ ପଡ଼ିବ ।

■ ଗଳ୍ପରେ କୌଣସି ବାର୍ତ୍ତା ନ ଥିଲେ ଭଲ । ଯାହାର କୌଣସି ବାର୍ତ୍ତା ଦେବାର ଥାଏ, ସେ ବାର୍ତ୍ତା ଲେଖିବା ଉଚିତ; ଗଳ୍ପ ନୁହେଁ ।

■ କୌଣସି ଦେଶ ବା ଭାଷାର ସାହିତ୍ୟକୁ ଉପନ୍ୟାସ, କବିତା ଓ ନାଟକ ମାଧ୍ୟମରେ ଆକଳନ କରାଯାଇଥାଏ; ଗଳ୍ପ ଦେଇ ନୁହେଁ । ତେଣୁ ଗଳ୍ପ ଲେଖକମାନେ ଉପନ୍ୟାସ ଲେଖିଲେ ବୋଧହୁଏ ଓଡ଼ିଆ ସାହିତ୍ୟର ମଙ୍ଗଳ ହେବ ।

■ ଅନେକ ସମୟରେ ଲେଖା ଆରମ୍ଭ କରିବା ପରେ ସେଇଟି ଲେଖକଙ୍କର ପରିକଳ୍ପିତ ପରିଣତି ଆଡ଼କୁ ନ ଯାଇ ନିଜସ୍ୱ ଗତିରେ ଅନ୍ୟ ଉପସଂହାର ନେଇଥାଏ । ଏଭଳି ମୋ କ୍ଷେତ୍ରରେ ମଧ୍ୟ ହୋଇଛି ।

■ 'ଦେଶ କାଳ ପାତ୍ର' ଲେଖିଲା ବେଳେ ମୁଁ ପ୍ରଥମେ ଭାବିଥିଲି, ଉଭୟ ସତ୍ୟ ଏବଂ କଳ୍ପନାର ଆଧାର ଉପରେ ବହିଟି ଲେଖିବି; ଯେପରିକି ଆମେରିକାନ୍ ଉପନ୍ୟାସ 'ରାଗ୍ ଟାଇମ୍'। କିନ୍ତୁ ସେତେବେଳର ପ୍ରକୃତ ଘଟଣାମାନ ଏତେ ନାଟକୀୟ ଓ ରୋଚକ ଥିଲା ଯେ ଶେଷ ପର୍ଯ୍ୟନ୍ତ, ମୁଁ କେବଳ ସତ୍ୟ ଘଟଣାକୁ ନେଇ ହିଁ ଲେଖିଲି।

■ 'ଦେଶ କାଳ ପାତ୍ର' ସାଧାରଣ ପାଠକଙ୍କ ପାଇଁ ଉଦ୍ଦିଷ୍ଟ, ବିଦ୍ୱାନମାନଙ୍କ ପାଇଁ ନୁହେଁ ଏବଂ ଏହାର ବର୍ଣ୍ଣନା କାହାଣୀ ଶୈଳୀରେ, ଗବେଷଣା ପ୍ରବଂଧ ଭଳି ନୁହେଁ। ସେଥିପାଇଁ ଏଥିରେ ବିବରଣୀମାନଙ୍କର ଉତ୍ସ ଦିଆଯାଇ ନାହିଁ।

■ 'ଦେଶ କାଳ ପାତ୍ର'ର କେତେକ ଆଲୋଚନାରେ, ବହିଟିରେ ଫକୀରମୋହନଙ୍କ ମଦ୍ୟପାନ ଓ ରାଧାନାଥଙ୍କ ପରକୀୟା ବିଷୟରେ ଉଲ୍ଲେଖ ଥିବାର ନିନ୍ଦା କରାଯାଇଛି। ମୁଁ ଜାଣିବାରେ ଏହା ବ୍ୟତୀତ ଆଉ କେଉଁ ଚରିତ୍ରର କେବଳ ଖରାପ ଦିଗଟି ବହିରେ ଆଲୋଚିତ ହୋଇଥିବାର କେହି କହି ନାହାନ୍ତି। ଫକୀରମୋହନ ଓ ରାଧାନାଥଙ୍କ ଜୀବନର ଏ ଦିଗମାନ ମୁଁ ସେହିମାନଙ୍କ ନିଜ ଲେଖାରୁ ହିଁ ନେଇଛି। ସେମାନେ ଯେତେବେଳେ ଅସଂକୋଚ ଓ ସାହସର ସହିତ ନିଜ ବିଷୟରେ ଲେଖିପାରିଥିଲେ, ଶହେ ବର୍ଷ ପରେ ସେକଥା ପଢ଼ିବା ବେଳେ ଆମର କୁଣ୍ଠିତ ହେବାର କ'ଣ କାରଣ ଅଛି ?

■ ଲେଖାଟି ପ୍ରକାଶିତ ହେବା ପରେ ତାହା ସର୍ବସାଧାରଣଙ୍କର ସମ୍ପତ୍ତି। ସେଥିରୁ ଯେ ଯେତିକି ପାଇଲା, ତା'ର ପ୍ରାପ୍ୟ ସେତିକି।

■ ମୁଁ ସବୁବେଳେ ବିଶ୍ୱାସ କରିଛି ଯେ ଜଣେ ଲେଖକର (ବିଶେଷରେ ସୃଜନଶୀଳ ଲେଖକର) ଯାହା ବକ୍ତବ୍ୟ, ତାକୁ ସେ ନିଜର ଗଳ୍ପ, କବିତା, ଉପନ୍ୟାସରେ କହିବା ଉଚିତ; ତା' ବାହାରେ ନିଜ ଲେଖା ଉପରେ ଆଲୋଚନା କରି ନୁହେଁ। × × ଲେଖକର ନିଜ ଲେଖା ବିଷୟରେ ମତ ଅପ୍ରାସଙ୍ଗିକ ଏବଂ ଅନେକ ସମୟରେ ଭ୍ରମାତ୍ମକ ଓ ଅଯଥାର୍ଥ।

■ ମୋ ମତରେ କାହା ସାହିତ୍ୟର କାହିଁକି ଓ କିପରି ମୂଲ୍ୟାୟନ ହେବ, ସେ ସମସ୍ୟାକୁ ସମାଲୋଚକଙ୍କ ଉପରେ ଛାଡ଼ିଦେବା ଉଚିତ। ସୃଜନଶୀଳ ଲେଖକ ସେ ବିଷୟରେ ମତାମତ ଦେବା ଧୃଷ୍ଟତା ହେବ।

■ ସାହିତ୍ୟ ପୁରସ୍କାର ସାହିତ୍ୟ ସୃଷ୍ଟି ପାଇଁ ଆଦୌ ସହାୟକ ନୁହେଁ। ଏହାଦ୍ୱାରା ସାହିତ୍ୟିକକୁ ସ୍ୱୀକୃତି ଓ ସମ୍ମାନ ମିଳିଥାଏ ଏବଂ ଏହା ତା'ର ବହିର ବିକ୍ରୟରେ ସାହାଯ୍ୟ କରିଥାଏ। କିନ୍ତୁ ଓଡ଼ିଶାରେ ତାହା ମଧ୍ୟ ହୁଏ ନାହିଁ।

■ କୌଣସି ଭାରତୀୟ ଭାଷାର ବହି ବାହାରେ ଜଣାଶୁଣା ହେବାର ଏକମାତ୍ର ମାଧ୍ୟମ

ହେଉଛି ଅନୁବାଦ । (ବିଶେଷ କରି ଇଂରାଜୀରେ) ଗୋପୀନାଥ ମହାନ୍ତି ସର୍ବଭାରତୀୟ (ଏକ ଅନ୍ତଃରାଷ୍ଟ୍ରୀୟ) ସ୍ୱୀକୃତି ପାଇଲେ, ବିକ୍ରମ ଦାସ କରିଥିବା 'ପରଜା'ର ଇଂରାଜୀ ଅନୁବାଦ ଜଣେ ଖ୍ୟାତନାମା ପ୍ରକାଶକଙ୍କ ଦ୍ୱାରା ପ୍ରକାଶ ପାଇବା ପରେ । ଓଡ଼ିଆ ସାହିତ୍ୟ ବାହାରେ ନ ପହଞ୍ଚି ପାରୁଥିବାର ଏକମାତ୍ର କାରଣ ହେଉଛି, ଉତ୍ତମ ଅନୁବାଦର ଅଭାବ । ଓଡ଼ିଶାର ଅନେକ ପ୍ରସିଦ୍ଧ ଲେଖକଙ୍କ ବହିର ଏ ପର୍ଯ୍ୟନ୍ତ ଅନୁବାଦ ହୋଇ ନାହିଁ ।

■ ସାହିତ୍ୟିକ ଭାଷା ସବୁବେଳେ କଥିତ ଭାଷାଠାରୁ ଭିନ୍ନ । ଲେଖକ ନିଜ ଲେଖାରେ (ବିଶେଷରେ ଗଳ୍ପ, ନାଟକ, ଉପନ୍ୟାସରେ) ଯେତେଦୂର ସମ୍ଭବ ଚରିତ୍ରମାନଙ୍କ ମୁହଁରେ କଥିତ ଭାଷା ଦେବାକୁ ଚେଷ୍ଟା କରିଥାଏ ମାତ୍ର ।

■ ଓଡ଼ିଆ ଲେଖକମାନଙ୍କର ସବୁବେଳେ ଅଭିଯୋଗ ଯେ ଆମର ପାଠକ ଅତି ନଗଣ୍ୟ । ଏହାର ଅନ୍ୟ ଦିଗଟି ହେଉଛି ଯେ ଓଡ଼ିଆରେ ବେଶ୍ କିଛି ବିଦଗ୍ଧ ପାଠକ ଅଛନ୍ତି ଏବଂ ସେହି ଚିହ୍ନରା ଗ୍ରାହକଙ୍କର ସଂଖ୍ୟା କମ୍ ହେଲେ ମଧ୍ୟ ମହତ୍ତ୍ୱପୂର୍ଣ୍ଣ ।

■ ଚିତ୍ରକଳା ପ୍ରତି ମୋର ଆକର୍ଷଣ ବହୁଦିନର । ୧୯୫୬-୫୭ରେ ମୁଁ ଆଲାହାବାଦ ବିଶ୍ୱବିଦ୍ୟାଳୟରେ କିଛିଦିନ ପାଇଁ ଚିତ୍ରକଳା ଡିପ୍ଲୋମା କ୍ଲାସ୍‌ର ଛାତ୍ର ଥିଲି । ସମାଜକୁ ପରିବର୍ତ୍ତନ କରିବାରେ ସାହିତ୍ୟ ଅଥବା ଚିତ୍ରକଳାର ଭୂମିକା ଅତି ସୀମିତ । କୌଣସି କଳା ଯଦି ମଣିଷକୁ ସାମୟିକ ଭାବରେ ବା ବିଳମ୍ବରେ ପ୍ରଭାବିତ କରିପାରେ ତଥା ଚିନ୍ତା କରିବାକୁ ବାଧ୍ୟ କରେ, ମୁଁ ତାକୁ କଳାତ୍ମକ ସୃଷ୍ଟି ବୋଲି କହିବି ଏବଂ କଳାର ସଂଜ୍ଞା ହେଉଛି ମଣିଷ ଓ ସମାଜର ରୂପର (ଉଭୟ ଭିତର ଓ ବାହାରର) ପ୍ରକାଶ ।

■ ଅନେକ ବର୍ଷ ତଳେ କଳା ସମାଲୋଚକ ଓ.ସି. ଗାଙ୍ଗୁଲି ଏକ ମନ୍ତବ୍ୟ କରିଥିଲେ ଯେ ଓଡ଼ିଶାର ଶିଳ୍ପକଳା ସମ୍ବନ୍ଧରେ ଯଦିଓ ବିଶଦ ଭାବରେ ଆଲୋଚନା କରାଯାଇଛି, ଓଡ଼ିଶାର ଚିତ୍ରକଳା ସମ୍ପର୍କରେ କୌଣସି ଅଧ୍ୟୟନ କରାଯାଇ ନାହିଁ । ସେହି ସମୟରୁ ମୁଁ ଓଡ଼ିଶାର ଚିତ୍ରକଳା ସମ୍ପର୍କରେ ଅଧ୍ୟୟନ କରିବା ପାଇଁ ମନସ୍ଥ କରିଥିଲି ।

■ ଯଦିଓ ମୋର ପ୍ରଥମ ଚିତ୍ରକଳା ପ୍ରଦର୍ଶନୀ ମୋର ପ୍ରଥମ କବିତା ବହିର ପ୍ରକାଶ ପୂର୍ବରୁ ଅନୁଷ୍ଠିତ ହୋଇଥିଲା, ସମୟ ଅଭାବରୁ ମୁଁ ବର୍ତ୍ତମାନ ଚିତ୍ରକଳା କରିପାରୁ ନାହିଁ । ବର୍ତ୍ତମାନ କେବଳ କବିତା, ନାଟକ, ଗଳ୍ପ, ଉପନ୍ୟାସ ଆଦି ମୋର ସୃଜନାତ୍ମକ ପ୍ରକାଶର ମାଧ୍ୟମ ହୋଇଥିବାରୁ ମୁଁ ଅନେକ ସମୟରେ ନିଜକୁ ଚିତ୍ରଶିଳ୍ପୀ ଭାବରେ ପରିଚୟ ଦେବାକୁ କୁଣ୍ଠିତ ମନେକରୁଛି ।

■ ମୋର ଦୁଃଖ ଯେ ମୁଁ ବାହାରେ ରହୁଥିବାରୁ ଓଡ଼ିଶାର ରଂଗମଞ୍ଚରୁ (ହୁଏତ ଓଡ଼ିଶାର ପାଠକମାନଙ୍କ ପାଖରୁ ମଧ୍ୟ) ଦୂରେଇ ଯାଇଛି ।

■ ଭବାନୀପାଟଣା, ଯେଉଁଠାରେ ମୁଁ ମୋର ଜୀବନର ତିନୋଟି ବର୍ଷ କର୍ମ ଓ ଅଭିଜ୍ଞତାବହୁଳ ଜୀବନ କଟାଇଥିଲି, ସେହିଠାରୁ ହିଁ ମୋର ପ୍ରକୃତ ଜୀବନର ଆରମ୍ଭ ବୋଲି ମୁଁ ମନେକରେ ।

■ ଅନେକ କବି ଓ କଳାକାର ଭାବନ୍ତି ଯେ ପ୍ରବୃତ୍ତି ଓ ପ୍ରକୃତି ମଧ୍ୟରେ ସମନ୍ୱୟ ନ ଥାଏ । କଳାକାରର ପ୍ରବୃତ୍ତି ଏପରି ଯେ ତାହା ଜନସାଧାରଣର ପ୍ରକୃତି ସହ ଖାପ ଖାଏନା । କବିର ଭାବନା ଓ ରଚନା ଶକ୍ତି ଉନ୍ମୁକ୍ତ ଜୀବନଶୈଳୀ ଦ୍ୱାରା ପ୍ରବୃଦ୍ଧ ହୁଏ । ସଂସାରୀ, ଅକବି ଓ ଗଦ୍ୟକାର ଇତ୍ୟାଦି ଶୃଙ୍ଖଳା ମଧ୍ୟରେ ହିଁ ନିଜ କାମ ସୁଚାରୁ ଭାବେ ଚଳାଇ ପାରନ୍ତି । ସୃଜନଶୀଳ କବି ପାଇଁ ଏପରି ଜୀବନ ମାରାତ୍ମକ ।

■ ମୁଁ ବିଭିନ୍ନ ସମୟରେ ଯେଉଁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ଓ କାର୍ଯ୍ୟକ୍ରମ ସହିତ ଜଡ଼ିତ ରହିଛି, ସେଥିରୁ 'ଶିଶୁ ଚଳଚ୍ଚିତ୍ର ସମିତି' ଅନ୍ୟତମ । ୧୯୮୫ରୁ ୧୯୯୦ ପର୍ଯ୍ୟନ୍ତ ପାଞ୍ଚ ବର୍ଷ ମୁଁ ଏହି ଅନୁଷ୍ଠାନ ସହିତ ସଂପୃକ୍ତ ଥିଲି । ସେହି ସହଯୋଗର ମୋ ପାଇଁ ଦୁଇଟି ସାହିତ୍ୟିକ ସୁଫଳ ଥିଲା: ମୁଁ ଗୋଟିଏ ଶିଶୁ କବିତା ବହି ଲେଖିଥିଲି (ଆଳିମାଳିକା, ୧୯୯୩)ଏବଂ ସମିତିର ଆନ୍ତର୍ଜାତିକ ଶିଶୁ -ଚଳଚ୍ଚିତ୍ର ସମାରୋହ (୧୯୮୭) ବେଳେ ଭୁବନେଶ୍ୱରରେ ଅନେକ ଦିନ ରହିବା ସମୟରେ 'ଦେଶ କାଳ ପାତ୍ର' ପାଇଁ ଗବେଷଣା କରିପାରିଥିଲି ।



**■ ଆପଣ ଜଣେ ସ୍ୱନାମଧନ୍ୟ ଚିତ୍ରଶିଳ୍ପୀ, ସୁପ୍ରସିଦ୍ଧ କବି, ନାଟ୍ୟକାର ତଥା ଔପନ୍ୟାସିକ । ତେବେ କେଉଁ ମାଧ୍ୟମରେ ଆପଣ ନିଜକୁ ଅପେକ୍ଷାକୃତ ଅଧିକ ସ୍ପଷ୍ଟ ଭାବରେ ପ୍ରକାଶ କରିବାରେ ସକ୍ଷମ ବୋଲି ମନେକରନ୍ତି ?**

▣ ପ୍ରତ୍ୟେକ କଳାର ଏକ ନିର୍ଦ୍ଦିଷ୍ଟ ପରିପ୍ରକାଶ ଭଙ୍ଗୀ ଅଛି । ଚିତ୍ରାଙ୍କନ ପାଇଁ କାନ୍‌ଭାସ୍ ଓ ରଙ୍ଗ ଯାହା, କବିତା ପାଇଁ ଶବ୍ଦ ଠିକ୍ ତାହା । ରଙ୍ଗବିନ୍ୟାସ ଯଦି ଚିତ୍ରକଳାର ସଂଜ୍ଞା ହୁଏ, ଶବ୍ଦର ବିନ୍ୟାସ କବିତାର ସଂଜ୍ଞା ହେବ । ଉଭୟରେ ଶୈଳୀର ଆଶ୍ରୟ ନେବାକୁ ହୋଇଥାଏ । କଳାତ୍ମକ ମୂଲ୍ୟବୋଧ ଦୃଷ୍ଟିରୁ ଏ ଦୁଇଟି ମଧ୍ୟରୁ କୌଣସି ଗୋଟିକକୁ ଅଧିକ ସ୍ପଷ୍ଟ ବୋଲି କହିବା ସମ୍ଭବ ନୁହେଁ । ଯଦି ସ୍ପଷ୍ଟତାର ଅଭାବ ପରିଲକ୍ଷିତ ହୁଏ, ତାହା କବି ବା ଚିତ୍ରଶିଳ୍ପୀର ଦୁର୍ବଳତା ବୋଲି ଧରିନେବାକୁ ହେବ । ଏ କଥା ଅବଶ୍ୟ ସତ୍ୟ ଯେ ବିଭିନ୍ନ କାରଣରୁ (ଯଥା: ପ୍ରସାରର ସମ୍ଭାବନା) ବର୍ତ୍ତମାନ ସମୟରେ କବିତା ଏକ ସକ୍ରିୟ ମାଧ୍ୟମ । ସେହିପରି କବିତାଠାରୁ ନାଟକ ବା ଗଳ୍ପ, ଉପନ୍ୟାସ ଆହୁରି ସକ୍ରିୟ ମାଧ୍ୟମ ।

**■ କବିତା, ଗଳ୍ପ, ନାଟକ ଆଦି ସାହିତ୍ୟର ବିଭିନ୍ନ ବିଭାଗରେ ଆପଣ ଲେଖନୀ ଚାଳନା କରିଛନ୍ତି । ତେବେ ଆପଣ କେଉଁ ରୂପରେ ନିଜର ପରିଚୟ ଦେବାକୁ ଅଧିକ ପସନ୍ଦ କରନ୍ତି ?**

▣ ଲେଖକର ବ୍ୟକ୍ତିତ୍ୱ ଗୋଟିଏ ମାତ୍ର, ସେ ବିଭିନ୍ନ ପ୍ରକାରର ଲେଖା-କବିତା, ଗଳ୍ପ, ନାଟକ ଲେଖୁଥାଉ ପଛେ । ତେବେ କବିତା ମୋର ପ୍ରଥମ ପ୍ରେମ ହୋଇଥିବାରୁ ମୁଁ ନିଜକୁ ପ୍ରଥମେ କବି ଭାବରେ ଭାବିଥାଏ ।

**■ କବି ଜେପି, ଗାଳ୍ପିକ ଜେପି ଓ ନାଟ୍ୟକାର ଜେପିଙ୍କ ଭିତରେ କେବେ କେବେ ସଂଘର୍ଷ ହୁଏନି ? ଜଣକର ପ୍ରତିଷ୍ଠା ଓ ପ୍ରତିଭା ଅପରକୁ କ୍ଷୁଣ୍ଣ କରେନା ?**

▣ ପେସାଦାର ଲେଖକଙ୍କ କ୍ଷେତ୍ରରେ ହୁଏତ ଏଭଳି ସଂଘର୍ଷ ସମ୍ଭବ; କିନ୍ତୁ ମୁଁ ଖୁସିରେ କବିତା, ଗଳ୍ପ, ନାଟକ ଲେଖୁଥିବାରୁ (କିମ୍ବା ନ ଲେଖୁଥିବାରୁ) ମୋ ପାଇଁ କେବେ କୌଣସି ସମସ୍ୟା ଉପୁଜି ନାହିଁ । ତେବେ ଏ ବିଷୟରେ ମୁଁ ନିଜ ପାଇଁ ନିଜର ଏକ ଶୃଙ୍ଖଳା ରଖିଥାଏ । କିଛି ଦିନ କବିତା ଲେଖିବା ପରେ ତାକୁ ବନ୍ଦ ରଖି ଗଳ୍ପ ଲେଖେ । ପୁଣି କବିତାକୁ ଫେରିଆସେ । ଲେଖକ ଭାବରେ ମୋର ପ୍ରତିଷ୍ଠା ଓ ପତିଆରା ଅଛି କି ନା ଏବଂ କେତେ ଭଳି ଅଛି, ତା' ମୁଁ ଜାଣେନା; ମୁଁ ସେ ବିଷୟରେ ଭାବେ ନାହିଁ ବା ସଚେତନ ନୁହେଁ ।



ନିଜ ବୈଠକ ଘରେ ଶ୍ରୀ ଦାସ

■ ଆପଣ କବିତା ରଚନା କରି ପ୍ରସିଦ୍ଧି ଅର୍ଜନ କଲା ପରେ ପୁଣି ଗଳ୍ପ / ନାଟକ କ୍ଷେତ୍ରକୁ ଆସିଲେ କାହିଁକି ? କ'ଣ କବିତାରେ ସବୁକିଛି ପ୍ରକାଶ କରିବା ସମ୍ଭବ ହେବ ନାହିଁ ଭାବି ଏପରି ନିଷ୍ପତ୍ତି ନେଲେ ?

▣ କବିତାରେ ନିଶ୍ଚୟ ସବୁକିଛି କହିହେବ ଏବଂ ଅନେକ ବି ସଫଳତାର ସହିତ ବିଭିନ୍ନ ବିଷୟରେ କବିତା ଲେଖିଛନ୍ତି । ତେବେ ସବୁ କବି ସବୁ ବିଷୟରେ କବିତା ଲେଖନ୍ତି ନାହିଁ । କେତେକ ବିଷୟ ପାଇଁ ମୁଁ ଭାବିଲି, ହୁଏତ କବିତା ଅପେକ୍ଷା ଗଳ୍ପ, ନାଟକ ଭଲ ମାଧ୍ୟମ ହେବ ।

କିଛି ବର୍ଷ ତଳେ ଜୋଆନ୍ନା ୱଇଲିଆମ୍‌ସ ଓ ମୁଁ ଓଡ଼ିଶାର ଜଣେ ଉନବିଂଶ ଶତାବ୍ଦୀର ଚିତ୍ରକର (ରଘୁନାଥ ପୃଷ୍ଟି, ମୁଣ୍ଡ ମରାଇ, ଧରାକୋଟ)ଙ୍କ ବିଷୟରେ ଗବେଷଣା କରୁଥିଲୁ । (ଏହି ଗବେଷଣା ପୁସ୍ତକଟି 'ପାମ୍‌ଲିଫ୍ ମିନିଏଚର୍ସ' ନାମରେ ପ୍ରକାଶ ପାଇସାରିଛି) ସେଇ ସନ୍ଦର୍ଭରେ

ମୁଁ ସେତେବେଳର ଓଡ଼ିଶା ବିଷୟରେ ପଢ଼ାପଢ଼ି କରିଥିଲି ଏବଂ ଊନବିଂଶ ଶତାବ୍ଦୀର ଓଡ଼ିଶା ମତେ ଅତ୍ୟନ୍ତ ଚିତ୍ତାକର୍ଷକ ମନେ ହୋଇଥଲା । ମୁଁ ସେହିସବୁ ସାମଗ୍ରୀକୁ ନେଇ 'ଦେଶ କାଳ ପାତ୍ର' ଲେଖିଥିଲି ।

ମୋର ଗବେଷଣା ବେଳେ ମୁଁ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାରେ ଖ୍ରୀଷ୍ଟିଆନ ମିଶନାରୀମାନଙ୍କ କାର୍ଯ୍ୟକଳାପ ବିଷୟରେ ଯେଉଁ ତଥ୍ୟ ସଂଗ୍ରହ କରିଥିଲି, ତାକୁ ନେଇ 'ଦେଶ କାଳ ପାତ୍ର' ଭଳି ଆଉ ଗୋଟିଏ ବହି ନ ଲେଖି ମୁଁ ଭାବିଲି ଯେ ଗୋଟିଏ ନାଟକ ଲେଖିବା ଉପଯୁକ୍ତ ହେବ । ୧ ୯ ୯ ୩ରେ ରଚିତ 'ସୁନ୍ଦର ଦାସ' ନାଟକ ତା'ର ପରିଣତି ।

■ **ଆପଣ ଗଳ୍ପ କେଉଁଠୁ ଆରମ୍ଭ କରି କେଉଁଠି ଶେଷ କରିବେ, ତାହା କ'ଣ ଗଳ୍ପ ଲେଖା ଆରମ୍ଭ କରିବା ପୂର୍ବରୁ ସ୍ଥିର କରିଥାଆନ୍ତି ?**

▣ କେବେ କେବେ ଏଭଳି ସ୍ଥିର କରିଥାଏ ଏବଂ ଲେଖିଥାଏ ମଧ୍ୟ । ପୁଣି କେବେ କେବେ ଲେଖିବା ଆରମ୍ଭ କରିବା ପରେ ଗଳ୍ପ ନିଜେ ନିଜର ମୋଡ଼ ନିଏ ଏବଂ ନିଜର ଉପସଂହାର ଆଡ଼କୁ ଚାଲିଯାଏ ।

■ **ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶଲାଭ କରୁଥିବା ଏବକାର ଗଳ୍ପ ସମ୍ପର୍କରେ ଆପଣଙ୍କର ଧାରଣା କ'ଣ ?**

▣ ମୁଁ ଯେତିକି ପଢ଼ିପାରୁଛି, ମୋର ମତ ଯେ ଓଡ଼ିଆରେ ବର୍ତ୍ତମାନ ଅନେକ ଭଲ ଗଳ୍ପ ଲେଖାଯାଉଛି । ତେବେ ପତ୍ରପତ୍ରିକାରେ ଯେଉଁ ଗଳ୍ପମାନ ପ୍ରକାଶ ପାଉଛି, ସେଥିରୁ କିଛି ଉଚ୍ଚମାନର ହୋଇଥିବା ବେଳେ କିଛି ଅତି ସାଧାରଣ ଏବଂ ବେଶ୍ କିଛି ନିକୃଷ୍ଟ । ଏ ବିଷୟରେ ସମ୍ପାଦକମାନଙ୍କର ଦାୟିତ୍ୱ ରହିଛି । ସେମାନେ ଯଦି କେବଳ ଉତ୍କୃଷ୍ଟ ମାନର ଲେଖା ପ୍ରକାଶ କରନ୍ତି, ତେବେ ବି ନୂଆ ନୂଆ ନାଆଁ ଆଗକୁ ଆସିବ ଏବଂ ନୂଆ ଲେଖକମାନେ ସେଥିରୁ ଶିଖିପାରିବେ ।

■ **ଲେଖକର କିଛି ସାମାଜିକ ଦାୟିତ୍ୱ ଅଛି ବୋଲି ଆପଣ ଭାବନ୍ତି କି ?**

▣ ସାହିତ୍ୟିକର ସମାଜବଦ୍ଧତା ଓ ସାମାଜିକ ଦାୟିତ୍ୱ ବିଷୟରେ ଦ୍ୱିମତ ହୋଇପାରେନା । ସାହିତ୍ୟିକକୁ ସମାଜମନସ୍କ ହେବାକୁ ହିଁ ହେବ । ସମାଜ ସାହିତ୍ୟିକ ଓ ତା'ର କୃତିକୁ ସମ୍ମାନ ଦେଉଥିବାରୁ ଲେଖକର ସମାଜ ପ୍ରତି ଏକ ବିଶେଷ ଦାୟିତ୍ୱ ରହିଛି । କୌଣସି ସମସ୍ୟାର ସମାଧାନ ନିରୂପଣ କରିବା ଲେଖକର କର୍ତ୍ତବ୍ୟ ହୋଇ ନ ପାରେ; କିନ୍ତୁ ସମସ୍ୟାକୁ ଲୋକମାନଙ୍କ ସମ୍ମୁଖରେ ଠିକ୍ ଭାବରେ ଉପସ୍ଥାପିତ କରିବା ସାହିତ୍ୟିକର ଦାୟିତ୍ୱ ନିଷ୍ଠୟ ।

ଏ କଥା ଆଶା କରିବା ଉଚିତ ନୁହେଁ ଯେ, ପ୍ରତି ଲେଖକର ପ୍ରତିଟି ଲେଖା ସମାଜର କୌଣସି ବିଶେଷ ସମସ୍ୟାକୁ ନେଇ ଲେଖା ହେବ । ତେବେ ସବୁ ଲେଖକ ଯଦି ନିଜର ଲେଖାକୁ ସମାଜ ଓ ରାଜନୀତିରୁ ଅଲଗା କରିନିଅନ୍ତି; ତାହା ଚିନ୍ତାର ବିଷୟ ହେବ । ଏ ବିଷୟରେ ଜୟନ୍ତ ମହାପାତ୍ର ଓଡ଼ିଆ କବିତା ସଂପର୍କରେ ଦେଇଥିବା ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ଗତ ପଚାଶ ବର୍ଷର ବହୁ ପ୍ରଶଂସିତ ଓ ତଥାକଥିତ ସଫଳ ଓଡ଼ିଆ କବିତା ପ୍ରାସଂଗିକ ସାମାଜିକ ଓ ରାଜନୈତିକ ତଥା ସାମାଜିକ ମଣିଷର ସମସ୍ୟାକୁ ଏଡ଼ାଇ ଯାଇଛି । ଏହା 'ପଳାୟନ'ର କବିତା ଏବଂ ଶହେ ବର୍ଷ ତଳେ କବିମାନେ ଯେଉଁସବୁ ପୁରାଣ କଥା ବିଷୟରେ କହୁଥିଲେ, ତାହାରି ଚାରିପାଖେ ପର୍ଯ୍ୟବସିତ ।

■ **ମାତୃଭାଷା ଭିନ୍ନ ଅନ୍ୟ ଭାଷାରେ ସୃଜନ ସମ୍ଭବ କି ?**

▣ ଏଭଳି ଏକ ଧାରଣା ଅଛି ଯେ ମାତୃଭାଷା ଭିନ୍ନ ଅନ୍ୟ ଭାଷାରେ ସୃଜନ କର୍ମ, ବିଶେଷରେ କବିତା ରଚନା, ସମ୍ଭବ ନୁହେଁ । ବିଶ୍ୱ ସାହିତ୍ୟରେ ଅନ୍ୟ ଭାଷାରେ ଲେଖୁଥିବା ଅନେକ ଲେଖକଙ୍କର ଉଦାହରଣ ଅଛି । ଯଥା ନାବୋକଭ ଓ ବକେଟ । ଏ ସନ୍ଦର୍ଭରେ ଦୁଇଜଣ ଓଡ଼ିଆ ଲେଖକଙ୍କର ଦୃଷ୍ଟାନ୍ତ ଦିଆଯାଇପାରେ । ଜୟନ୍ତ ମହାପାତ୍ରଙ୍କ ଇଂରାଜୀ କବିତା ବିଶ୍ୱବିଦିତ ଏବଂ ତାଙ୍କର ଏବେ ଲେଖୁଥିବା ଓଡ଼ିଆ କବିତାଠାରୁ କୌଣସି ମତେ ନ୍ୟୂନ ନୁହେଁ । ମନୋଜ ଦାସ (ହଁ, ମନୋଜ ଦାସ ତାଙ୍କର କିଛି ଗଳ୍ପ, ଉପନ୍ୟାସ ମୂଳ ଇଂରାଜୀରେ ଲେଖି ତାକୁ ପୁଣି ଥରେ ଓଡ଼ିଆରେ ଲେଖିଛନ୍ତି) ଅନ୍ୟ ଏକ ଉଦାହରଣ ।

■ **ଶୁଣାଯାଏ ସାହିତ୍ୟ ସାଧନା ନିମିତ୍ତ ସଂପୂର୍ଣ୍ଣ ସମୟ ବିନିଯୋଗ କରିବା ଉଦ୍ଦେଶ୍ୟରେ ଆପଣ ଆଇ.ଏ.ଏସ୍. ଚାକିରିରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଥିଲେ । ବାସ୍ତବରେ ଆପଣଙ୍କର ସେ ଲକ୍ଷ୍ୟ କ'ଣ ପୂରଣ ହୋଇଛି ?**

▣ ଲେଖିବା ପାଇଁ ଚାକିରି ଛାଡ଼ିବି, ଏଭଳି ଇଚ୍ଛା ନିଶ୍ଚୟ ଥିଲା । ଚାକିରି ଛାଡ଼ିଦେବା ବେଳେ ଭାବିଥିଲି, ମୁଁ ଆହୁରି ଅଧିକ ଲେଖାଲେଖି କରିବି । କିନ୍ତୁ ମୁଁ ଦେଖୁଛି, ଏପରି କିଛି ହେଲା ନାହିଁ । (ଜୀବନସାରା ଚାକିରିରେ ରହି ଅନେକ ଲେଖକ ଅନେକ ବେଶୀ ଲେଖିଛନ୍ତି !) ତେବେ ଚାକିରି ଛାଡ଼ିବା ପରେ ମୁଁ ଯେଉଁ ସ୍ୱାଧୀନତା ଓ ସମୟ ପାଇଲି, ତା'ର ବିକଳ୍ପ ନାହିଁ ।

■ **ଆପଣଙ୍କ ସୃଷ୍ଟିର ସାମଗ୍ରିକ ମୂଲ୍ୟାୟନ ଏ ଯାବତ୍ ହୋଇପାରି ନାହିଁ ବୋଲି ଆପଣ ଭାବୁଛନ୍ତି କି ?**

▣ ସାମଗ୍ରିକ ମୂଲ୍ୟାୟନ ବିଷୟରେ ମୁଁ ଜାଣେନା, କିନ୍ତୁ ମୁଁ ମୋର ବହିମାନଙ୍କର କ୍ୱଚିତ୍ ସମୀକ୍ଷା ହେବାର ଦେଖିଛି ।

■ କୌଣସି ଓଡ଼ିଆ / ଭାରତୀୟ ସାହିତ୍ୟିକ ନିକଟ ଭବିଷ୍ୟତରେ ସାହିତ୍ୟରେ ନୋବେଲ ପୁରସ୍କାର ପାଇବେ ବୋଲି ଆପଣ ଭାବୁଚନ୍ତି କି ?

▣ କେବଳ ଭଗବାନ (ବା ନୋବେଲ କମିଟି) କହିପାରିବେ।

■ ଆପଣଙ୍କର ଆଗାମୀ ଯୋଜନା କ'ଣ ? ଆସନ୍ତା ଜନ୍ମରେ ଆପଣ କ'ଣ ହୋଇ ଜନ୍ମ ହେବାକୁ ଚାହିଁବେ ?

▣ କୌଣସି ଯୋଜନା ନାହିଁ; ତେଣୁ ଆଉ ଗୋଟିଏ ଜନ୍ମ ନେଇ କ'ଣ କରିବି ?

(ଲେଖକଙ୍କର ବିଭିନ୍ନ ସାକ୍ଷାତ୍‌କାରରୁ ସଂଗୃହୀତ)



ଏକଦା ଓଡ଼ିଆ ଚଳଚ୍ଚିତ୍ର ଜଗତର ପ୍ରଥିତଯଶା ପ୍ରବାଦ ପୁରୁଷ ତଥା ଜଗନ୍ନାଥ ପ୍ରସାଦ ଦାସଙ୍କର ଏକାନ୍ତ ଅନ୍ତରଙ୍ଗ ବନ୍ଧୁ ଶରତ ପୂଜାରୀ ଶ୍ରୀ ଦାସଙ୍କ ସମ୍ପର୍କରେ ମତବ୍ୟକ୍ତ କରିଥିଲେ- "ସେ ମୁକ୍ତ ବିହଙ୍ଗ ପରି କଳାର ସମସ୍ତ ସ୍ତରକୁ ଉଡ଼ିଯାଇ ସୃଷ୍ଟି କରିଛନ୍ତି ଏକ ଅପରୂପ ସାମ୍ରାଜ୍ୟ। ଶୁକ୍ଳ କେଶ ବ୍ୟତୀତ ସମୟ ତାଙ୍କୁ ଜୀର୍ଣ୍ଣ କରିପାରି ନାହିଁ। ଏବେ ବି ସେ ଯୁବକ।"

ବହୁମୁଖୀ ସୃଜନଶୀଳତାର ଅପ୍ରତିଦ୍ୱନ୍ଦ୍ୱୀ ନାୟକ ଶ୍ରୀ ଦାସ ଏଇଭଳି ଚିର-ତାରୁଣ୍ୟ ନେଇ ଦୀର୍ଘଜୀବୀ ହେବା ସଂଗେ ସଂଗେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ବିଶ୍ୱ ଦରବାରରେ ଅଧିକରୁ ଅଧିକ ପରିଚିତ ଓ ପ୍ରଶଂସିତ କରାଇ ଆଗାମୀ ପିଢ଼ି ପାଇଁ ଦିଗ୍‌ଦର୍ଶକର ଭୂମିକା ନିର୍ବାହ କରିଚାଲିଥା'ନ୍ତୁ, ଏତିକି କାମନା।

ଅୟୁତ ଦଣ୍ଡବତ ସେଇ ପ୍ରଚଣ୍ଡ ପ୍ରତିଭାଧରଙ୍କୁ। ■■■

# କରୁଣା ଓ କାର୍ପଣ୍ୟ :
# ଜଗନ୍ନାଥ ପ୍ରସାଦଙ୍କ 'କଥାଯାତ୍ରା'

**ଡ. ନଟବର ଶତପଥୀ**

ଅନେକ ଦିନ ଯାଏଁ ଜାଣି ନ ଥିଲି ଜେପି ଏତେ ଗପ ଲେଖିଛନ୍ତି। ସୃଜନ ଶିଳ୍ପର ସବୁଠୁ ଅଧିକ ଓ ଦୀର୍ଘ କାଳବ୍ୟାପୀ ସାଧନାର ନିଦର୍ଶନ ଏଇ କ୍ଷେତ୍ରରେ ସେ ସର୍ବାଧିକ ଉଜ୍ଜ୍ୱଳ ସାମର୍ଥ୍ୟର ଅଧିକାରୀ। ଏଇ ଧାରଣା ଆସିଲା କେଉଁ ଏକ ଶ୍ରେଣୀରେ 'ପ୍ରିୟ ବିଦୂଷକ' ଗପ ପ୍ରଥମେ ପଢ଼ାଇବା ବେଳେ। ଜାଣେନା, ଓଡ଼ିଆ ପାଠକ ତାଙ୍କୁ କିପରି ବା କେତେ ଜାଣିଛନ୍ତି ଏଇ ବିଷୟରେ। ପ୍ରାୟ ଅନେକ ତାଙ୍କୁ କବି ଜେପି କୁହନ୍ତି। ଯାହାହେଉ, ଜେପିଙ୍କ ଗପ କହିବା ଢଙ୍ଗଟି ଯେମିତି ଭିନ୍ନ, ତାଙ୍କର ମଣିଷ / ଚରିତ୍ରକୁ ନେଇ ଜୀବନକୁ ମାପିବା ଅନୁରୂପ ସ୍ୱତନ୍ତ୍ର ମଧ୍ୟ। ସବୁ ଲେଖକଙ୍କ ପାଇଁ ଏଇ ଏକାକଥା ହେବା ସ୍ଥଳେ ଜେପିଙ୍କୁ ଧରି ଏମିତି କହିବାର ତାତ୍ପର୍ଯ୍ୟ କ'ଣ ? ତାତ୍ପର୍ଯ୍ୟ ହେଉଛି, ସେ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ଅଧିକାରୀ ଜଣେ ସ୍ରଷ୍ଟା; ତାଙ୍କ ସୃଜନକ୍ଷେତ୍ର କେତେ ବିପୁଳ ତାହା ଭିନ୍ନ, କିନ୍ତୁ ତାହା ବିଚିତ୍ର। କବିତା, ନାଟକ, ଗଳ୍ପ, ଉପନ୍ୟାସ, ଶିଶୁଙ୍କ ପାଇଁ ଲେଖା—ଏ ସମସ୍ତ ଶବ୍ଦର କଳାକ୍ଷେତ୍ର। ଏଥିରେ ମୁଣ୍ଡର କାରବାର; ମାତ୍ର ଏହା ଛଡ଼ା ଆଉ ଯେଉଁ ମହତ୍ତମ ସୃଷ୍ଟିର ଅନୁକମ୍ପା ସେ ଭୋଗନ୍ତି ବା ଭୋଗି ଆସିଛନ୍ତି, ତାହା ଅନ୍ୟ ଶବ୍ଦଶିଳ୍ପୀଙ୍କ କ୍ଷେତ୍ରରେ ଅପହଞ୍ଚ। କାନଭାସ ଉପରେ ରଙ୍ଗ ଓ ତୂଳୀ ବିନ୍ୟାସରେ ଯେଉଁ ଦିବ୍ୟାଲୋକର ଅପ୍ରାକୃତିକ ସ୍ଫୁରଣ ବା ଅବତାର ନଙ୍ଗ ଆସେ, ତାହା ମୁଣ୍ଡ, ଆଖି ଓ ହାତର ସମନ୍ୱୟ ବ୍ୟତୀତ ଜୀବନ୍ତ ବା ସୃଜନ ଲୀଳାକୁ ଧରିପାରେ ନାହିଁ। ଏହି ହେତୁ ଜଗନ୍ନାଥ ପ୍ରସାଦ ଦାସ ସ୍ୱତନ୍ତ୍ର ନିଶ୍ଚୟ, ଅଧିକନ୍ତୁ ବ୍ୟତିକ୍ରମ। ସ୍ୱାତନ୍ତ୍ର୍ୟ ଓ ବ୍ୟତିକ୍ରମତା ବ୍ୟକ୍ତିତ୍ୱର

ଦୁଇଟି ଆଧାର। ପ୍ରଥମଟି ଈଶ୍ୱରୀୟ ଓ ଦ୍ୱିତୀୟଟି ବ୍ୟକ୍ତିକ। ଈଶ୍ୱରୀୟ (ଧର୍ମଗତ ନୁହେଁ, ଦିବ୍ୟତାଲବ୍ଧ) ଆଧାରଟି ଦେଖିବାର ମୌଳିକ ଗୁଣକୁ ଉତ୍ସାହିତ କରୁ କରୁ ଦ୍ୱିତୀୟଟି ଗଢ଼ି ହେଉଥାଏ ଏବଂ ବ୍ୟକ୍ତି ନିଜର ସାମର୍ଥ୍ୟରେ ସେଇଟିକୁ ପାଳୁଥାଏ। ଅଥର୍ବ ବେଦ ଏଇଥିପାଇଁ କହିଲେ, 'ଯାଂଶ୍ଚ ପଶ୍ୟାମି ଯାଂଶ୍ଚ ନ ତେଷୁ ମା ସୁମତିଂ କୃଦ୍ଧି ତବେଦ୍ ବିଷ୍ଣୋ ବହୁଧା ବୀର୍ଯ୍ୟାଣି,' ୧୭।୧।୭। ଯାହା ଦେଖୁଛି, ଯାହା ନ ଦେଖୁଛି–ଉଭୟ ପ୍ରତି ମୋର ସୁମତି ଉତ୍ପନ୍ନ ହେଉ; ମୁଁ ଦ୍ରୋହଶୀଳ ନ ହୁଏ। ସବୁକାଳରେ ପ୍ରକୃତିର ପ୍ରକଟ ଅପ୍ରକଟ ବସ୍ତୁ ବା ଶକ୍ତି ଭିତରେ ଥାଇ ସୃଜନ-ସ୍ୱପ୍ନ-ଅଧୀର ବ୍ୟକ୍ତିଟିଏ ସ୍ତୁତି କରୁଥାଏ। ଏପରି ସ୍ତୁତି ସ୍ରଷ୍ଟା ପାଇଁ କାଳ କାଳ ସ୍ୱଗତୋକ୍ତିମୂଳକ।

ଜପ୍ରଦା(ଜଗନ୍ନାଥ ପ୍ରସାଦ ଦାସ)ଙ୍କୁ ଅଦ୍ରୋହଶୀଳ ଓ ଦେଖାଅଦେଖା ବସ୍ତୁ ମଧ୍ୟରେ ଜଣେ ସେତୁ ରୂପରେ ଦେଖିବା ଆଦୌ ବିଚିତ୍ର ନୁହେଁ। ଏପରି ବିଚିତ୍ରତାର ଅଭାବ ପୂରଣ କରି ସେ ଶିଳ୍ପର ସ୍ଥୁଳ ଓ ସୂକ୍ଷ୍ମରୂପକୁ ଉଦ୍‌ଘାଟନ କରିଛନ୍ତି। ଶିଳ୍ପୀର ବୁଦ୍ଧିମତ୍ତା ବିକଳ୍ପ ଖୋଜିବାର ଏକ କ୍ଷମତା। ତେଣୁ କବିତାରୁ ନାଟକ, ଗଳ୍ପ, ବା ଚିତ୍ରରୁ ନାଟକ ବା କବିତାକୁ ଗତି କରିବାର କ୍ଷମତା ଯେପରି ସ୍ୱତଃ ଓ ନିତ୍ୟକାଳର ପ୍ରତିଭାର କର୍ମ। ଛାତ୍ର ଅବସ୍ଥାରେ ଏ ପ୍ରତିଭା ଉନ୍ମୁଖ ଥିଲା ଆକାଶ ଆଡ଼କୁ; ବିରାଟ ବିସ୍ତୃତିର ପ୍ରଶାନ୍ତି ପ୍ରତି ନିଜକୁ ପ୍ରସ୍ତୁତ କରୁଥିଲା। ସେଇଥିପାଇଁ ସେ ବୋଧହୁଏ ଥିଲେ ଗମ୍ଭୀର। କାଚର ସ୍ୱଚ୍ଛ ପିଠିରେ ବାବଦୂକର ଟେଳା କେବଳ ଶାନ୍ତି ଭାଙ୍ଗି ନ ଥାଏ, ମଧ୍ୟ ବିଦୀର୍ଣ୍ଣ କରିଥାଏ ଅସ୍ତିତ୍ୱକୁ; ଶାନ୍ତି ଓ ସୃଜନ ଯୁଗପତ୍ ଚାଲନ୍ତିନି, ରାଧାର ଗତିରେ। ଏଇଟି ତାଙ୍କ ପ୍ରାଥମିକ ସୃଷ୍ଟିକାଳରୁ ସ୍ପଷ୍ଟ ହୋଇଥିଲା। କବିତା ରଚନାର ସମାନ୍ତରାଳ ଭାବେ ଚିତ୍ରାଙ୍କନ ସମ୍ଭବତଃ ଚାଲିଥିଲା। 'ପ୍ରଥମ ପୁରୁଷ' (୧୯୭୧) କବିତା ଗ୍ରନ୍ଥ ପ୍ରକାଶ ପାଇବା ବେଳକୁ ସେଇ ୧୯୭୧ରେ ଭୁବନେଶ୍ୱରରେ ଚିତ୍ରକଳାର ପ୍ରଦର୍ଶନୀ, ପୁଣି ଏକକ ଭାବେ। ୧୯୭୬ରେ ଦ୍ୱିତୀୟ କବିତା ଗ୍ରନ୍ଥ ପ୍ରକାଶ ପରେ ପରେ ୧୯୭୭ରେ ନାଟକ 'ସୂର୍ଯ୍ୟାସ୍ତ ପୂର୍ବରୁ'। ୧୯୮୨ରେ ୪ର୍ଥ କବିତା ସଂକଳନ 'ଅନ୍ୟ ଦେଶ ଭିନ୍ନ ସମୟ' ପ୍ରକାଶ ସହିତ ସେହି ମସିହାରେ ପ୍ରଥମ ଗଳ୍ପ ସଂକଳନ 'ଭବନାଥ ଓ ଅନ୍ୟମାନେ' ଆଲୋକ ଦେଖୁଛି। ୧୯୭୧ ରୁ ୨୦୦୦ ମଧ୍ୟରେ ୧୦ଟି କବିତା ସଂକଳନ, ୮ଟି ଗଳ୍ପ ସଂକଳନ, ୭ଟି ନାଟକ, ଗୋଟିଏ ଉପନ୍ୟାସ, ଦୁଇଟି ଶିଶୁ ସାହିତ୍ୟ ଗ୍ରନ୍ଥ ମୁକ୍ତି ଲାଭ କରିଛି। ଏହା ମଧ୍ୟରେ ପୁଣି କଳା ଗବେଷଣା କ୍ଷେତ୍ରରେ ଏକ ଅନନ୍ୟ ଗ୍ରନ୍ଥ 'ପୁରୀ ପେଣ୍ଟିଂସ' ପ୍ରସ୍ତୁତ ହୋଇଛି ୧୯୮୨ରେ। ଆହୁରି ଚମତ୍କାର, ସେ ଏହି ସମୟ ମଧ୍ୟରେ ଜଣେ ପ୍ରଶାସକ। କଳାହାଣ୍ଡିର ଦୁର୍ଭିକ୍ଷ ସମ୍ଭାଳି ଜଣେ ଯଶସ୍ୱୀ ଜିଲ୍ଲାପାଳ। ଲୋକପ୍ରିୟ ହେବାର ଏଇସବୁ ମାଧ୍ୟମ ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ଗୋଟିଏ ସ୍ୱର୍ଣ୍ଣିମ ପାର୍ଶ୍ୱ, ଯାହା ତାଙ୍କୁ ଭବିଷ୍ୟତରେ ଜଣେ ଯଶସ୍ୱୀ ସ୍ରଷ୍ଟାର

ହୃଦୟ ସହ ଦେଇଛି ଆବେଗକାତର, ବିଷାଦମୁଖର ଜୀବନକୁ ଅତିକ୍ରମ କରିବା ପାଇଁ କୌଳିନ୍ୟବୋଧ। ଅବିଚଳିତ, ଅଧିକନ୍ତୁ ଦୃଷ୍ଟିରେ ବିସ୍ତାର୍ଯ୍ୟମାଣ; ବାସ୍ତବତାର ଅନ୍ୱେଷଣରେ ବ୍ୟଗ୍ର, କିନ୍ତୁ ତୀକ୍ଷ୍ଣ ଅନୁଶୀଳନରେ କଳାର ମର୍ଯ୍ୟାଦା ରକ୍ଷାରେ ସିଦ୍ଧହସ୍ତ। 'ବାଲ୍ମୀକି ରାମାୟଣ'ର ଅରଣ୍ୟକାଣ୍ଡରେ ଜଟାୟୁ ରାବଣଙ୍କୁ କହିଥିବା ସତ୍ୟଟି ସହ ଏ ତଥ୍ୟ ନିଷ୍କର୍ଷ ତୁଳନୀୟ। ଜଟାୟୁ କହୁଛନ୍ତି-

ସ ଭାରଃ ସୌମ୍ୟ ଭର୍ତବ୍ୟୋ ଯୋ ନରଂ ନାବସାଦୟେତ୍<br>
ତଦନ୍ନମପି ଭୋକ୍ତବ୍ୟଂ ଜୀର୍ୟତେ ଯଦାନାମୟମ୍, ୫୦।୧୮।

ହେ ସୌମ୍ୟ। 'ପୁରୁଷ ସେତିକି ବୋଝ ଉଠାଇବା ଉଚିତ, ଯାହା ତାକୁ ଶିଥିଳ କରିଦେବ ନାହିଁ; ସେମିତି ମଧ୍ୟ ସେପରି ଖାଦ୍ୟ ଖାଇବ, ଯାହା ସହଜ ଜୀର୍ଣ୍ଣ ହେବ; ରୋଗ ସୃଷ୍ଟି କରିବ ନାହିଁ'। ଜପ୍ରଦା ଜଟାୟୁଙ୍କ ଭାଷାରେ ବୋଝ ଉଠାଇଛନ୍ତି, କାରଣ ସେ ପାରଙ୍ଗମ। ତାଙ୍କୁ ସୌମ୍ୟ ବୋଲି ସମ୍ବୋଧନ କରାଯାଉ। କବି କର୍ଣ୍ଣପୁରଙ୍କ ଭାଷାରେ ମଣି ସାନ୍ନିଧ୍ୟରେ ଅନ୍ଧକାର ଦୂର ହୁଏ। ଏହାର ଅର୍ଥ ନୁହେଁ, ଅନ୍ଧକାର ଦୁର୍ବଳ; ତା' ଠାରୁ ଅଧିକ ସାମର୍ଥ୍ୟ ରହିଛି ମଣିର। ମଣି ସ୍ୱତଃ ତା'ର ରୂପ ଓ ତେଜ ପ୍ରକାଶ କରେ, ଯେଉଁଥିରେ ଅନ୍ଧକାର ଦୂରେଇ ଯାଏ ଆପେ। ସୂଚିତ ଦୃଷ୍ଟାନ୍ତରୁ ଜଗନ୍ନାଥ ପ୍ରସାଦଙ୍କ ଅନୁକୂଳ ପ୍ରତିଭାର ନିର୍ମାଣ ଶକ୍ତିର ପରିଚୟ ମିଳିପାରିବ। ପ୍ରତିଭା ସାମର୍ଥ୍ୟ ତିଆରି କରେ; ସାମର୍ଥ୍ୟରୁ ବେଳେ ବେଳେ ମଧ୍ୟ ପ୍ରତିଭାର ପରିଚୟ ମିଳେ।

ଜେପି ଜଣେ ସମର୍ଥ ସ୍ରଷ୍ଟା। ତାଙ୍କର ଏହି ସାମର୍ଥ୍ୟକୁ ସଂପ୍ରତି କେବଳ ଗଳ୍ପଜଗତ 'କଥାଯାତ୍ରା'ରୁ ଲୋଡ଼ିବାକୁ ଇଚ୍ଛା। (ଏଠାରେ ପ୍ରସଙ୍ଗ କ୍ରମେ ସୂଚନାଯୋଗ୍ୟ ଯେ 'କଥା ଯାତ୍ରା'ର ପ୍ରକାଶନ ଫଳରେ ତାଙ୍କର ଖଣ୍ଡ ଖଣ୍ଡିକିଆ ବହିଗୁଡ଼ିକ ବଜାରରେ ମିଳିଲା ନାହିଁ। ଓଡ଼ିଶାରେ ପ୍ରକାଶକମାନେ ଗ୍ରନ୍ଥାବଳୀ ପ୍ରସ୍ତୁତ କରି ସାଧାରଣ ପାଠକକୁ ଛୋଟ ଛୋଟ ବହି ଉପଲବ୍ଧିରୁ ବଂଚିତ କରିଛନ୍ତି।) ଜେପିଙ୍କ କଥା ସମଗ୍ରକୁ ନେଇ 'କଥାଯାତ୍ରା' ପ୍ରକାଶ ପୂର୍ବରୁ ତାଙ୍କର ପ୍ରକାଶିତ ସଂକଳନ ଗୁଡ଼ିକ ଏହିପରି:

୧. ଭବନାଥ ଏବଂ ଅନ୍ୟମାନେ-୧୯୮୨-୧୨ଟି ଗଳ୍ପ-ପ୍ରତ୍ୟେକ ୫ ରୁ ୧୬ ପୃଷ୍ଠା ମଧ୍ୟରେ<br>
୨. ଦିନଚର୍ଯ୍ୟା-୧୯୮୩-୧୪ଟି ଗଳ୍ପ-ପ୍ରତ୍ୟେକ ୬ରୁ ୧୫ପୃଷ୍ଠା ମଧ୍ୟରେ<br>
୩. ଆମେ ଯେଉଁମାନେ-୧୯୮୬-୧୪ଟି ଗଳ୍ପ-ପ୍ରତ୍ୟେକ ୫ରୁ ୧୧ପୃଷ୍ଠା ମଧ୍ୟରେ<br>
୪. ସାକ୍ଷାତ୍କାର-୧୯୮୭-୯ଟି ଗଳ୍ପ -ପ୍ରତ୍ୟେକ ୯ ରୁ ୩୧ ପୃଷ୍ଠା ମଧ୍ୟରେ<br>
୫. ପ୍ରିୟ ବିଦୂଷକ-୧୯୯୨-୧୨ଟି ଗଳ୍ପ-ପ୍ରତ୍ୟେକ ୧୨ ରୁ ୧୯ ପୃଷ୍ଠା ମଧ୍ୟରେ<br>
୬. ଶେଷ ପର୍ଯ୍ୟନ୍ତ-୧୯୯୫-୮ଟି ଗଳ୍ପ-ପ୍ରତ୍ୟେକ ୧୩ ରୁ ୨୨ ପୃଷ୍ଠା ମଧ୍ୟରେ

୭.ଇଚ୍ଛାପତ୍ର (ଅପ୍ରକାଶିତ, କିନ୍ତୁ 'କଥାଯାତ୍ରା'ରେ ସଂକଳିତ)-୫ଟି ଗଳ୍ପ-ପ୍ରତ୍ୟେକ ୧୫ ରୁ ୨୫ପୃଷ୍ଠା ମଧ୍ୟରେ।

'କଥାଯାତ୍ରା' ପ୍ରକାଶ ପାଇବା ପରେ ତାଙ୍କର ନିମ୍ନ ସଂକଳନଟି ପ୍ରକାଶ ପାଇଛି।

ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ-୨୦୦୯- ୩ଟି ଗଳ୍ପ-ପ୍ରତ୍ୟେକ ୨୫ ରୁ ୩୨ ପୃଷ୍ଠା ମଧ୍ୟରେ।

ଏ ସବୁ ଗଳ୍ପର ସମୁଦାୟ ସଂଖ୍ୟା ୭୭; 'କଥାଯାତ୍ରା' ଅନ୍ତର୍ଗତ ଗଳ୍ପଗୁଡ଼ିକର ଛପେଇ ପୃଷ୍ଠା ସଂଖ୍ୟା ୯୦୪ 'ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ' ସଂକଳନର ଗଳ୍ପଗୁଡ଼ିକର ଛପେଇ ପୃଷ୍ଠା ସଂଖ୍ୟା ୮୨; ଅର୍ଥାତ୍ ଜପ୍ରଦାଙ୍କ ଗଳ୍ପର ସମୁଦାୟ ପୃଷ୍ଠା ସଂଖ୍ୟା ୯୮୬। 'କଥାଯାତ୍ରା'ର ସବୁଠୁ ବଡ଼ ଗଳ୍ପ ଦୁଇଟି, 'ଜନ୍ମଦାତା'ପୃ.ସଂ:୨୫ (ଇଚ୍ଛାପତ୍ର) ଓ 'ସମସ୍ୟା' ପୃ.ସଂ.୩୧ (ସାକ୍ଷାତ୍‌କାର)। ୧୨ରୁ ଅଧିକ ପୃଷ୍ଠା ବିଶିଷ୍ଟ ଗଳ୍ପର ସଂଖ୍ୟା ୩୮। ଅବଶିଷ୍ଟ ଗଳ୍ପ ୫ ରୁ ୧୨ ପୃଷ୍ଠାରେ ସୀମିତ- 'ଆମେ ଯେଉଁମାନେ', 'ଦିନଚର୍ଯ୍ୟା', 'ଭବନାଥ ଏବଂ ଅନ୍ୟମାନେ' ଏବଂ 'ସାକ୍ଷାତ୍‌କାର' ସଂକଳନର ଗଳ୍ପଗୁଡ଼ିକ। ଜଗନ୍ନାଥ ପ୍ରସାଦଙ୍କ ଲେଖକ ଜୀବନର ୧୩ ବର୍ଷ + ଇଚ୍ଛାପତ୍ର (ରଚନା / ପ୍ରକାଶ କାଳ) ଅନତିଦୀର୍ଘ ସମୟର ଗଳ୍ପକୁ ଧରି ଏକ ଶାବ୍ଦିକ (କଳା କାରିଗରି) ଖେଳ, ଯାହା ଜୀବନ ଓ କାଳର ଭିନ୍ନ ଭିନ୍ନ ସମୟ, ଅବସ୍ଥା ଓ ସ୍ଥାନରେ ଭିନ୍ନ ଭିନ୍ନ ଚରିତ୍ରମାନେ ସାହାଯ୍ୟ କରିଛନ୍ତି ଏ ଯାତ୍ରାପଥକୁ ରୂପ ଦେବା ପାଇଁ।

କେବଳ 'କଥାଯାତ୍ରା' ନୁହେଁ, ଏବେ କାଁ ଭାଁ ମିଳୁଥିବା 'ଭବନାଥ ଓ ଅନ୍ୟମାନେ' ଏବଂ 'ପ୍ରିୟ ବିଦୂଷକ' ଗଳ୍ପ ସଂକଳନରେ ଲେଖକ ବା ପ୍ରକାଶକ ଗଳ୍ପ/ଲେଖକଙ୍କ ବିଷୟରେ କୌଣସି ସୂଚନା ଦେଇ ନାହାନ୍ତି। ଓଡ଼ିଶାର ପ୍ରକାଶକମାନେ ଯେଉଁ ଦାୟିତ୍ୱ ବହନ ପୂର୍ବକ ସାଧାରଣ ଭାବେ ପ୍ରକାଶନର ନାନା ସୂଚନା ଦେବା କଥା, ତାହା ଦିଅନ୍ତି ନାହିଁ। ଜଣେ ଜଣେ ଲେଖକ ନିଜ ବିଷୟରେ ନିଜଆଡୁ ବା ପ୍ରକାଶନ ତରଫରୁ ବହୁ କଥା କହିବାରେ ବାବଦୂକ। କିନ୍ତୁ ଜେପି ଆକାଶର ତାରା ପରି ନିଷ୍ପଳ। ଏହା ତାଙ୍କ ପାଇଁ ଶୋଭା ପାଇପାରେ, କିନ୍ତୁ ଆଗ୍ରହୀ ଗବେଷକ/ପାଠକଙ୍କ ପାଇଁ ସମସ୍ୟା ସୃଷ୍ଟି କରେ। 'କଥାଯାତ୍ରା'ରେ ପ୍ରକାଶକ 'ଇଚ୍ଛାପତ୍ର'ର ରଚନା କାଳ (ସଂକଳନ ରୂପେ ପ୍ରକାଶ ହୋଇ ନ ଥିବାରୁ) ଦେବାର ଆବଶ୍ୟକତା ଅନୁଭବ ନ କରିବା ପ୍ରକାଶନର ଅପରାଧ। ଜେପିଙ୍କ ନୀରବତାରୁ କ'ଣ ଆମେ ବୁଝିବା, ସେ ଆତ୍ମବିଜ୍ଞପ୍ତି ପ୍ରତି ଉଦାସୀନ ? ନା ନିଜ ପକ୍ଷରେ ନିଜ ତୁଣ୍ଡ ମୁଣ୍ଡ ଖେଳାଇବାକୁ ସଂକୋଚନଶୀଳ ? ପ୍ରଫେସର ଗଣେଶ୍ୱର ମିଶ୍ର ସଂପାଦିତ 'ଜଗନ୍ନାଥ ପ୍ରସାଦ: ସୃଜନ ଯାତ୍ରା'

(ବିଦ୍ୟାପୁରୀ, ୨୦୧୦) ପଢ଼ିଲେ ଯେ କେହି ପାଠକ ଅନୁଭବ କରେ, ସୃଷ୍ଟି ପ୍ରବୃତ୍ତିମଗ୍ନ ଜଣେ ବ୍ୟକ୍ତି ସ୍ୱଭାବତଃ ଲାଜକୁଳା। (ବ୍ୟତିକ୍ରମ ବହୁ ଲେଖକ ଅଛନ୍ତି) ପ୍ରଫେସର ମିଶ୍ର ସଂପାଦନା କାଳରେ ଜେପିଙ୍କ ଗଳ୍ପ ସଂପର୍କିତ ସୂଚନା ସହ ଚାରିଜଣ ସମୀକ୍ଷକଙ୍କ ସଂକ୍ଷିପ୍ତ ମତାମତ ଯୋଗକରି ସଂପାଦନାର ଦାୟିତ୍ୱ ସଂକ୍ଷିପ୍ତ କରିଛନ୍ତି। ଅପରପକ୍ଷରେ ଓଡ଼ିଆ ପାଠକ / ସମୀକ୍ଷକ ରହିଛନ୍ତି ଅଜ୍ଞତାର ଗେହ୍ଲା ପୁଅ ପରି ଆଁ ପାଟିରେ ଡବଡବ ଆଖିରେ। ସାହିତ୍ୟକୁ ନେଇ ବୌଦ୍ଧିକ ବାତାବରଣ ଠିଆ ହୋଇଛି ଆମର ଭାବ ଦାରିଦ୍ର୍ୟର ସଂକେତ ଧରି ବର୍ଷ ପରେ ବର୍ଷ। ଏ ପରିପ୍ରେକ୍ଷୀରେ ଅନ୍ତତଃ ଲେଖକ, ଆତ୍ମବିଜ୍ଞାପନ ହେଉ ପଛେ, ନିଜ ଗଳ୍ପକୁ ନିଜେ କିପରି ଦେଖିଛନ୍ତି, ତାହା କହିବା ଆବଶ୍ୟକ ହେଉଛି। କିଶୋରୀଚରଣ ଦାସଙ୍କ 'ତିରିଶ ବର୍ଷର ଗଳ୍ପ ଓ ଆଳାପ' ଏ ଦୃଷ୍ଟିରୁ ଏକ ସୁନ୍ଦର ପ୍ରୟାସ (ବୁଝି ହେଉ ନ ଥିବା ଲେଖକଙ୍କୁ ବୁଝିବାର ନାନା ମସଲାର ଡବା ତାଙ୍କର ଆଳାପ)। ଏପରି ଉଦାହରଣ ଥିବା ବେଳେ କାହିଁକି ଜେପି ନିଜ ବିଷୟରେ ବଚନ–କୃପଣ ! (ତାଙ୍କୁ ବାଧ୍ୟ କରାଯାଇ ନ ପାରେ ଅବଶ୍ୟ) କିନ୍ତୁ ପ୍ରଫେସର ମିଶ୍ର, ସଂପାଦନାରେ ସଂଯମତା ନାମରେ କେତେକ ଆଲୋଚକଙ୍କର ଅପ୍ରକାଶିତ ଲେଖାରୁ ଗୋଟିଏ ଗୋଟିଏ ବାକ୍ୟ ଉଦ୍ଧାର କରି ନିଜର ଦାୟିତ୍ୱ ସଂକୀର୍ଣ୍ଣ କରିବା ବିଡ଼ମ୍ବନାର କଥା। ଆମ ସମାଲୋଚନା ପରମ୍ପରା ରୁଗ୍‌ଣ। ଏପରି ରୁଗ୍‌ଣତାକୁ ବଢ଼ାଇ ଦିଆଯାଏ, ଯେତେବେଳେ ଜଣେ ଆଲୋଚକ ପୂର୍ବବର୍ତ୍ତୀ ଆଲୋଚନା ବା କୌଣସି ସୂଚନାକୁ ଅବହେଳା କରେ। ଏହା ଅଜ୍ଞତାବଶତଃ ହୋଇପାରେ ଅବା ହୋଇପାରେ ଭ୍ରୂକ୍ଷେପହୀନତାର ଦୃଷ୍ଟାନ୍ତ। ତେବେ ପ୍ରତ୍ୟେକ ଆଲୋଚନା/ସମାଲୋଚନା ପାଇଁ ଉତ୍ତମ କଥାଟି ହେଉଛି ପୂର୍ବର ବିଚାର ପ୍ରତି ଦୃଷ୍ଟିଦେବା। ସେଥିରୁ ଭିନ୍ନ ଭାବେ କହିବାର ଆବଶ୍ୟକତା ଥିଲେ ତାହା କୁହାଯାଇପାରେ, କିନ୍ତୁ ପୂର୍ବଲେଖା ବିଷୟରେ ଅଜ୍ଞ ରହିବା ସୁସ୍ଥ ପରମ୍ପରା ନୁହେଁ। ଆମର ସମାଲୋଚନା ଏଥିପାଇଁ ଚର୍ବିତ ଚର୍ବଣ, ଅନାୟାସଲବ୍‌ଧ ବ୍ୟାଖ୍ୟାଯୁକ୍ତ ଏବଂ ନୂତନତାହୀନ ଅବୌଦ୍ଧିକ ରଚନା ସାମଗ୍ରୀ। ପୂର୍ବାପର ସଙ୍ଗତିହୀନ ସମାଲୋଚନା ହୋଇପଡ଼ିଛି ରଫ୍‌ଖାତାର ଚପଳତା ତୁଲ୍ୟ।

ଜପ୍ରଦାଙ୍କ ଗଳ୍ପର ଆକାରର ଏକ ନମୁନା ପୂର୍ବରୁ ପ୍ରଦତ୍ତ ହୋଇଛି। ସେହି ସୂଚନା କ୍ରମେ 'ଆମେ ଯେଉଁମାନେ' ସଂକଳନର ଗଳ୍ପ ସୀମିତ ପୃଷ୍ଠାଯୁକ୍ତ। ଦେଖାଯିବ, ଏହା ପରେ ପରେ ସଂକଳିତ ଗଳ୍ପ ବହି ଅନ୍ତର୍ଗତ ଗଳ୍ପର ଆକାର ବଢ଼ିଛି। ପୃଷ୍ଠା ଭିତ୍ତିକ ଆକାର ଗଳ୍ପର ମାନଦଣ୍ଡ ନୁହେଁ; କିନ୍ତୁ ଆକାର ବଢ଼ିବାର କାରଣଟି କ'ଣ ହୋଇପାରେ ? ସାଧାରଣତଃ ଗଳ୍ପର ବିଷୟ, ପ୍ଲଟ ବା ପରିବେଶ, ଚରିତ୍ରର ମନୋଗତ ସମସ୍ୟା ବା ସମସ୍ୟାର ଗୁଣାତ୍ମକ ମୂଲ୍ୟ, ବର୍ଣ୍ଣନାରେ ସଂଯମତାର ଅଭାବ, ଘଟଣାର ଦୀର୍ଘତା ବା ବିଚିତ୍ରତା, ଚରିତ୍ରର ମନୋଜଗତରେ ସୃଷ୍ଟ ବାଧା /

ପ୍ରତିବନ୍ଧକର ନାନାବିଧ ଚିତ୍ର ଏବଂ ଚରିତ୍ରର ନୂଆ ପରିବେଶ ସହ ସଂପୃକ୍ତିଜାତ ନୂଆ ଅଭିଜ୍ଞତା ପ୍ରଭୃତି ଗଳ୍ପକୁ ଦୀର୍ଘ କରିବାର ବହୁ ଦୃଷ୍ଟାନ୍ତ ମିଳେ। ଏ ସବୁ ଲକ୍ଷଣକୁ ସଂକୁଚିତ କରିପାରେ ପ୍ରତୀକାତ୍ମକ ବା ଆଭାସଧର୍ମୀ ଭାଷା। ଭାଷାର ଅଛି ଦୀର୍ଘ ବା ସଂକ୍ଷେପ କରିବାର ଗୁଣ। ଗଳ୍ପକାରଙ୍କ ବର୍ଣ୍ଣନାରୀତିକୁ ଏହା ନିୟନ୍ତିତ ବା ମୁକ୍ତ କରିପାରେ। ଏପରି କେତେକ ଗଳ୍ପ ଥାଏ, ଯେଉଁଠି ଗାଳ୍ପିକ ବର୍ଣ୍ଣନାକୁ ଭାଷା ଆୟତ୍ତରେ ରଖିବାକୁ ସମର୍ଥ ହୋଇଥା'ନ୍ତି ଅବା କେଉଁଠି ଅସମର୍ଥ।

ପୃଷ୍ଠା ଆଧାରରେ ହେଉ ବା କଳା ଦୃଷ୍ଟିରୁ, କଥାଯାତ୍ରାର 'ବାଘ' ଗଳ୍ପଟି ଅନ୍ୟତମ ସାର୍ଥକ ରଚନା। କ୍ଷୁଦ୍ର ଗଳ୍ପର ସଂକ୍ଷିପ୍ତତା ଏହାର ସାର୍ଥକତାର ଏକ ମାନ। ଅନୁରୂପ ଭାବେ ଚିଠି, ପକ୍ଷୀ, ମୁହୂର୍ତ୍ତ, ବନ୍ଧନ, ସ୍ପର୍ଶ, ବୁଢ଼ିଆଣୀ ଜାଲ ପ୍ରଭୃତି ଗୋଟିଏ ଗୋଟିଏ ସ୍ମରଣୀୟ ସୃଷ୍ଟି। ଏହିପରି ଗଳ୍ପଗୁଡ଼ିକ ମଧ୍ୟରେ 'ଆମେ ଯେଉଁମାନେ'ସଂକଳନର ଗଳ୍ପ, ସବୁ ଦୃଷ୍ଟିରୁ ସାର୍ଥକତା ଅର୍ଜିପାରେ। ସାହିତ୍ୟ, ବିଶେଷ କରି କ୍ଷୁଦ୍ରଗଳ୍ପରେ, ଜୀବନ ପିପାସାର ଉଦ୍‌ଘାଟନକୁ ଯଦି ଗୁରୁତ୍ୱପୂର୍ଣ୍ଣ ମାନଦଣ୍ଡ ମନେ କରାଯାଏ, ତେବେ 'ଆମେ ଯେଉଁମାନେ' ସେ ସ୍ତରରେ ପହଞ୍ଚିବା ଅସମ୍ଭବ ନୁହେଁ। ଅଧିକନ୍ତୁ ଶିରୋନାମାର ଚମତ୍କାରିତା ସ୍ମରଣ କରାଇ ଦିଏ-ଆମେ ଯେଉଁମାନେ ସାଧାରଣ ବା ଇତର ଶ୍ରେଣୀ- ନା ଅଛି ଉଚ୍ଚବର୍ଗର ସମ୍ଭ୍ରାନ୍ତ-ପିପାସା, ନା ଉଚ୍ଚକୁ ଉଠି ନ ପାରିବାର ଗ୍ଲାନି ବା ପତନର ଭୟ; ହେଲେ ଅଛି ଏକ ସ୍ୱାତନ୍ତ୍ର୍ୟ। ତେଲଲୁଣର ଛୋଟିଆ ବୃତ୍ତଟିରେ ଆମର ଜୀବନର ପୁନରାବୃତ୍ତି ଘଟିପାରେ, ବରମ୍ବାର ଆଘାତ ଖାଇ ଉଠିପଡ଼ି ପୁଣି ଦଉଡ଼ିପାରେ। ତାହା ହେଉ ସାଇକେଲ ବା ବଳଦଗାଡ଼ି ବା ପାସେଞ୍ଜର ଟ୍ରେନ- ଅଛି ଗତି, ହେଉ ଧୀର ବା ଦ୍ରୁତ, କିନ୍ତୁ କେବେ ବିରତ ହୁଏ ନାହିଁ। ଜଖମ ହୋଇ ସାମୟିକ ଅଚଳ ହୋଇପାରେ, କିନ୍ତୁ ନିୟତିର ଖାତାରେ ଚିରଦିନ ସମାପ୍ତିର ଭୂମିକା ଲେଖେ ନାହିଁ। ଜଗନ୍ନାଥ ପ୍ରସାଦ ଗଳ୍ପର ନାମକରଣ କରିବା ପଛରେ ସର୍ବସାଧାରଣଙ୍କ ଜୀବନ ପିପାସାର ଅବବୋଧଟିକୁ ଠିକ୍ ବୁଝିଛନ୍ତି- ଏମିତି ମନେହୁଏ। ମାଘ କବିଙ୍କୁ ସ୍ମରଣ କରିଲେ କୁହାଯିବ, 'ପରିମିତ ସ୍ୱର ଯେପରି ଗୀତର ସାର୍ଥକତା ଦର୍ଶାଇଥାଏ, ସେହିପରି ପରିମିତ ସ୍ଥାନରେ ଝଳି ଉଠୁଥିବା ଭାବ ବାଙ୍ମୟର ଅନ୍ୟତମ ବିଚିତ୍ର ବିଷୟ'। କ୍ଷୁଦ୍ରଗଳ୍ପର ସାର୍ଥକତା ଏଇଥିରୁ ନିର୍ଣ୍ଣୟ କରିବାକୁ ହୁଏ। ବିରୋଧାଭାସ ହେଉଛି, ଯେଉଁମାନେ ଯଶସ୍ନେହୀ ବା ଅର୍ଥଲିପ୍ସୁ ବା ପୁରସ୍କାରଚେତା, ସେମାନେ କ୍ଷୁଦ୍ରଗଳ୍ପର ମନ୍ଦିର ଭିତରକୁ ଅମୁହାଁ ପଶିବାକୁ ଆଗ୍ରହୀ। ମନ୍ଦିର ବେଢ଼ାରେ ଜୀବନର ସବୁ ସାର୍ଥକତା ଅର୍ଜନ କରିବାରେ ପ୍ରୟାସୀ। ଏପରି ଗାଳ୍ପିକଙ୍କ ନେତ୍ରର ଶେଷ ରଶ୍ମି ପାଷାଣର ସ୍ଥୂଳତା କେବଳ ଭେଦ କରିବା ସହଜ। ଜୀବନ / ସଂସାରର ଘଟଣା ଓ ଅନୁଭୂତି ସ୍ରଷ୍ଟା ପାଇଁ ପାଷାଣ ଖଣ୍ଡ ବା ମେଞ୍ଚାଏ ମାଟି ହୋଇପାରେ, ସେ ତାକୁ ସୁନ୍ଦର କରନ୍ତି ପ୍ରତିମାଟିଏରେ।

ଅନୁଭୂତିକୁ ନେଇ ବ୍ୟାପକ ଅନୁଭବର ଜଗତକୁ ପ୍ରବେଶ, ପୁଣି ସେଇ ଅନୁଭବକୁ ଗଣ୍ଡିକରି ତା'ର ପୁନର୍ବାର ସଂପ୍ରେକ୍ଷଣ-ଏଇ ତ କ୍ଷୁଦ୍ରଗଳ୍ପର ରୀତି। ଆମେ ଯେଉଁମାନେ ସାଧାରଣ ନାମରୂପଧାରୀ ଜଣେ ଜଣେ ବ୍ୟକ୍ତିସତ୍ତା, କାଳର ଅନୁଶାସନ ଭୋଗିବା ଜଣ ଜଣ କରି; କିନ୍ତୁ ଜିଇଁବ, ଜିଇଁ ରହିବ ମଣିଷ। ତା'ର ଜୀବନଗାଥା ମଣିଷ ଜାତିର ହୃଦୟରେ ଲାଖି ରହିଥିବ, ସ୍ପନ୍ଦିତ କରୁଥିବ; ତାହା ଆଲୁଅଟିଏ ପରି ନିରନ୍ତର କାହାକୁ ନା କାହାକୁ ଚେତାଉଥିବ। ଏପରି ବିଶ୍ୱାସକୁ ଯିଏ ଶବ୍ଦ ରୂପ ଦିଅନ୍ତି, ସେହି ଶବ୍ଦଶିଳ୍ପୀଙ୍କ ଗହଣରେ କଥିତ କୃତିର ସ୍ଥାନ ନିର୍ଦ୍ଦିଷ୍ଟ।

ଉମାପତି ଝିଅକୁ ଦିଲ୍ଲୀ ପଠାଇଛନ୍ତି ପଢ଼ିବା ପାଇଁ। ଝିଅଠୁ ଚିଠି ଆଶା କରି ନ ପାଇବାର ବିଡ଼ମ୍ବନା (ଯଦିଓ ସ୍ତ୍ରୀ ଜାଣନ୍ତି-ଝିଅ ବୁଝିବା ସୁଝିବା ପିଲା, ହେଳା କରି ନ ଥିବ, ଚିଠି ଆସୁଥିବ) ତାଙ୍କୁ ଅଧୀର ଅଥୟ କରୁଚି। ଅଫିସ କାମରେ ଚିତ୍ତ ବିବ୍ରତ ହେଉଚି। ଅସନ୍ତୋଷର କୁହେଳିରେ ଫାଇଲ ପତ୍ର ଆଚ୍ଛାଦିତ ହେଉଛି। ସକାଳର ଚିଠି ଅପରାହ୍ଣରେ ଦେଇଛି ପିଅନ। ଝିଅ ଭଲରେ ଅଛି। ସେଉଠୁ କଟି ଯାଉଛି ବିଷାଦ। ଝରକା ବାହାରେ କଳା ବାଦଲର ପେଟ ଦିଶୁଛି ନିଷ୍ଫଳ। ବର୍ଷା ହଟି ଯାଇଛି। ମାତ୍ର ଝରକା ପାଖରେ ବସିଥିବା ନୂଆ ଚାକିରି ପାଇଁ ଆଶାୟୀ ଯୁବକର ଚିଠି ଆସୁନି। ସେ କହୁଛି, "ଦେଖୁ ନାହାନ୍ତି, କେମିତି ଆଉ ପାଖରୁ ମେଘ ଘୋଟି ଆସୁଛି"। ମନେପଡୁଛି କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ କବିତାର ପଦେ- "ଜଗତେ ହଜେନା କିଛି ହଜେ ଜୀବନେ, ବାହାରେ ବେଦନା ନାହିଁ ବେଦନା ମନେ।" ପ୍ରକୃତି ଅନ୍ତର୍ମନର ପ୍ରତିଫଳନ ନା ପ୍ରକୃତିକୁ ଦେଖି ଅନ୍ତର୍ମନକୁ ବୁଝିହୁଏ ? ଜଣକ ପାଇଁ ଚିଠି ବିଷାଦ ହଟେଇଛି, ଆଉ ଜଣେ ଚିଠି ନ ପାଇ ଗ୍ଲାନିର କୁହେଳିକୁ ପଶି ଯାଉଛି। ବେଦନା ମନର ନା ଜଗତର ?

'ବାଘ' ଏକ ପ୍ରତୀକଧର୍ମୀ ଗଳ୍ପ। ସତ୍ୟକାମ ଏକ ଭିନ୍ନ ସହରକୁ ଯାଇଛି ଗୋଟିଏ କାମରେ। ଉଡ଼ାଣ ଅବଧି ଶେଷ ପରେ ସହର ଭିତରକୁ ପଶିବା ପୂର୍ବରୁ ଭୀଷଣ ବର୍ଷା। ବର୍ଷାନ୍ତେ ଟ୍ୟାକ୍ସି ଧରି ନିର୍ଦ୍ଦିଷ୍ଟ ହୋଟେଲ ରାସ୍ତାରେ ଗାଡ଼ି ଚାଲିଛି, ରାତି ଗଭୀର ହେଉଛି। ବର୍ଷାମାଡ଼ରେ ସବୁଠି ସ୍ତବ୍ଧତା, ଶୀତଳତା; ରାସ୍ତା ପ୍ରାୟ ଜନଶୂନ୍ୟ। ଡ୍ରାଇଭର୍ ଟ୍ୟାକ୍ସି ବ୍ରେକ୍ ଦେଲା ଟ୍ରାଫିକର ନାଲିବତି ଦେଖି। ସେହି ସମୟରେ ଜେବ୍ରା ଲାଇନ ଦେଇ ରାସ୍ତା ପାରି ହେଇଗଲା ବାଘଟିଏ। ଯାତ୍ରାର କ୍ଲାନ୍ତି, ବର୍ଷାର ଅଦଉତି, କାମର ଶ୍ରାନ୍ତି ସତ୍ୟକାମକୁ ବ୍ୟସ୍ତତାମୁକ୍ତ ଶଯ୍ୟାର ଶୀତଳ ନିଦ୍ରା ଜଗତକୁ ଟାଣି ନେଉଥିଲା ବେଳେ ମନେପଡ଼ିଲା ସେ ରାସ୍ତାରେ ଦେଖିଥିବା ବାଘ କଥା। ପରଦିନ ନିଜ ସହରକୁ ଫେରିଆସି ସେ ବନ୍ଧୁମାନଙ୍କୁ କହିଲା ଘଟଣା ବିଷୟରେ। କେହି ଉପହାସ କଲେ, କେହି ନାନା ଉପଦେଶ ଦେଲେ, କେହି ଅଶୁଭ ଲକ୍ଷଣ ଦର୍ଶନର ପ୍ରତିକାର ପାଞ୍ଚିଲେ। କିନ୍ତୁ ତା' ମନରୁ ବାଘ ଦେଖିବା କଥା ଦୂର ହେଲା ନାହିଁ। ପୁଣି ଥରେ ସେ ଆସିଲା ପୂର୍ବ

ସହରକୁ। ଏଥର ସହର ମୁଖର। ସହର ଲୋକାରଣ୍ୟ। ସେ କିନ୍ତୁ ଠିକ୍ ମନେପକାଇ ପାରିଲା ନାହିଁ, କେଉଁଠି ଦେଖିଥିଲା ବାଘ। ସହରରେ ବାଘ ଦେଖିବା କଥା ସାହିତ୍ୟ ରୀତିରେ ଚମକ ଆଣିପାରେ, କିନ୍ତୁ ସତ୍ୟକାମ ଦେଖିଛି ନିର୍ଜନରେ, ଗଭୀର ରାତିରେ। ଚିଡ଼ିଆଖାନା ବା ନିକଟସ୍ଥ କୌଣସି ବଣରୁ ଆକସ୍ମିକ ଖସି ଆସିବା କଥା ସମ୍ବାଦପତ୍ରରେ ପ୍ରକାଶ ପାଇନାହିଁ; ଏହା ହିଁ ସତ୍ୟକାମକୁ ଚିନ୍ତାରେ ପକାଇଛି। ଅଥଚ ସେ ଦେଖିଛି। ନିଜ ରହଣି ଘରର ଲୋଭନୀୟ ପରିବେଶ, ପତ୍ର ଗହଳିର ସବୁଜିମା, ନିର୍ଭୟ ପକ୍ଷୀ ଗୋଟିଏ ଡାଳରୁ ଆଉ ଏକ ସବୁଜିମା ଆଡ଼କୁ ଉଡ଼ିଯିବାକୁ ଉଦ୍ୟତ-ଏହା ଗଳ୍ପ ମନଭୁଲା ଏକ ବର୍ଣ୍ଣନା; କିନ୍ତୁ ସତ୍ୟକାମ ଭୁଲି ପାରୁନାହିଁ ବାଘର ଉପସ୍ଥିତିକୁ। ପକ୍ଷାନ୍ତରରେ ବାଘକୁ ନେଇ ଅବିଶ୍ରାନ୍ତ ମନୋଦ୍‌ବେଗ, କଂକ୍ରିଟ ଜଙ୍ଗଲ ବନାମ ପକ୍ଷୀ ଆଶ୍ରିତ ସବୁଜିମା। ସୀମାଶ୍ରିତ ନଗର ଓ ଅସୀମ ସବୁଜିମା, ସେଇ କଂକ୍ରିଟ ସହରର ଦୁଇଟି ସ୍ୱତନ୍ତ୍ର ଅବସ୍ଥିତି। ମନାଶ୍ରିତ ନିର୍ଜନତା ପ୍ରତି ଭୟ ଓ ବିଷାଦ (କଂକ୍ରିଟ ଜଙ୍ଗଲ ପୁଣି ଏତେ ନିର୍ଜନ !) ଗୋଟିଏ ଗୋଟିଏ ମାନସିକ ସ୍ଥିତି। ତେବେ ବାଘଟିର କଥା କ'ଣ ? ଶାରୀରିକ ଭାବେ ଉପସ୍ଥିତ ସାକ୍ଷାତ ଏକ ମୃତ୍ୟୁତୁଲ୍ୟ ଜୀବନ୍ତ ସତ୍ତା ନା ସତ୍ୟକାମର ମତିଭ୍ରମ ? ବର୍ଣ୍ଣନାର ଯାଦୁ ? ଦ୍ୱିତୀୟଟି ସତ୍ୟ, ମନୋରମ, ଅଧିକନ୍ତୁ ସେ ପରିବେଶର ଏକ ବାସ୍ତବଧର୍ମୀ ଚିତ୍ରଣ। ସତ୍ୟକାମର କ୍ଳାନ୍ତ, ଉଦ୍‌ବେଗପୂର୍ଣ୍ଣ ଯାତ୍ରା ପରେ ବର୍ଷା ହେତୁ ତା'ର ଅପେକ୍ଷା। ଶୀଘ୍ର ବିଶ୍ରାମ ଲୋଡ଼ା। ଜନଶୂନ୍ୟ ରାସ୍ତାଘାଟ। ଅଥଚ ଟ୍ରାଫିକ୍‌ର ଲାଲବତି; ଅସହାୟତାର, କ୍ଳାନ୍ତିର ଜମାଟ। ଧାଡ଼ିଏ କହିଛନ୍ତି ଗାଳ୍ପିକ, 'କେତେବେଳ ବତି ପୁଣି ସବୁଜ ହେବ ସତ୍ୟକାମ ଅନାଇଛି' (ପୃ.୨୨୧)। ଏଇ ସମୟରେ ବାଘ ରାସ୍ତା ପାରି ହେଉଛି। ଏଇ ଅପେକ୍ଷା ଯେତିକି ଅସ୍ୱସ୍ତିକର, ବେଦନାମୟ ଓ ଆୟାସଲବ୍‌ଧ ଧୈର୍ଯ୍ୟର ସମ୍ଭାବନା ପ୍ରସ୍ତୁତ କରେ, ତାହା ଆଧୁନିକ କୃତ୍ରିମ ଜୀବନର ଉପସର୍ଗ। ଅହେତୁକ ବ୍ୟସ୍ତତା, ଚଞ୍ଚଳତା, କାମର ଛଳନା, ଅପେକ୍ଷା କାତରତା, ସମୟ ଅସହିଷ୍ଣୁତା ସବୁ ମିଶି ମଣିଷକୁ ପ୍ରକୃତିର ସ୍ୱତଃ ପ୍ରବୃତ୍ତିରୁ କ୍ଷାନ୍ତ କରିଛି। ଶାନ୍ତି ହୋଇଛି କ୍ରୀତଦାସ ପରି ସର୍ତ୍ତଯୁକ୍ତ। ସତ୍ୟକାମ ଏସବୁର ଯେମିତି ଗୋଟିଏ ପ୍ରତିନିଧି। ମାତ୍ର ଗୋଟିଏ ବାକ୍ୟରେ ଘଟଣା ଓ ପରିବେଶର ଇଙ୍ଗିତ ଦେଇ ଗାଳ୍ପିକ ଆଣିଛନ୍ତି ବାଘକୁ। ବାଘ ଦିନେ ଥିଲା ମୃତ୍ୟୁର ବାହକ, ଏବେ ବାଘ ରୂପରେ ଆସୁଛି ଯାବତୀୟ ଅବାଞ୍ଛିତ ଉପସର୍ଗ। ନିର୍ଜନତାର ବାଘ ଡରାଉଛି ନାଲିବତିର ଆଖିରେ।

'ପକ୍ଷୀ' ଆଉ ଏକ ପ୍ରତୀକ ଗଳ୍ପ। ସ୍କୁଲ୍‌କୁ ଯାଉଥିବା ବାବୁଲିର ପକ୍ଷୀ ଧରିବାର ଇଚ୍ଛାରୁ ନାନା ଫନ୍ଦି ଫିକର ସତ୍ତ୍ୱେ ପକ୍ଷୀ ଧରି ନ ପାରିବାର ଖେଦ ଗଳ୍ପର ବର୍ଣ୍ଣିତ ବିଷୟ। ସାଙ୍ଗପିଲାଙ୍କ ଠାରୁ ଦୂରେଇ ଯାଇ ବହି ବସ୍ତାନି ଫୋପାଡ଼ି ସେ ଖଣ୍ଡିଉଡ଼ା ଦେଉଥିବା ପକ୍ଷୀକୁ ଧରିବ। ଗଛଡାଳ, ଗଛ ତଳ,

ଘଞ୍ଚ ବୁଦା ସବୁ ଖୋଜି ଖୋଜି ନିରାଶ। ଘରେ ତିଆରି କରି ରଖିଛି ପକ୍ଷୀ ପାଇଁ କାଠର ବାକ୍ସ। ଆଶା କରିଥିଲା, ପକ୍ଷୀ ଧରା ହେଲେ ବାକ୍ସକୁ ପକ୍ଷୀ ବାସ ଉପଯୋଗୀ କରିବ। ତା'ର ଅସାମର୍ଥ୍ୟ ତାକୁ ନିରାଶ କରୁଛି ଓ ସେ କ୍ଳାନ୍ତିରେ ଗଛକୁ ଆଉଜି ସ୍ୱପ୍ନ ଦେଖୁଛି- ସେ ଶୋଇଛି ଘର ବାରଣ୍ଡାରେ। ବାପାଙ୍କ କର୍କଶ ଡାକରେ ଭାଙ୍ଗୁଛି ନିଦ। ସେ ଡାକ ଶବ୍ଦକୁ ଅନୁସରଣ କରି ତୋଟା ଭିତରୁ ବାହାରି ଆସିଲା। ଖରା ନରମ ହେଇ ଛାଇର ଲମ୍ବ ବଢ଼ି ଯାଇଥିଲା। ସେ ଫେରୁଥିଲା ଘରକୁ। ଦେଖିଲା, ତା' ଲକ୍ଷ୍ୟର ପକ୍ଷୀଟି ଲାଞ୍ଜ ହଲାଇ ଉଡ଼ିଗଲା ଡାଳକୁ। ସେଇଠି ଥିଲା ଲୁଚିକରି; କେତେ ପ୍ରପଞ୍ଚ ସେ! ସଂପୂର୍ଣ୍ଣ ଏକ ନିର୍ଜନ ପରିବେଶରେ କିଶୋରର ପକ୍ଷୀଧରା ଉଦ୍ୟମର ରୋମାଞ୍ଚକର ଅନୁଭୂତି ତା' ପକ୍ଷରେ ଆଣିଦେଲା ନିରାଶ। ଯେମିତିକି ଏକ ପରିଚିତ ଅଥଚ ଅପହଞ୍ଚ ବାସ୍ତବ ପରିବେଶକୁ ଅତିକ୍ରମ କରି ଏକ ସ୍ୱପ୍ନବିହ୍ୱଳ ଜଗତ ଉଭା ଥିଲା ବାବୁଲି ପାଇଁ। କିଶୋର ପିଲାଙ୍କ ଭିତରେ ଜାଗିଉଠେ କୌତୂହଳ; ସେଇଠି ସବୁ ସ୍ୱପ୍ନ ମାୟା ପରି। ସେଇ ମାୟାକୁ କାଟିକରି ବହୁ ସଂଚିତ ସ୍ୱପ୍ନକୁ ହାତରେ ପାଇବା ପାଇଁ ଆପ୍ରାଣ ଉଦ୍ୟମ। ସେ ଉଦ୍ୟମରେ ସେ ସ୍ୱାଧୀନ, ଠିକ୍ ପକ୍ଷୀ ପରି। ସ୍ୱପ୍ନ, ରୋମାଞ୍ଚ, ମାୟାର ଜାଲ, କୌତୂହଳ ବନାମ କିଶୋରର ମନୋରଥ ଓ ଉଦ୍ୟମ-ହେଉ ପଛେ ବିଫଳକାମ- କେଉଁଟି ମିଛ, କେଉଁଟି ସତ୍ୟ? ପକ୍ଷୀ ତା'ର ଡେଣାରେ ସ୍ୱାଧୀନତାର ସ୍ୱାଦ ଚଖାଏ, ମାତ୍ର କିଶୋର? ଜୀବନରୂପୀ ଉଦ୍ୟାନରେ ସେ କୋଇଲି। (ବାଳକକୁ ଆକବର ଏହି ରୂପରେ ଚିହ୍ନିଥିଲେ) କବି ଲଙ୍ଗ୍‌ଫେଲୋ କହିଥିଲେ, Better than all ballas, living poems and all the rest are dead. କିନ୍ତୁ ବାବୁଲି ପାଇଁ ନିଷ୍ଠୁର ତାଗିଦର ସ୍ୱର ବହଳ ଜମାଟବନ୍ଧା ଏକ ବେଡ଼ି ନୁହେଁ କି?

'ଭାଗ୍ୟ' ଗଳ୍ପ ଆଶା ଓ ଆଶାଭଙ୍ଗର ଦୀର୍ଘାୟତନ ନିରାଶ ମଧ୍ୟରେ ଏକ ଆଶ୍ୱାସନାର ବାଣୀ ଶୁଣାଏ। ସୁଖଦେବ ନିଜର ବିବେକ, ବିଚାର ଓ ବୁଦ୍ଧି ବିନିଯୋଗରେ କାମ କରେ। ଭାଗ୍ୟଠାରୁ ଶ୍ରେୟ ମନେକରେ ପୁରୁଷାକାରକୁ। "ଜୀବନ୍ମୃତଃ କସ୍ତୁଃ ନିରୁଦ୍ୟମୋ ଯେଃ"। ଶଙ୍କରାଚାର୍ଯ୍ୟ କହିଲେ, ପୁରୁଷାର୍ଥହୀନ ଜୀବନ୍ମୃତ୍ୟୁ ଅବସ୍ଥା ଭୋଗେ। ସୁଖଦେବର ପୁରୁଷାର୍ଥ ପ୍ରୀତି ସଫଳ ହେଲା ନାହିଁ। ବାର ବାର ତାକୁ ପ୍ରମୋଶନରୁ ବାଦ ଦିଆଗଲା। ତା' ଠାରୁ ସବୁଥିରେ ନ୍ୟୂନ ବ୍ୟକ୍ତି ତାକୁ ପଛରେ ପକାଇ ପଦୋନ୍ନତି ପାଇଲେ। ବହୁ ପୂଜାର୍ଚ୍ଚନା ଦେବାଭିଷେକ ପରେ ସେ ବିଫଳ ହୋଇ ଜଣେ ବାବାଙ୍କ ଶରଣ ନେଲା। ସେଉଠୁ ପ୍ରେରଣା ମିଳିଲା- "ମନ ଦେଇ କାମ କର, ହାକିମକୁ ଖୁସି କର।" ଶେଷକଥାଟି ହିଁ ସତ୍ୟ। ଉପରିସ୍ଥଙ୍କ ଖୁସି ସହ ଅଧସ୍ତନର ଭାଗ୍ୟ ଯୋଡ଼ା; ବିଦ୍ୟା ବା ପୌରୁଷ ଅର୍ଥହୀନ। ଯୁଗ ଯୁଗ ଧରି ଏହି ମୂଲ୍ୟାଶ୍ରିତ ବିଶ୍ୱାସ କର୍ମକୁ ଅପଖ୍ୟାତିର ମୁକୁଟ ପିନ୍ଧାଇ 'ଖୁସି କର-ସୁଖୀ ହୁଅ' ପରି ରଟୁଆଳ ବ୍ରତ ଧରି ଆସିଛନ୍ତି ତଥାକଥିତ

ଧର୍ମଗୁରୁମାନେ । ତେବେ ମଣିଷର ଆଚରଣ କେଉଁ ପକ୍ଷକୁ ଯିବ ? ଜଗନ୍ନାଥଙ୍କ ଶ୍ଳେଷ ଶୁଣନ୍ତୁ ବେଦବ୍ୟାସଙ୍କ ଭାଷାରେ—

କୁର୍ବତୋ ନାର୍ଥସିଦ୍ଧିର୍ମେ ଭବତୀତି ହେ ଭାରତ,
ନିର୍ବେଦୋ ନାତ୍ର କର୍ତ୍ତବ୍ୟୋ ଦ୍ୱାବନ୍ୟୋ ଦ୍ୱୟତ କାରଣମ୍

"ପୁରୁଷାର୍ଥ ପାଳନ କରି ସୁଦ୍ଧା ଯଦି ସିଦ୍ଧି ନ ମିଳେ, କ୍ଷୁଣ୍ଣ ହୁଅ ନାହିଁ; କାରଣ ଫଳସିଦ୍ଧିରେ ପୁରୁଷାର୍ଥ ଅତିରିକ୍ତ ପ୍ରାରବ୍ଧ ଓ ଈଶ୍ୱରକୃପା ପରି ଦୁଇଟି କାରଣ ରହିଛି ।" ପ୍ରାରବ୍ଧ ଓ ଈଶ୍ୱର କୃପାରେ ଜପ୍ରଦା ବିଶ୍ୱାସ କରନ୍ତି କି ନାହିଁ ତାହା ଭିନ୍ନ କଥା, କିନ୍ତୁ ଏହା ଯେ ମାନସିକ ଶାନ୍ତିର କାରଣ ହୁଏ, ତାହା ବୁଝାଇବା ଅନାବଶ୍ୟକ । ଉଦ୍ୟମୀ ପକ୍ଷରେ ସିଦ୍ଧି ଅନିବାର୍ଯ୍ୟ; ସେ ଯୋଗ୍ୟ ହେଉ ବା ନ ହେଉ, ଅବିରତ ଲକ୍ଷ୍ୟ ସ୍ଥିର ହେବା ହିଁ ମୁଖ୍ୟ ।

'ସାହିତ୍ୟକାର' ଗଳ୍ପରେ ଲେଖକର ପୁରସ୍କାର ଲାଭ ପାଇଁ ଉଦ୍ୟମର ଚମତ୍କାର ବିଶ୍ଳେଷଣ ହୁଏତ ସାଂପ୍ରତିକ ସାହିତ୍ୟ ଜଗତର ଚିତ୍ରଟିଏ ଉଦ୍‌ଘାଟନ କରେ, କିନ୍ତୁ ଏହାଠାରୁ ବଳି କ୍ଷୋଭର ବିଷୟ ଯେ ଜଣେ ଲୋକପ୍ରିୟ ଉପନ୍ୟାସ ରଚନା କରି ଅର୍ଥ ଉପାର୍ଜନ କରୁଥିବା ଲେଖକ ପ୍ରତି ଅବଜ୍ଞା ଓ ଈର୍ଷା ଲେଖକୀୟ ବ୍ୟକ୍ତିତ୍ୱକୁ ଉପହାସର ସାମଗ୍ରୀ କରିଦିଏ । ସାହିତ୍ୟ ମଣିଷପଣର ଚିତ୍ରଶାଳା । ଜୀବନର ଉତ୍କର୍ଷ ପ୍ରଦର୍ଶନ କରି ସାହିତ୍ୟିକ ନୂଆ ଆଶା, ବଂଚିବାର ମୋହ, ପାରସ୍ପରିକ ବନ୍ଧନର ସେତୁ ତିଆରି କରେ । ସହାନୁଭୂତିର ବାଣୀରେ ଯନ୍ତ୍ରଣା ଯଜ୍ଞକୁ କରେ ଶାନ୍ତ, ସହାୟତାର ହାତ ବଢ଼ାଇ ଅଶାନ୍ତିର ନରକରୁ ସେ ଉଦ୍ଧାରି ନେବାର ବାର୍ତ୍ତା ପହଞ୍ଚାଇ ଦିଏ । ମାତ୍ର ବିଷ୍ଣୁ ଶର୍ମା ତାଙ୍କର ଅନୁଗାମୀ, ବୟସରେ ସାନ, ଜଣେ ଲୋକପ୍ରିୟ ଲେଖକ ରସାନନ୍ଦଙ୍କୁ କାହିଁକି ଉପେକ୍ଷା କଲେ ? ରସାନନ୍ଦ ଶସ୍ତା ଅଶ୍ଳୀଳ କାହାଣୀ ଲେଖନ୍ତି ବୋଲି ପୁଲିସ ଏକ ଅଭିଯୋଗ ଆଣିଛି । ରସାନନ୍ଦ ଜାଣନ୍ତି, ଏହା ଉଦ୍ଦେଶ୍ୟମୂଳକ ଓ ଏହାଦ୍ୱାରା ସେ ପ୍ରତାରିତ ହେବେ । ଲେଖକର ସ୍ୱାଧୀନତା ହେବ ବ୍ୟାହତ । କେତେକ ଈର୍ଷାପରାୟଣ ବ୍ୟକ୍ତି ତାଙ୍କ ରଚନାରେ ଅଶ୍ଳୀଳତା ଆରୋପ କରିବା କେବଳ ଷଡ଼ଯନ୍ତ୍ର ମାତ୍ର । ଶ୍ଳୀଳ ଓ ଅଶ୍ଳୀଳ ଏକ ଆପେକ୍ଷିକ ବିଚାର ବୋଲି ବଡ଼ ବଡ଼ ଲେଖକ ଯୁକ୍ତି ଦର୍ଶାଇ ଲେଖକର ସ୍ୱାଧୀନତାକୁ ଗୁରୁତ୍ୱ ଦିଅନ୍ତି । ରସାନନ୍ଦ ଏଥିପାଇଁ ସେହିପରି ଜଣେ ଲେଖକ ବିଷ୍ଣୁ ଶର୍ମାଙ୍କର ସାହାଯ୍ୟ ଲୋଡ଼ିଲେ । ମାତ୍ର ନିରାଶ ହେଲେ । ବିଷ୍ଣୁ ଶର୍ମା କହିଲେ କାଦୁଅରେ ପଶିବେ ନାହିଁ । କାଦୁଅ ପ୍ରକୃତରେ ଥିଲା ରସାନନ୍ଦଙ୍କ ପ୍ରତି ତାଙ୍କର ଈର୍ଷା । ରସାନନ୍ଦ କାଲିକା ଲେଖକ; ଅର୍ଥ ଓ କିଛି ସମ୍ମାନ ତାକୁ ମିଳୁଛି । ବଡ଼ ଲେଖକ ପାଇଁ ତାହା ସ୍ୱପ୍ନ । ଏହା ହିଁ ଈର୍ଷାର କାରଣ । ବହୁଦିନରୁ କାଦୁଅରେ ପଶିଯାଇ ବାହାରି ପାରୁ ନ ଥିଲେ । ଏବେ ତାହା ତାଙ୍କୁ ଶୀତଳ ଚନ୍ଦନ ପରି ଲାଗିଥିବ । ସେ ଭୁଲି ଯାଇଥିବେ, ବାଙ୍‌ମୟ ଜଗତରେ

'ପଞ୍ଚତନ୍ତ୍ର'ର ରଚୟିତା ବିଷ୍ଣୁ ଶର୍ମା ଏକ ନୈର୍ବ୍ୟକ୍ତିକ ବ୍ୟକ୍ତିସତ୍ତା । କାଳ ଉର୍ଦ୍ଧ୍ୱରେ କଳା ଓ ଜୀବନର ସେ ପ୍ରତିନିଧି । ତାଙ୍କର ଶିକ୍ଷାରେ ମନ୍ଦ ପ୍ରକୃତିସଂପନ୍ନ ରାଜା ପୁଅ ଶିଷ୍ଟ ହୋଇପାରନ୍ତି । ଏ କାଳର ବିଷ୍ଣୁ ଶର୍ମା ସମାଜ ଶିକ୍ଷାର ଅଗ୍ରଦୂତ ହୋଇପାରିବେ ନାହିଁ କାହିଁକି ? ଜଗନ୍ନାଥ ପ୍ରସାଦଙ୍କ ଗଳ୍ପର କେନ୍ଦ୍ରବିନ୍ଦୁ ଏଇ ପ୍ରଶ୍ନକୁ ଧରି । ସତୀର୍ଥ ଜଣେ ସ୍ରଷ୍ଟା ବିପତ୍ତିରେ ପଡ଼ି ତାଙ୍କ ସାହାଯ୍ୟପ୍ରାର୍ଥୀ । ଅଥଚ ସେ ପ୍ରକାଶକ ସହ ବସି ପାନମତ୍ତ ଚିତ୍ତରେ ଯୋଜନା କରୁଛନ୍ତି ପୁରସ୍କାର ଲାଭର ଉପାୟ । ବ୍ୟଙ୍ଗରେ ଅଧୀର ଜଗନ୍ନାଥ ପ୍ରସାଦଙ୍କ କରୁଣାର୍ଦ୍ର ମନୋଭୂମି । ସେ ବୁଝନ୍ତି, ସଂପ୍ରତି ଲେଖକ କିପରି ବାୟା ବିକଳ ହୁଏ ପୁରସ୍କାର ପାଇଁ । ଆତ୍ମସଂଭ୍ରମତା ଓ ଆତ୍ମନିର୍ଭରତା ଦୁଇଟି ସ୍ୱତନ୍ତ୍ର କଥା । ରସାନନ୍ଦ ଆତ୍ମସଂଭ୍ରମତା ହୁଏତ ପାଇଛନ୍ତି, କିନ୍ତୁ ଆତ୍ମନିର୍ଭରତା ଦୃଷ୍ଟିରୁ ସେ ସଂପୂର୍ଣ୍ଣ ନୁହନ୍ତି । ଏହି ଅଭାବ ଯୋଗୁଁ ତାଙ୍କୁ ବିଷ୍ଣୁ ଶର୍ମାଙ୍କ ଶରଣାପନ୍ନ ହେବାକୁ ପଡ଼ିଛି । କିନ୍ତୁ କ'ଣ ଦେଖୁଛନ୍ତି ? ବଡ଼ ଲେଖକ ହେଲେ ମଧ୍ୟ ଏ ଦୁଇଟି ଗୁଣ ତାଙ୍କ ପାଖରେ ବିକଳ ରୂପ ନେଇଛି ।

'ଫଟୋଗ୍ରାଫ' ହୃଦୟ ପରିବର୍ତ୍ତନର ଗପଟିଏ । ଗୋଟିଏ ସହରରେ ରହୁଥିବା ପରିଣତ ବୟସର ଦୁଇଜଣ ବନ୍ଧୁ ପଢ଼ା ଦିନର ସାଥିମାନଙ୍କୁ ମନେପକାଇ ସେମାନଙ୍କୁ ଏକାଠି କରିବାକୁ ଚାହିଁଲେ । କ୍ରମେ ଅତୀତର ସହପାଠୀ ମନେପଡ଼ିଲେ । ସେମାନଙ୍କ ସହ ହେଲା ଯୋଗାଯୋଗ । ଏହା ଥିଲା ଯେମିତି ଆବିଷ୍କାରର ଏକ ରୋମାଞ୍ଚ,ସ୍ମୃତି ଶିହରଣଜନିତ ଆନନ୍ଦ । ଅଖଣ୍ଡ ତା'ର ଅନୁଭୂତି, ବିଶାଳ ତା'ର ପୃଷ୍ଠଭୂମି । ଅନେକ ପ୍ରସ୍ଥ ଓ ତଳ ଭୂମିରେ ଲୁକ୍କାୟିତ ଆଦ୍ୟ ଯୌବନର କୌତୁକ କଦମ୍ବିତ ପ୍ରଫୁଲ୍ଲତା ଯେତେ ଯେତେ ମନେପଡ଼ିଲା, ସେତେ ମୁକୁଳି ଗଲା କଦମ୍ବର କୋରକ । ଏ ସବୁର ଆଧାର ଥିଲା ଗୋଟିଏ ଫଟୋ । ସେଇ ଫଟୋଟି ଧରି ଶ୍ରଦ୍ଧାନନ୍ଦ ଚାଲିଲେ ଫଟସ୍ଥ ଅନ୍ୟତମ ବନ୍ଧୁ ମାଧବ ଘରକୁ । ମାଧବ ଦିଶୁଥିଲେ ବୁଢ଼ା । ଶ୍ରଦ୍ଧାନନ୍ଦଙ୍କ କବାଟ ବାଡ଼ିଆ ଶୁଣି ଦ୍ୱାର ଖୋଲିଲେ । କିନ୍ତୁ ଆଗନ୍ତୁକଙ୍କ ପ୍ରତି ପୂରି ରହିଥିଲା ଅବଜ୍ଞା, ଭ୍ରୂକ୍ଷେପ ଭାବ । ଶ୍ରଦ୍ଧାନନ୍ଦ ଅସ୍ୱସ୍ତି ଅନୁଭବ କଲେ । ଯଦିଓ ଆଗନ୍ତୁକଙ୍କୁ ଘର ଭିତରକୁ ଡାକି ବସାଇଲେ ମାଧବ, କିନ୍ତୁ ସେଥିରେ ଥିଲା ପ୍ରଚ୍ଛନ୍ନ ବିରକ୍ତି, ଅନାଗ୍ରହ ସମ୍ଭାଷଣ । ଯେମିତି କହିବାକୁ ଚାହୁଁଥିଲେ, କିଏ ତୁମେ ଅପରିଚିତ ? ଫେରିଯାଅ ଯଥାଶୀଘ୍ର । ଶ୍ରଦ୍ଧାନନ୍ଦ ମଧ୍ୟ ଫେରି ଆସୁ ଆସୁ ମନେପଡ଼ିଗଲା ଫଟୋଟିର କଥା । ଓ ଫଟୋଟି କାଢ଼ି ଦେଖାଇଲେ । ମାଧବ ଦେଖିଲେ ଫଟୋ । କେମିତି ଗୋଟାଏ ଅନାଗ୍ରହ ଭାବ ପ୍ରଥମେ ଫୁଟି ଉଠିଲା ମନରେ । ଶ୍ରଦ୍ଧାନନ୍ଦ କହିଲେ, ହେଇ ଦେଖନ୍ତୁ, 'ଆପଣ ଠିଆ ହୋଇଛନ୍ତି କୋଣରେ' । ଏଥର ମାଧବ ପୁଣି ଫଟୋଟି ନେଲେ, ନିରେଖି ଦେଖିଲେ । ଶ୍ରଦ୍ଧାନନ୍ଦଙ୍କ କଥାକୁ ଏଡ଼ାଇ ଦେଇ କହିଲେ "ଶଳା ରାମରାମ ବି ଆସି ଆମ ମଝିରେ ଛିଡ଼ା ହୋଇଯାଇଛି !" ଶ୍ରଦ୍ଧାନନ୍ଦ ରାମରାମ ନାମଟିକୁ ସଂଶୋଧନ କରି କହିଲେ, ତା'ନାମ

ଅଭିରାମ। ମାଧବ ସଂଶୋଧନ ପ୍ରୟାସରେ କହିଲା, "ଅଭିରାମ ବୋଲି ତାକୁ କିଏ ଡାକୁଥିଲା ? ସମସ୍ତେ ଥଟ୍ଟା କରି ତାକୁ ରାମରାମ କହୁଥିଲେ।" ତା'ପରେ ଶ୍ରଦ୍ଧାନନ୍ଦଙ୍କୁ କହିଲେ, "ତମେ ତ ସେଇ ସେକ୍ସପିଅରବାଲା ଶ୍ରଦ୍ଧାନନ୍ଦ ! ମୋର ବାଳ ସବୁ କୁଆଡ଼େ ଉଡ଼ିଗଲାଣି। ଆସ ଆସ, ଭିତରକୁ ଆସ ! ଚା' ନ ପିଇ କେମିତି ଚାଲିଯିବ" (ପୃ.୩୪୬) ? ଭାରବି ଦିନେ କହିଥିଲେ- "ଅବିଜ୍ଞାତେଽପି ବନ୍ଧୋହି ବଳାତ୍ ପ୍ରହ୍ଲାଦତେ ମନଃ," ଅର୍ଥାତ୍ ଅପରିଚିତ (ଜଣାଗଲେ) ହୋଇଥିଲେ ମଧ୍ୟ ବନ୍ଧୁ ମିଳନରେ ଚିତ୍ତ ପ୍ରସନ୍ନ ହୋଇଯାଏ। ଲୋକ ବ୍ୟବହାର ଅନଭିଜ୍ଞତାରୁ ବନ୍ଧୁତ୍ୱ ନଷ୍ଟ ହୁଏ। ଶ୍ରଦ୍ଧାନନ୍ଦ ମାଧବଙ୍କ ବ୍ୟବହାରରୁ ଏଇଟିର ସନ୍ଧାନ ପାଇ କ୍ଷୁଣ୍ଣ ହେବା ବେଳେ ଫଟୋଟି ହେଲା ଲୋକ ବ୍ୟବହାରର ଏକ ନିଦର୍ଶନ, 'ଆସ, ଚା ପିଇଯିବ' ! ଫଟୋ ମାଧବର ସ୍ୱଚ୍ଛ ବେତନଭୋଗୀ ଅନାସକ୍ତ ମନକୁ ବଦଳାଇ ଦେଲା, ସ୍ମୃତିର ଝରଣା କେଡ଼େ ରସବନ୍ତ ହୋଇଉଠିଲା– ଅଭିରାମକୁ କେହି ତା' ନାମରେ ଡାକୁ ନ ଥିଲେ, ଶ୍ରଦ୍ଧାନନ୍ଦ ପରିଚିତ ଥିଲେ ସେକ୍ସପିଅରପ୍ରେମୀ ଭାବରେ। ଅତୀତର ଜଉମୁଦଦିଆ ସ୍ମୃତି ଫଟୋର ନିଷ୍ପ୍ରାଣ ଅଙ୍ଗରେ ଯେଉଁ ପ୍ରାଣ ସଂଚାର କଲା, ତାହା ହିଁ ଲୋକାଚାର ପରି ମୌନଶୀଳ ଏକ ବ୍ୟବହାରକୁ ଜନ୍ମ ଦେଲା; ତା' ସହିତ ବନ୍ଧୁମାନଙ୍କୁ ନେଇ ସଂଘଟିଏ କରି ମଝିରେ ମଝିରେ ସ୍ମୃତି ରୋମନ୍ଥନ- ଭେଟରେ ମିଳିତ ହେବାକୁ କଠୋର ଅନିଚ୍ଛୁକ ମାଧବର ଦେଖାଗଲା ପରିବର୍ତ୍ତନ। କୁହାଯାଏ, କ୍ଷୁଦ୍ରଗଳ୍ପ ଖୋଜେ ଗୋଟିଏ ଗୋଟିଏ ଏକକ ଚରିତ୍ର, ଯିଏ ଆମ ସମାଜ ବା ଜୀବନର ଗୋଟିଏ ନିଦର୍ଶନ ସ୍ୱରୂପ ଆବିଷ୍କୃତ ହୁଏ ତା'ର ବିଶେଷତ୍ୱ ଘେନି। ଆତ୍ମୋଦ୍‌ଘାଟନର ଏଇ ଅଙ୍କୁଶଟି ହେଉଛି ଏକ ସାର୍ଥକ ମାଧ୍ୟମ। ମଣିଷକୁ ତା'ର ନିଜ ପରିବେଶରୁ ସନ୍ଧାନ କରିବା। ମାଧବ ସେଇପରି ଅଗଣିତ ଚରିତ୍ର ମଧ୍ୟରେ ଜଣେ, ଯା'ର ଭଙ୍ଗାମନ ବାସ୍ତବତାର ତଥାକଥିତ ରୁକ୍ଷତା ଭିତରେ ମୁହ୍ୟମାନ ଥିଲା; ଏବେ ସ୍ମୃତି ଫଟୋଟିଏ ହୋଇ ତାକୁ ଦେଉଛି ଜୀବନ୍ୟାସ। ମିଶିବାର ବା ଆତ୍ମପ୍ରସାର କରିବାର ଆନନ୍ଦ, ବ୍ୟଥାରୁ ବିଳାପର ବିଘଟିତ ରୂପ ଅତିକ୍ରମ କରିଯିବାକୁ ଏକ ପ୍ରେରଣା, ଏଇ ଫଟୋ ଯେମିତି ହଜିଯାଇଥିବା ମୂଲ୍ୟବୋଧକୁ ପ୍ରତିଷ୍ଠା ଦେଇଛି।

'ସ୍ପର୍ଶ' 'ଆମେ ଯେଉଁମାନେ' ସଂକଳନର ସାର୍ଥକ ଗଳ୍ପଟିଏ। ସଂକ୍ଷିପ୍ତତା ଏହାର ମାନକ, ରୂପମୋହ ଏହାର ଆବେଗ, ଇନ୍ଦ୍ରିୟ ତୃପ୍ତି ଏହାର କାମନା, ସନ୍ତୋଷ ଅସନ୍ତୋଷ ଏହାର ପରିଣତି ଏବଂ ଦର୍ଶନ ହେଉଛି ଅନ୍ତରାଳର ପ୍ରେରଣା। ଭୋଗ ବିଷୟ ପ୍ରତି ଇନ୍ଦ୍ରିୟ ଅନୁରକ୍ତ ହୁଏ; ଛୁଇଁବ, ଛୁଇଁବ ନାହିଁର ଦ୍ୱନ୍ଦ୍ୱରେ ଦୀର୍ଘ ସମୟ ଯନ୍ତ୍ରଣା ଭୋଗେ। କେତେବେଳେ ଆବେଗ ହଠାତ ଛୁଇଁଦିଏ ତ ଶରୀରରେ ଆସେ ଅପୂର୍ବ ରୋମାଞ୍ଚ, ଶିହରଣର ଅନୁଭୂତି ପୁଣି ଏକ ସ୍ୱାଦ ପାଇଁ ଜଗାଏ ଆଶା। ଇନ୍ଦ୍ରିୟ ଛୁଇଁଲେ ଉଷ୍ଣତା, ଶୀତଳତା, ସୁଖଦୁଃଖଜନିତ ଅବବୋଧ ସବୁ ଆସେ। କିନ୍ତୁ ସେସବୁ ସ୍ଥିର ହୋଇ ରହନ୍ତି ନାହିଁ। ଆସନ୍ତି, ଯାଆନ୍ତି। ଏପରି ଅନିତ୍ୟ ବିଷୟ ପ୍ରତି

ସଜାଗ ରହିବା ହୁଏତ ସଚେତନ ମନର ଆଚରଣ ହୋଇପାରେ, କିନ୍ତୁ ମଣିଷ (ବ୍ୟକ୍ତି)ର ସେ ଜ୍ଞାନ ଥିବା ଆବଶ୍ୟକ। ପ୍ରସଙ୍ଗତଃ ସ୍ମରଣୀୟ ଗୀତାର ୨।୧୪ ଶ୍ଲୋକ—

ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣସୁଖଦୁଃଖଦାଃ
ଆଗମାପାୟିନୋଽନିତ୍ୟାଂସ୍ତାଂସ୍ତିତିକ୍ଷସ୍ୱ ଭାରତ।

'ସୁଖ ଦୁଃଖ କ୍ଷଣିକ। ଏଇ ବିଚାର ବ୍ୟକ୍ତିକୁ ଦୀର୍ଘ ଶୋଚନାରୁ ମୁକ୍ତି ଦିଏ। ଏହାର ଅଭାବ ମନସ୍ତାପକର'। 'ସ୍ପର୍ଶ' ଗଳ୍ପ ରଚନା ପୂର୍ବରୁ ଗାଳ୍ପିକ ସମ୍ଭବତଃ ଏଇ ଅନୁଶୀଳନରେ ପହଞ୍ଚିଛନ୍ତି। ପ୍ରେମଜନିତ ଯାବତୀୟ ଚିନ୍ତାକୁ ନେଇ ଇନ୍ଦ୍ରନାଥ ମାଧବୀ ମନକୁ ଆକୃଷ୍ଟ କରିବାକୁ ଚାହିଁଛି। ଉଭୟଙ୍କ ମଧ୍ୟରେ ବନ୍ଧୁତ୍ୱ; ସେଇ ସଂପର୍କକୁ ଇନ୍ଦ୍ରନାଥ ସ୍ୱେଚ୍ଛାରେ ପରିଣତ କରିବାକୁ ଚାହିଁନାହିଁ। "ଇନ୍ଦ୍ରନାଥ ପାଇଁ କଠୋର ସଂଯମ, ପରୀକ୍ଷା ଓ ଉଦ୍‌ବେଗର ସମୟ ଥିଲା। ମାଧବୀ ସହିତ ନିଜର ସମ୍ବନ୍ଧ ବିଷୟରେ ତା' ମନ ଭିତରେ କୌଣସି ସଂଶୟ ବା ସଂକୋଚ ନ ଥିଲା ଏବଂ ସେମାନଙ୍କ ସଂପର୍କ ଥିଲା ସଂପୂର୍ଣ୍ଣ ସ୍ୱାଭାବିକ ଓ ଜଟିଳତାରହିତ"(ପୃ.୩୨୩)। ଏଇପରି ଏକ ପୃଷ୍ଠଭୂମିରେ ଜଗନ୍ନାଥ ପ୍ରସାଦ ଇନ୍ଦ୍ରନାଥ ଓ ମାଧବୀଙ୍କ ମଧ୍ୟରେ ଥିବା ବନ୍ଧୁତ୍ୱ, ପ୍ରେମରେ ଯେପରି ରୂପାନ୍ତର ହେଲା ତା'ର ମନୋଜ୍ଞ ବିକାଶର ଚିତ୍ରଟିଏ ଦେଇଛନ୍ତି। ଇନ୍ଦ୍ରନାଥ ପ୍ରେମ କରେ, ଏ କଥା ମାଧବୀକୁ ଜଣାଇବା ପରେ ତା' ମନରେ ପ୍ରଶ୍ନ ଓ କୌତୂହଳ ଜାଗିବା ସ୍ୱାଭାବିକ। ଦୁଇ ଦିନର ନୀରବତା ପରେ ମାଧବୀର ଉତ୍ତର-
"ମୁଁ ଅନେକ ଭାବିଲି, କିନ୍ତୁ କିଛି ଠିକ୍ କରିପାରିଲି ନାହିଁ।"

"ଏଥିରେ ଠିକ୍ କରିବାର କ'ଣ ଅଛି ? ତମେ ନିଶ୍ଚୟ ତମର ମନକୁ ଜାଣ"। କହୁଛି ଇନ୍ଦ୍ରନାଥ। ମନକୁ ଜାଣିବା କ'ଣ ଏତେ ସହଜ ? ମାଧବୀ କହିଲା ଏବଂ ଓଲଟା ପ୍ରଶ୍ନ କଲା, "କେବଳ ଜଣକ ପକ୍ଷରେ କ'ଣ ପ୍ରେମ କରିବା ସମ୍ଭବ" ? × × "ଏ କଥା କ'ଣ ସମ୍ଭବ ନୁହେଁ ଯେ ଜଣେ ଆଉ ଜଣକୁ ଭଲପାଏ; କିନ୍ତୁ ଅନ୍ୟ ଜଣକ ସେ ବିଷୟରେ ସଚେତନ ନୁହେଁ ? ଏ ଭଳି ପରିସ୍ଥିତିରେ ପ୍ରେମର ଅର୍ଥ କ'ଣ (ପୃ-୩୨୭) ?" ଗାଳ୍ପିକ ଦୁଇ ଚରିତ୍ରକୁ ବୁଝିବା ପାଇଁ ଏହିପରି ଯଥେଷ୍ଟ ସୂଚନା ଦେଇଛନ୍ତି। ଗଳ୍ପରେ ସଂକେତାତ୍ମକତା ବର୍ଣ୍ଣନାର ଏକ କୌଶଳ କେବଳ ନୁହେଁ, ତା'ର ଗାମ୍ଭୀର୍ଯ୍ୟର ମଧ୍ୟ ସୂଚନା। ପ୍ରେମ ଜୀବନର ଯେଉଁ ମହାର୍ଘ ସଂପଦର ଇଙ୍ଗିତ ଦିଏ, ତାହା ଜୀବନବୋଧର କେତେ ଗଭୀରତାକୁ ଛୁଏଁ, ଏଥିରୁ ତାହା ବୁଝିହୁଏ। ଭବଭୂତି ଦିନେ କହିଥିଲେ, "ପୁରନ୍ଧ୍ରୀଣାଂ ଚିତ୍ତଂ କୁସୁମସୁକୁମାରଂ ହି ଭବନ୍ତି", ଏଇଟି କ'ଣ ସତ୍ୟ ? ପ୍ରସଙ୍ଗତଃ, ମାଧବୀର ଉତ୍ତରରୁ ଏହା ସ୍ପଷ୍ଟ ହେଉ ନାହିଁ। ଅପରପକ୍ଷରେ ନାରୀକୁ ବୁଝିବା କିମ୍ବା ନାରୀକୁ ପ୍ରେମର, ପ୍ରିୟଭାବର ପ୍ରତୀକ ରୂପେ ଚିହ୍ନଟ କରିବା ସମ୍ଭବ ନୁହେଁ। ଜାତକ

ଗଳ୍ପରେ ଠାଏ କୁହାଯାଇଛି, "ନାରୀର କେହି ପ୍ରିୟ ବା ଅପ୍ରିୟ ନାହିଁ, ନାବ ଏପାରି ସେପାରି ହୋଇ ଯେପରି ଦୁଇ କୂଳକୁ ସ୍ପର୍ଶ କରେ, ନାରୀ ଅନୁରୂପ ସେବା କରେ ଉଭୟର" । ମାଧବୀର ମନଟି ତେବେ କ'ଣ ? ଇନ୍ଦ୍ରନାଥ କ'ଣ ଅତୃପ୍ତ ରହିବ ? ଗଳ୍ପକାର କହୁଛନ୍ତି, "ମାଧବୀ ତାକୁ କେବହେଲେ ତା' ପ୍ରତି ନିଜର ମନୋଭାବ ବିଷୟରେ କିଛି କହୁ ନ ଥିଲା ଏବଂ ଇନ୍ଦ୍ରନାଥ ପାଇଁ ଏହା ଏକ ଧୈର୍ଯ୍ୟର ପରୀକ୍ଷା ଥିଲା । × × ଏଇ ଝିଅଟିକୁ ନିଜର ଦୁଇ ବାହୁରେ ଚିରକାଳ ପାଇଁ ଅଟକାଇ ରଖିବ । କିନ୍ତୁ ତାକୁ ବାହୁରେ ନେବା ତ ଦୂରର କଥା, ତାକୁ ଛୁଇଁବା ବି ଇନ୍ଦ୍ରନାଥ ପକ୍ଷରେ ଦୁଷ୍କର ଥିଲା" (ପୃ.୩୨୭) । ପ୍ରେମରେ ଧୈର୍ଯ୍ୟ ସମ୍ଭାଳି ହୁଏ, ଏ କଥା କିଏ ଦାବି କରିପାରେ ? ପ୍ରେମୀର ହୃଦୟ କେବେ ଧୈର୍ଯ୍ୟଶୀଳ ହୁଏ ? ମାତ୍ର ଗାଳ୍ପିକ ଇନ୍ଦ୍ରନାଥ ଭିତରେ ଦେଖାଇଛନ୍ତି, ଧୈର୍ଯ୍ୟପଣ । କହିବାକୁ ଚାହିଁଛନ୍ତି, "ମନର ପ୍ରତିମା ଯେତେବେଳେ ମନୋମୟ, ଭାବରେ ସେ ଯେତେବେଳେ ପୂର୍ଣ୍ଣତଃ ନିସର୍ଗ ତରଳ ଶଶୀ, ତାକୁ ନିୟନ୍ତ୍ରଣ କରିବାକୁ କିଏ ସମର୍ଥ" ! କଲ୍ହଣ ନାରୀକୁ 'ନିସର୍ଗ ତରଳ' ରୂପଟିଏ ଦେଇ ସତର୍କ କରାଇଛନ୍ତି, 'ସେ ଆପେ ତା'ର ସମର୍ପଣ ବନ୍ଧ ଭାଙ୍ଗି ଉଚ୍ଛୁଡ଼ି ଆସିବ ସହସ୍ର ଧାରାରେ' । ସ୍ପର୍ଶଜନିତ ଟିକେ ସୁଖ ଦେବାକୁ ପରାଙ୍ମୁଖ ମାଧବୀ ସହସ୍ରଧାରରେ ଦିନେ ଉଚ୍ଛୁଳି ପଡ଼ିଲା ।

ଆଉ ଦିନେ ଯେତେବେଳେ ଦୁଇ ବାହୁକୁ ପ୍ରସାରିତ କରି ଇନ୍ଦ୍ରନାଥ ମାଧବୀକୁ ତା' ପାଖକୁ ଆସିବାକୁ ଆଖିର ନିମନ୍ତ୍ରଣ ଦେଲା, ମାଧବୀ ବ୍ୟଗ୍ରତାର ସହିତ ଆସି ତା' ହାତରେ ଧରାଦେଇ ସଂପୂର୍ଣ୍ଣ ସମର୍ପଣ କରିଦେଲା (ପୃ.୩୨୮) । ତା'ପରେ ? କହୁଛନ୍ତି ଜପ୍ରଦା, "ମାଧବୀ ଥିଲା ଇନ୍ଦ୍ରନାଥର ସ୍ୱପ୍ନ ବହିର୍ଭୂତ ଏକ ଆଗ୍ନେୟ ଚମତ୍କାର, ଦେହ ଥିଲା ସୀମାହୀନ ବିସ୍ତାରର ବାଲୁକାସ୍ତୂପ; ମରୁଦ୍ୟାନ, ମରୀଚିକା ସମେତ ଏକ ଜଳନ୍ତା ମରୁସ୍ଥଳ ଯାହାର ଉତ୍ତାପରୁ ନିସ୍ତାର ଥିଲା ପରିତୃପ୍ତିର ନିଶାର୍ଦ୍ଧରେ । × × ଆଖିଥିଲା ଅଗ୍ନିଗର୍ଭା ଉଲ୍‌କା, ଓଠ ଥିଲା ଜ୍ୱାଳାମୁଖୀ, ପ୍ରତିଟି ଚୁମ୍ବନ ଗୋଟିଏ ଗୋଟିଏ ବିସ୍ଫୋରଣ, ଆଶ୍ଳେଷ ଥିଲା ବହ୍ନିବଳୟ, ପ୍ରଶ୍ୱାସ ଥିଲା ନିଦାଘର ନିର୍ମମ ଝଞ୍ଜା, ଚୂର୍ଣ୍ଣକୁନ୍ତଳ ଥିଲା ଅଗ୍ନିଶିଖା, ଲୋମକୂପ ଏକ ସ୍ୱତନ୍ତ୍ର ସ୍ଫୁଲିଙ୍ଗ । ତା'ର ଅଭ୍ୟନ୍ତର ଥିଲା ଏକ ପ୍ରଜ୍ୱଳିତ ଯଜ୍ଞକୁଣ୍ଡ, ଯାହା ଭିତରୁ ଇନ୍ଦ୍ରନାଥ ପ୍ରତିଟି ଥର ଜଳିପୋଡ଼ି ସିଝି ତରଳି ପୁଣି ଶୁଦ୍ଧପୂତ ଓ ଦୀପ୍ତିମାନ ହୋଇ ବାହାରି ଆସୁଥିଲା" (ପୃ.୩୨୮) । ରତି ଓ ରତ୍ୟାନ୍ତର ମୁହୂର୍ତ୍ତର ଏଇ ଚିତ୍ର କାବ୍ୟ ଭାଷାରେ ଗମ୍ଭୀର, ବ୍ୟଞ୍ଜନାରେ ଚ଼ମତ୍କାର । କଳ୍ପନା ଓ ବାସ୍ତବତାର ମଧ୍ୟବିନ୍ଦୁ ପରି ଆହ୍ଲାଦିତ ଏକ ଦାରୁଣ ଖେଳ । ବଡ଼ ଶ୍ଳେଷପୂର୍ଣ୍ଣ ଭାଷା ଓ ଭାବର ସନ୍ନିଧି ଲାଭ । ଖୁବ୍ କଠିନ ସେ ମୁହୂର୍ତ୍ତ ଜଣେ ସ୍ରଷ୍ଟା ପକ୍ଷରେ । ପ୍ରେମର ବିଡ଼ମ୍ବନାରୁ ନେଇ ଶରୀର ଭୋଗ କରାଇ ବିପରୀତ ଉପଲବ୍‌ଧିକୁ ପୁଣି ସକରାତ୍ମକ ରୂପ ଦେବା । ପ୍ରେମ ଓ ରତି ଯମଜ ହେଲେ ହିଁ ନିଷ୍କଣ୍ଟକ ସୁଖ ଦୀର୍ଘକାଳ ଭୋଗନ୍ତି । ଗଳ୍ପର ଭାବ ତୀକ୍ଷ୍ଣ ଉପଲବ୍ଧି ଉପରେ ଆସ୍ଥା ରଖୁଛି । ଦରକାର କରୁଛି

ଅନୁରୂପ ଭାଷା; ଗଦ୍ୟ ଓ ପଦ୍ୟ ସହୋଦର ପରି ଅବତୀର୍ଣ୍ଣ କରୁଛନ୍ତି । କେଉଁ କଳ୍ପଲୋକରୁ ଝରି ପଡୁନାହିଁ ଅନୁଭୂତି, ବର୍ଣ୍ଣ୍ୟବସ୍ତୁର ସାନ୍ଦ୍ରତା । ରତିଶାସ୍ତ୍ର ଅନଭିଜ୍ଞ ଜଣେ ଗାଳ୍ପିକ ପକ୍ଷେ ଏହା ସୁଲଭ ହୁଅନ୍ତା ନାହିଁ । କାମାଗ୍ନିରେ ନାରୀ ବହୁ ଯଜ୍ଞର ଏକ ସମନ୍ୱୟ । ପୁଣି ବିସ୍ମୟ ହେଉଛି "ମାଧବୀ ରୋଗା ପତଳା, ଶାନ୍ତଶିଷ୍ଟ । ଅଥଚ ରତିକାଳରେ ତା'ର ଓଠରେ ନ ଥିଲା ହସ, ମୁହଁରେ ଶାନ୍ତିଭାବ, ଆଖିରେ କୋମଳତା, ତା'ର ସମଗ୍ର ଶରୀର ରୂପାନ୍ତରିତ ଏକ ଉଚ୍ଛୃଙ୍ଖଳ ଅବୟବ ହୋଇଯାଇଥିଲା ।" ଏ ପରିସ୍ଥିତିରେ ଇନ୍ଦ୍ରନାଥ ଜଳି ପୋଡ଼ି ସିଝି ତରଳି ପୁଣି ଶୁଦ୍ଧପୂତ ଓ ଦୀପ୍ତିମାନ ହେବା ହିଁ ଦୀର୍ଘ ଅତୃପ୍ତିର ସମ୍ଭାବନାପୂର୍ଣ୍ଣ ପରିଣତି ।

କାମ ଚିରକାଳ ଏକ ଅତୃପ୍ତ ବାସନା । "ଭବେ ପାପମୂର୍ତ୍ତି ପରି ଅଟଇ ସେ, ସ୍ୱର୍ଣ୍ଣେ ମାରାତ୍ମକ ରୂପେ ରମ୍ୟ ଦିଶେ" (ଚିଲିକା) । ନାରୀ କ'ଣ ଏକ ମଶାଲ ? ଅବଶ୍ୟ ପତଙ୍ଗ ସମ ଲୋଲୁପଙ୍କ ଦୃଷ୍ଟିରେ । ପତଙ୍ଗ ଇନ୍ଦ୍ରନାଥ ସେ ସ୍ପର୍ଶ ପାଇଛି, କିନ୍ତୁ ଶରୀର ହରାଇ ନାହିଁ, ହରାଇ ବସିଛି ତା'ର ଏକାନ୍ତ ସତ୍ତା । ମାଧବୀ ଥରେ ସ୍ପର୍ଶ ଦେଇ ପୂର୍ବ ପରି ଦୂରତା ରକ୍ଷା କରିଛି । ପରୀକ୍ଷା କରିବା ପରି ସେ ଇନ୍ଦ୍ରନାଥର ପୌରୁଷର ସାମର୍ଥ୍ୟ କଳିଛି । କ'ଣ ପାଇଛି ସେ ପରୀକ୍ଷାରୁ ଏ ପ୍ରସଙ୍ଗରେ ତାହା ଅବାନ୍ତର । ତେବେ ଗାଳ୍ପିକ ସୂଚାଇଛନ୍ତି, ସେଇ ସ୍ପର୍ଶର ଦହନ କେତେ ତୀବ୍ର । ଇନ୍ଦ୍ରନାଥ ପୁଣି ଫେରିବ ପ୍ରାଥମିକ ଅବସ୍ଥାକୁ, ପୁଣି କରିବ ନିବେଦନ, ପ୍ରସାରିଦେବ ଆକୁଳ ବାହୁ ଯୁଗଳ । ଗୀତା ସିନା କହିବେ ଅନୁଭୂତ ପ୍ରାକୃତିକ ସତ୍ୟ, ମାତ୍ର ଲେଖକ ସେଇ ସତ୍ୟର କଥାରୂପ ନିର୍ଦ୍ଧାରଣ କରିବେ । ଜଗନ୍ନାଥ ପ୍ରସାଦ ଚାତୁର୍ଯ୍ୟ କରନ୍ତି ନାହିଁ, ବସ୍ତୁ ବିସ୍ତାର କରିବା ପରି ନିରର୍ଥକ କଳ୍ପନାର ସେ ପକ୍ଷପାତୀ ନୁହନ୍ତି । ଆବଶ୍ୟକତାକୁ ଅନୁଭବ କରି ସେ ପରିବେଶର ଚିତ୍ର ଦିଅନ୍ତି । ସଂଯତବାକ୍ ହେବା ଶିଳ୍ପୀର ସ୍ୱଧର୍ମ । ଏଇଟି ମନେହୁଏ ସେ ଶିଖିଛନ୍ତି ଚିତ୍ରବିଦ୍ୟାରୁ । ବାସ୍ତବତାର ଆହ୍ୱାନରୁ ସେ ସୀମିତ ଏବଂ ଅତ୍ୟଳ୍ପ ଅଥଚ ଭାବଗମ୍ଭୀର ଶବ୍ଦର ବ୍ୟବହାର କରିପାରନ୍ତି । ବାହୁଲ୍ୟର ଗୋଟିଏ ଯାତନା ଥାଏ । ତାହା ଗଳ୍ପକୁ କରେ ଦୀର୍ଘ କିନ୍ତୁ ରୁଗ୍ଣ; ଆବଶ୍ୟକ ଓ ଉତ୍ତେଜକ ଶବ୍ଦର ଶାଣିତ ବ୍ୟବହାର ଗଳ୍ପକୁ କରେ ବାସ୍ତବତାସଂପନ୍ନ । ସେଇ ବୋଧ ସତ୍ୟଶୀଳତାରୁ ଜନ୍ମ ନିଏ । 'ସ୍ପର୍ଶ' ଗଳ୍ପ ସତ୍ୟଶୀଳ ବର୍ଣ୍ଣନାର ଗୋଟିଏ ଆଲେଖ୍ୟ । ଇନ୍ଦ୍ରିୟାନୁଭବ ସହ ସମ୍ଭାବନାର ସଂକେତ ଦେଇ ଜଟିଳ ସଂପର୍କର ନୂଆ ରୂପ ଓ ଅର୍ଥ ଆଙ୍କିଦେବା ତାଙ୍କର ଶିଳ୍ପାଦର୍ଶ । ମୋର ମନେହୁଏ 'ସ୍ପର୍ଶ' ଗଳ୍ପଟି ଓଡ଼ିଆ ଗଳ୍ପ ଜଗତରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । କ୍ଷୁଦ୍ରତାରେ ଭାବ ଅସୀମତା ଏହାର ନୈପୁଣ୍ୟ ।

ଅପର ପକ୍ଷରେ, ପୂର୍ବରୁ ସୂଚିତ ଦୁଇଟି ବଡ଼ ଗଳ୍ପ—'ସମସ୍ୟା' ଓ 'ଜନ୍ମଦାତା' । ଏ ଦୁଇଟିର ନାମକରଣ ସିଧାସଳଖ ଭାବବସ୍ତୁର ମେଖଳାକୁ ବେଷ୍ଟନ କରି । ପ୍ରଥମେ 'ସମସ୍ୟା' ଗଳ୍ପର

ବିଚାର କରାଯାଉ। ଜୟରାମ ବସାଇଲେ କାରଖାନା। ମାତ୍ର ବିଭ୍ରାଟ ହେଲା ବିଜୁଳି ଯୋଗାଣରେ। ବହୁ ଆଧୁନିକ ଧରାଧରି ପଦ୍ଧତିର ସଫଳତା ପରେ ବିଜୁଳି ଆସି ଉତ୍ପାଦନ ଆରମ୍ଭ ହେବା ବେଳକୁ ବର୍ଷାଭାବ କାରଣରୁ କାରଖାନା ହେଲା ବିଜୁଳିସେବାରହିତ। କାରଖାନା ପାଇଁ ଅର୍ଥ ଯୋଗାଣ କରିଥିବା ସଂସ୍ଥା ଅର୍ଥ ମାଗିଲେ। ଉପାୟହୀନ ଜୟରାମ ଶରଣ ପଶିଲା ଜଣେ ଆଧୁନିକ ବାବାର। ଫଳରେ ଶାନ୍ତି ଓ ଆଶ୍ୱାସନା ସହ ମିଳିଲା ଆଉ ଏକ ନୂଆ ଜୀବନର ସଂକେତ। କିନ୍ତୁ ଏକ ଅଜ୍ଞାତ ଚକ୍ରାନ୍ତର ବଶବର୍ତ୍ତୀ ହୋଇ ସେ ଆରମ୍ଭ କଲା ଆଶ୍ରମରେ ଏକ ପାଉଁରୁଟି କାରଖାନା। ଏପରି ସମସ୍ୟା ବର୍ଣ୍ଣିତ ଗଳ୍ପର କେନ୍ଦ୍ରଭୂମି ପାଠକ ନିରୂପଣ କରିବା ସେତେ ଅସହଜ ନୁହେଁ। ପାଠକମାନେ ବୁଝିପାରିବେ, ଭାରତ ବର୍ଷର ଆଧ୍ୟାତ୍ମିକ ସଂସ୍କୃତି ସଂପ୍ରତି ବାବାବାଦ ଦ୍ୱାରା କିପରି ପଙ୍କିଳ ହୋଇଉଠିଛି। ଏକ ପକ୍ଷରେ ଅନ୍ଧ ଭକ୍ତିର ବନ୍ୟା, ଅପର ପକ୍ଷରେ ବାବା ସଂସ୍କୃତିର ପ୍ରଚ୍ଛନ୍ନ ଭ୍ରଷ୍ଟାଚାର; ପୁଣି ଏକ ପକ୍ଷରେ ଧନ, କ୍ଷମତା ଓ କାମପ୍ରବଣତାର ଲୁକ୍କାୟିତ ମୋହ, ଛଳନା ଜର୍ଜରିତ ସମର୍ପଣ; ଅପର ପକ୍ଷରେ ଆଶ୍ରିତ ଭକ୍ତ ପ୍ରତି ଅଭୟ ପ୍ରଦାନର ପାଉଣା ସ୍ୱରୂପ କଉଡ଼ି ଅଭିଷେକ ପ୍ରମାଣ କରିଛି ପୁଞ୍ଜି ଓ କ୍ଷମତାର ସର୍ବ-ବ୍ୟାପାର-ଶାଳିନୀ- ମେଧାର ବିଜୟ। ଆଧ୍ୟାତ୍ମିକ ଆସ୍ପୃହା ଛଳନାର ସନେଟ ରଚନାରେ ବାବାଙ୍କୁ ସହାୟତା କରିଛି। ବାବାଙ୍କର ଅଛି ସୂକ୍ଷ୍ମ ଅଲୌକିକ ଶକ୍ତି; ସେ ସୃଜି ପାରନ୍ତି ନବ ନବ ଛନ୍ଦର ବରାଭୟ ଗଜଲ। ଆଶ୍ରମର ବିଳାସ ପ୍ରାସାଦମାନ ଭକ୍ତି ଅର୍ଘ୍ୟର ସାମାନ୍ୟ ନିବେଦନ। ସେବା କାର୍ପଣ୍ୟର ମୋହାଚ୍ଛନ୍ନ ଲୂତାତନ୍ତୁ ପ୍ରମାଣ କରେ ଶାନ୍ତିର ମାୟାଜାଲ। ଯେ କୌଣସି କାମନା ଧୁରୀଣ ବ୍ୟକ୍ତି ପାଇଁ ଗୋଟିଏ ଗୋଟିଏ ଫାଶ। ସେଇ ଫାଶରେ ଧରା ଦେଇଛି ଜୟରାମ।

ଅନ୍ୟ ଗଳ୍ପଟି 'ଜନ୍ମଦାତା'। ଜଣେ ଉପନ୍ୟାସକାର ଓ ଜଣେ ସିନେମା ପ୍ରଯୋଜକଙ୍କ ମଧ୍ୟରେ ବୁଝାମଣାର ବିଷୟ। ପ୍ରଯୋଜକର ଦରକାର ତା' ଯୋଜନା ପାଇଁ କାହାଣୀ; ହିଟ୍ କାହାଣୀ। ସେଥିରେ କଳାର ଗୁରୁତ୍ୱ ନ ଥାଏ। ଦର୍ଶକକୁ ଯାହା ଟାଣେ, ତାହା ଯନ୍ତ୍ରର କରାମତି ସହିତ ନିର୍ଦ୍ଦେଶକର କୌଶଳଛୁଆଁ ଶିଳ୍ପ। ସେ ଶିଳ୍ପ ଅର୍ଥର ପେଡ଼ିରୁ ମହାଆଡ଼ମ୍ବରରେ କୃତ୍ରିମତାର ଆବାହନ କରେ ଓ ଆଉ ଏକ ବଡ଼ ଅର୍ଥ ପେଡ଼ି ଲାଭର ପ୍ରତିଶ୍ରୁତି ଦିଏ। କଳାର ଆବିଷ୍କାର, ଧର୍ମ ଓ ଶିଳ୍ପର ପ୍ରକରଣ ଅନାଦୃତ। ଉମାଶଙ୍କରର ଉପନ୍ୟାସର କାହାଣୀକୁ ଟି.ଭି. ଧାରାବାହିକ ରୂପେ ଗ୍ରହଣ କରି ଆମୂଳଚୂଳ ପରିବର୍ତ୍ତନ କରିଛନ୍ତି ପ୍ରଯୋଜକ ଓ ସଂପାଦକ। ଲେଖକଙ୍କୁ ଏଥିପାଇଁ ଅର୍ଥ ଦିଆଯିବା ପରେ ଲେଖକର ନିଜ ଲେଖା ଉପରେ କର୍ତ୍ତୃତ୍ୱକୁ ଚମତ୍କାର ଢଙ୍ଗରେ ଏଡ଼ାଇ ଦିଆଗଲା। ଲେଖକ ବିଚରା ନିରୁପାୟ। ଉମାଶଙ୍କର ପ୍ରତିବାଦ କରିବା ସମ୍ଭବ ହୋଇନାହିଁ। ପୁଞ୍ଜି ଗଣମାଧ୍ୟମକୁ ହସ୍ତମୁଦୀ ମାହାଲରେ ପରିଣତ କରିଛି କଳାକୁ ମାଧ୍ୟମ କରି। ପ୍ରତିବାଦର ଭାଷା

ଚେତନା ସ୍ତରକୁ ଛୁଇଁନାହିଁ। ଛୁଇଁ ପାରିଥିଲେ ହୁଏତ ଗୋଟିଏ ମୂଳ କାହାଣୀ ଅପସଂସ୍କୃତିର ପ୍ରସାର କରିବାରେ ବାଧା ଉପୁଜାଇଥା'ନ୍ତା। କଳା ଉପଜୀବୀମାନେ ଝଣ୍ଡା ଉଡ଼ାଇ ପ୍ରତିବାଦ କରିବାକୁ ସମର୍ଥ ହୁଅନ୍ତେ। ପୁଞ୍ଜି ବିନିଯୋଗକାରୀ ନିଜର ରୁଚିରେ କାହାଣୀକୁ ଉପଭୋଗ୍ୟ କରିବା ପାଇଁ ବଜାର ସଂସ୍କୃତିର ପ୍ରୟୋଗ କରେ ଓ ତାହାକୁ ଦର୍ଶକର ରୁଚି ବୋଲି ଡିଣ୍ଡିମ ପିଟେ। କଳା ଜନରୁଚିର ପରିବର୍ତ୍ତନ କରିପାରେ, ଏପରି ବିଚାର କରେ ନାହିଁ ପ୍ରଯୋଜକ। ଭାରତୀୟ ସିନେ-ସଂସ୍କୃତିରେ ଏଇ ବୀଭତ୍ସ ଆଚରଣ ଲିଖିତ କଳାକୁ କରିଛି ମନୋରଂଜନଧର୍ମୀ ପଣ୍ୟାଶ୍ରିତ କଳାର ଅନୁଗତ। ଅର୍ଥ ହେଉଛି ରୁଚିର ରୂପକାର, କଳାର ସ୍ଥାନ ଏଠି ଅବାନ୍ତର। ଏପରି ସ୍ଥଳରେ ଜନ୍ମଦାତା କିଏ ? ଲେଖକ ନା ପ୍ରଯୋଜକ ? ଲେଖକ ଦେବକୀ ପରି ଦୂରରେ ରହି ସନ୍ତାନର ଲୀଳା ଦେଖୁଥାଏ; ପ୍ରଯୋଜକ ଅର୍ଥାଗମର ନିଶାରେ ନିଜର ପିତୃତ୍ୱର ବାହା ବାହା ନେଉଥାଏ।

ଗଳ୍ପ ଦୁଇଟିର ଭାବବସ୍ତୁ ପ୍ରଶସ୍ତ। ଏଥିରେ ପରିବେଶ ଓ ଘଟଣା, ଅତ୍ୟୁନ୍ନତ ଯୁକ୍ତି ଓ ବାସ୍ତବତାର ସମ୍ମିଶ୍ରଣ; ଦୁଇ ମୁଖ୍ୟ ଚରିତ୍ରର ଅନ୍ତଃସତ୍ତା ବାହ୍ୟ ପରିବେଶ ଦ୍ୱାରା ପୀଡ଼ିତ। ଜୟରାମ ଅବସ୍ଥାଚକ୍ରରେ ପଡ଼ି ବାବା ବୈଶାଖୀର ଚକ୍ରାନ୍ତକୁ ଗ୍ରହଣ କରିନେଇଛି; ତା'ର ଆତ୍ମସମର୍ପଣ ଅନ୍ତର ସହ ପ୍ରତିବାଦୀ ହୋଇନାହିଁ। ମାତ୍ର ଉମାଶଙ୍କର ପ୍ରତିବାଦ କରିଲେ ମଧ୍ୟ ତା'ର ମୂଲ୍ୟ ପାଇନାହିଁ। ତାକୁ ବୁଝାମଣା କରିବାକୁ ହୋଇଛି ଅନ୍ତର ସହିତ। ଗାଳ୍ପିକ ଏହାଦ୍ୱାରା କ'ଣ ଚାହିଁଛନ୍ତି କହିବାକୁ ? ବ୍ୟକ୍ତି କ'ଣ ଘଟଣା ପାଖରେ ପରାଧୀନ ? ତା'ର ନିୟନ୍ତ୍ରଣ ବାହାରେ ଘଟୁଥିବା ବିଭିନ୍ନ ଘଟଣା ଓ ତାକୁ ଘେରି ରହିଥିବା ଚରିତ୍ରବୃନ୍ଦ ବହୁ ଆଗରୁ ପ୍ରସ୍ତୁତ ରହିଥା'ନ୍ତି ନିଜ ମାର୍ଗ ଓ ମର୍ମରେ ଅଙ୍ଗିଆର କରିବାକୁ ? ଉଦାହରଣ ସ୍ୱରୂପ, ଜୟରାମ ବୈଶାଖୀ ବାବା ଆଶ୍ରମରେ ପହଞ୍ଚିବାକୁ ଦୀର୍ଘପଥ ପାଦରେ ଚାଲି ଚାଲି ପଥିକଙ୍କ ଠାରୁ ଯାହା ଶୁଣିଲା, ସେଥିରେ ବାବାଙ୍କ ପ୍ରତି ବଢ଼ିଲା ସମ୍ମାନ। ପୁଣି ଆଶ୍ରମରେ ପହଞ୍ଚି ସାକ୍ଷାତ ହେଲା ପ୍ରଫେସର ରାମଙ୍କ ସହ। କଟିଗଲା ମନର କୌତୂହଳ, ଅବିଶ୍ୱାସ ଓ ସନ୍ଦେହ। ଜନ୍ମ ନେଲା ସମର୍ପଣ କରିଦେବାର ବାସନା। ଏ ଯାଏଁ ଯେଉଁ ବ୍ୟକ୍ତି ଅସହାୟତାର ଜୀବନ୍ତ ବିଗ୍ରହ ବୋଲି ମନେହେଉଥିଲା, ଏବେ ସେ ସନାକ୍ତ ହେଉଛି ବିଶ୍ୱାସରେ। ଥିଲା ନିଷ୍ପାପ, ଏବେ ଅଲକ୍ଷ୍ୟରେ ପାପାସକ୍ତିର ଦୁଆରକୁ ପାଦ ପକାଉଛି। ଦେଖିଲା ଭକ୍ତ ଗହଣରେ ଥାଇ ବୈଶାଖୀ ବାବା ଦୂରରେ କ'ଣଟାଏ ଦେଖି ଚଦର ଫିଙ୍ଗି ଦୌଡ଼ିଲେ। ତାଙ୍କୁ ଅନୁସରଣ କଲେ ଭକ୍ତ ମଣ୍ଡଳୀ। ବାବା ହରିଣ ଛୁଆକୁ ଧରି ଘାସ ଖୁଆଇଲେ। ଆହା, ଜୀବ ପ୍ରତି କି ମମତା ! ଏଇ ତ ମର୍ତ୍ତ୍ୟଲୀଳାର ଅନୁପମ ମାଧୁରୀ, ଯାହା ମୂଢ଼ ଭକ୍ତଙ୍କୁ ଟାଣି ନେଇପାରେ ସମର୍ପଣର ଶେଷତମ ବିନ୍ଦୁ ପାଖକୁ ! ମହାଜ୍ଞାନୀ ବାବା ପୁଣି ଶିଶୁ ପରି ନିଷ୍ପାପ ଓ ଚପଳ। ପାଖରେ ସେବକ ଥିବା ସତ୍ତ୍ୱେ ସେ ଶ୍ରାନ୍ତ ହୋଇ ନିଜେ ହରିଣ ଛୁଆକୁ ଖାଇବାକୁ ଦେବା କମ୍ ବିସ୍ମୟର କଥା !

ଚିନ୍ତୁଆ ଆଚବି ମନେ କରିଥିଲେ, କ୍ଷୁଦ୍ରଗଳ୍ପ ପାଠକକୁ ମଣିଷ କରେ। ଦୁଷ୍ଟ ପ୍ରବୃତ୍ତିକୁ ଦେଖାଇ ଗଳ୍ପ ମଣିଷ ଚରିତ୍ରର ସଂଶୋଧନର ସୁଯୋଗ ଦିଏ। ଏବେ ଜଗନ୍ନାଥ ପ୍ରସାଦ ସେଇ ଦାୟିତ୍ୱ ନେଉଛନ୍ତି ପରୋକ୍ଷରେ, ଚରିତ୍ରର ଅନ୍ତର୍ମନକୁ ଚିହ୍ନାଇବାରେ। ସେ ଜାଣନ୍ତି, ଗତାନୁଗତିକତାର ସ୍ଥାଣୁତାକୁ ଭେଦ କରିବାକୁ କାଫ୍‌କା କ୍ଷୁଦ୍ରଗଳ୍ପକୁ ଗୋଟିଏ କୁରାଢ଼ି ତୁଲ୍ୟ ମନେ କରିଥିଲେ। ଭିନ୍ନ ଭିନ୍ନ କ୍ଷେତ୍ରରେ ମଣିଷର ଆବିଷ୍କାର କରିବାକୁ ପ୍ରୟାସ କରେ କ୍ଷୁଦ୍ରଗଳ୍ପ। ଏହା ଚରିତ୍ରାନୁସନ୍ଧାନର ଏକ କଳା। ପାଠକ ପଢୁଥିବା ଘଟଣା ଓ ଚରିତ୍ରରୁ ଗୋଟିଏ ଅର୍ଥପୂର୍ଣ୍ଣ ପରିବର୍ତ୍ତନର ସୂତ୍ର ଖୋଜିପାରେ। ରାତିର ଅନ୍ଧାର ଭେଦି ନୂଆ ସକାଳ ସିନ୍ଦୂରା ଫିଟାଇବା ପରି ଅପରିସ୍ଫୁଟ ହୃଦୟର ସିନ୍ଦୁକ ଭିତରୁ ଆଲୋକର ଦିବ୍ୟଜ୍ୟୋତି ବିଚ୍ଛୁରିତ ହୋଇପାରେ। ଏପରି ଏକ ସୁଯୋଗର ଅବକାଶ ମିଳେ କ୍ଷୁଦ୍ରଗଳ୍ପରୁ। ଏଇ ସମ୍ଭାବନା ଅର୍ଥପୂର୍ଣ୍ଣ କରେ ପାଠକର ନିରସ୍ତ ଚେତନାକୁ, ଋଦ୍ଧିମନ୍ତ କରେ ଜିଉଁଥିବା ଜୀବନର ମୋହକୁ; ପାପତାପ ବୋଲି ମନେ ହେଉଥିବା ଗ୍ଲାନିରୁ ତାକୁ ମୁକ୍ତ କରେ ଓ ଦୀର୍ଘ ଜୀବନ ପଥରେ ହାତ ଧରାଇ ଚଲାଇ ଶିଖାଏ। ଗାଳ୍ପିକ ଜଗନ୍ନାଥ ପ୍ରସାଦ ଏହି ରୀତିରେ ଯେ ଦକ୍ଷ ଶିଳ୍ପୀ, ତାହା ଅବୁଝା ରହେ ନାହିଁ।

'କଥାଯାତ୍ରା' ଅନ୍ତର୍ଗତ ସାତୋଟି ଗଳ୍ପ ସଂକଳନ ମଧ୍ୟରେ ସଂକଳନର ଶିରୋନାମା ଭିତ୍ତିକ ଗଳ୍ପ ମାତ୍ର ପାଞ୍ଚୋଟି। 'ଭବନାଥ ଓ ଅନ୍ୟମାନେ' ଓ 'ଆମେ ଯେଉଁମାନେ' ସଂକଳନରେ ଏହି ଶୀର୍ଷକ ଗଳ୍ପ ନାହିଁ। ଅବଶିଷ୍ଟ ସଂକଳନଗୁଡ଼ିକର ଶିରୋନାମା ଆଧାରିତ ଗଳ୍ପ ଯଥା ଦିନଚର୍ଯ୍ୟା, ସାକ୍ଷାତ୍‌କାର, ପ୍ରିୟ ବିଦୂଷକ, ଶେଷ ପର୍ଯ୍ୟନ୍ତ ଓ ଇଚ୍ଛାପତ୍ର ନାମକ ଗଳ୍ପଗୁଡ଼ିକ ସଂକଳନର ନାମକରଣ ରୂପେ ଗୃହୀତ ହୋଇଛି। 'ଭବନାଥ ଓ ଅନ୍ୟମାନେ' ସଂକଳନର ପ୍ରଥମ ଗଳ୍ପ 'ଶବ୍ଦଭେଦ'ରେ ଭବନାଥ ମୁଖ୍ୟ ଚରିତ୍ର। ତା'ର ସାଙ୍ଗସାଥିମାନେ ତା'ର କବିତା ପ୍ରତି ନିଜ ନିଜର ପ୍ରତିକ୍ରିୟା ନେଇ ଗମ୍ଭୀର। ଏଥିରେ ଲେଖକ 'ମୁଁ' ପ୍ରଥମ ପୁରୁଷରେ ଅନ୍ୟମାନଙ୍କ ସାଙ୍ଗରେ ନିଜକୁ ଯୋଡ଼ିଛନ୍ତି। ଭବନାଥର କବିତା ବୁଝିପାରୁ ନ ଥିବା ତା'ର ବନ୍ଧୁଙ୍କ ଗହଣରେ 'ମୁଁ' ଚରିତ୍ର ଏକଦା ଥିଲେ ଅନ୍ୟତମ। ତେବେ ଭବନାଥର ଜଣେ ସହୃଦୟ ରୂପେ ତା'ର ବ୍ୟକ୍ତିଗତ ଜୀବନ ରହସ୍ୟ ଅବଗତ ହେବା ପରେ ତା' ରଚିତ କବିତାକୁ ସେ ବୁଝିପାରିଲେ। "ଦୂବଘାସ ବରଗଛ/ପିମ୍ପୁଡ଼ି ହାତୀ/ ମଣିଷ ଈଶ୍ୱର/ହାତୀ ପିମ୍ପୁଡ଼ି/ବରଗଛ ଦୂବଘାସ"। ଏଇଟି ଭବନାଥର ପ୍ରଥମ କବିତା, ପ୍ରକାଶ ପାଏ ଜଣାଶୁଣା କୌଣସି ପତ୍ରିକାରେ। ମାତ୍ର ସାଙ୍ଗସାଥିଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୁଏ। ତେବେ ଭବନାଥର ସେଥି ପ୍ରତି ନ ଥାଏ ଭ୍ରୂକ୍ଷେପ; କାରଣ ସେ ବୁଝେ କବିତା ଶବ୍ଦର ଚିତ୍ର।

ଶବ୍ଦରେ ଅର୍ଥ ଆରୋପ ଦ୍ୱାରା ନୂଆ ଶକ୍ତିର ଆବିଷ୍କାର ଘଟେ, ହୃଦୟ ବୃତ୍ତିର ପ୍ରତିନିଧିତ୍ୱ କରେ; ଅନ୍ୟଥା ଅରବିନ୍ଦଙ୍କ ଭାଷାରେ ଶବ୍ଦ ହୋଇଯାଏ ପ୍ରେତ ତୁଲ୍ୟ। ଗଳ୍ପ ମାଧ୍ୟମରେ କବିତାର କଥା

କହି ଗାଳ୍ପିକ ଜଗ୍ରଦା ଜଣେ କବିର ହୃଦୟକୁ ପରିଚିତ କରାଇଛନ୍ତି। ଶୈଳୀଟି ବ୍ୟଙ୍ଗାତ୍ମକ। ଗଳ୍ପାଙ୍ଗ ପ୍ରସାରଣ ପାଇଁ ସେ କବି ଭବନାଥର ପ୍ରେମ କାହାଣୀ କହିଛନ୍ତି। ସେ ଦିନେ ପ୍ରେମ କରୁଥିଲା କଲେଜ ପଢ଼ିବା ବେଳେ। ସେଇ ପ୍ରେମ ଅବ୍ୟାହତ ରହିଛି ତା'ର ମନୋଜଗତରେ ଓ ତା'ର ମନୋପ୍ରତିନ୍ୟାସ ହେଉଛି ସେ ରଚୁଥିବା କବିତା। ପ୍ରେମ-ଆଖ୍ୟାନରୁ ଚରିତ୍ର ଘଟଣାଦିକୁ ବାଦ୍ ଦେଲେ ରହିଯାଏ କେବଳ ଆତ୍ମଦହନ, କିଛି ଦୁଃଖ ଏବଂ ଶେଷରେ ତା'ର ରୂପାନ୍ତର ଘଟେ ପ୍ରେମରେ; ଯେଉଁଥିରେ ନ ଥାଏ ବ୍ୟକ୍ତି ବା କିଛି ଘଟଣାର ପ୍ରତିଫଳନ। ରହେ କେବଳ ଅନୁଭୂତିମୟ ଶବ୍ଦର ଶରୀର। ସେ ଶବ୍ଦକୁ ଗୋଟିଏ ଅର୍ଥ ଦେଇ ପାଠକ ହୁଏତ ବୁଝିପାରେ, ଯେପରି ଲେଖକ (ମୁଁ) ବୁଝିଛନ୍ତି। କବିତାର ମର୍ମ ଯଦି ହୁଏ ବ୍ୟକ୍ତିଗତ ଅନ୍ତର୍ଦାହର କଥା, ତେବେ ତାହା ସାର୍ବଜନୀନ ଆନନ୍ଦ ଦେଇପାରିବ କି ? ଏ ପ୍ରଶ୍ନ ଗଳ୍ପରେ କବିତାକୁ ନେଇ। ଏହାକୁ ପାଠକ ଆଧୁନିକ କବିତାର ଦୋଷତ୍ରୁଟି ବୋଲି ଧରିନେବ କି ? ଏ ପ୍ରଶ୍ନ ଅସମାହିତ। କେବଳ ପାଠକର ବିଚାର ଉପରେ ଛାଡ଼ି ଦିଆଯାଇପାରେ। ତେବେ ଗଳ୍ପର ଶେଷାଂଶରେ ଲେଖକ ଶୁଣିଲେ ଯେ ଭବନାଥ ପାଗଳ ହୋଇଯାଇଛି। କବିକୁ ପାଗଳ କୁହାଯାଏ, ଯେତେବେଳେ ତା'ର ଶବ୍ଦ ପାଠକକୁ ଈପ୍ସିତ ଅର୍ଥ ପ୍ରଦାନ କରିପାରେ ନାହିଁ। ଅନ୍ୟ କଥାରେ ସହୃଦୟତାର ଲୋପ ପାଇଲେ। ଏଇ ଅବସ୍ଥାରେ ଲେଖକ ଭବନାଥର ପାଗଳପଣକୁ ବୁଝିଥିଲେ ଅଲଗା କରି। କେବେ ଯଦି ସେ ତାକୁ ଭେଟନ୍ତି, ଦେଖିବେ ଭବନାଥ ସୁସ୍ଥ ଅଛି, ତା'ର ଅଭିଧାନଗୁଡ଼ିକ ସେ ଦୂରେଇ ରଖିଛି ଓ ଟେପ ରେକର୍ଡ଼ ସହ କଥାବାର୍ତ୍ତା କରୁଛି। ଜଣେ କବିକୁ ନେଇ, ଏଇ ଭବିଷ୍ୟପାଠ ତା' ଜୀବନ-ବିଷାଦର ସୂକ୍ଷ୍ମ ରୂପ ତଥା ଶ୍ଳେଷପୂର୍ଣ୍ଣ ମନ୍ତବ୍ୟ। ଏହା କ'ଣ ତା'ର ନିୟତି ? ନିଶ୍ଚୟ। କବି ନିଜେ ହୋଇଉଠେ ଶବ୍ଦମୟ (ଅଭିଧାନ), ଦହନର ପ୍ରତିନିଧି। ଏତିକି ଦୁଃଖ ଯେ, ଅନ୍ୟମାନେ ତାକୁ ବୁଝିବାକୁ ହୁଏତ ସେ ନିଜ ଆଡୁ ନିଜେ ଉଦ୍ୟମ କରିବ। ଲେଖକ ପରି କେହି ବ୍ୟକ୍ତି ସହୃଦୟ ରୂପେ ଦଉଡ଼ି ଆସିବେ ନାହିଁ, କବିର ଦୁଃଖ ପଚାରିବାକୁ। କବି ମଧ୍ୟ ଗୋଟି ଗୋଟି କରି ଡାକି ବୁଝାଇବ ନାହିଁ, ତା'ର ପ୍ରତ୍ୟେକ ଶବ୍ଦର ଅର୍ଥ। ସେ ରଖିଯିବ ଭବିଷ୍ୟତ ପାଇଁ ନିଜ କବିତା ବିଷୟରେ ନିଜର କଥା। ଆଧୁନିକ କବିତାର ଏଇ 'ବ୍ୟକ୍ତିଗତତା' ତା'ର ଦୋଷ ବା ଗୁଣ ହେଉ, କବିତା ଯେ ଗୋଷ୍ଠୀରୁ ବିଚ୍ଛିନ୍ନ ଏବଂ କବି ଯେ ଆତ୍ମବନ୍ଦୀର ଦୁଃଖ ଭୋଗ କରେ, ଏହା କହିବା ବାହୁଲ୍ୟ।

ଜଗନ୍ନାଥ ପ୍ରସାଦ 'କଥାଯାତ୍ରା'ରେ ଲେଖକ ବା କବି ବିଷୟରେ ଆଉ କେତୋଟି ଗଳ୍ପ ରଚିଛନ୍ତି। ଯେପରି 'ପ୍ରିୟ ବିଦୂଷକ', 'ସବୁ ଅଛି କିଛି ନାହିଁ', 'ଭବିତବ୍ୟ', 'ବାହାର ଲୋକ' ଏବଂ 'କବିତାର ଦୀର୍ଘ ଜୀବନ' (ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ)। 'କଥାଯାତ୍ରା'ର ଆଦ୍ୟରେ ଭବନାଥ (ଶବ୍ଦଭେଦ) ଓ 'ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ' ଶେଷରେ

ଦେବନାଥ (କବିତାର ଦୀର୍ଘ ଜୀବନ) କବିତାର ପ୍ରତିନିଧି ତୁଲ୍ୟ ଦୁଇଟି ବିଷାଦ ସ୍ତମ୍ଭ। ଜଣେ ଧ୍ୱନି, ଅନ୍ୟ ଜଣେ ପ୍ରତିଧ୍ୱନି। ଶବ୍ଦକୁ କବି ଆୟତ୍ତ କରିବା ସହଜ କାମ ନୁହେଁ। ପ୍ରତ୍ୟେକ ଶବ୍ଦ ମାୟାଛନ୍ନତାର ଆବରଣରେ ଥାଏ। ତାକୁ ଅନାବରଣ କରିବାକୁ ହୁଏ। ଏହା ସମ୍ଭବ ହୁଏ ସୁପ୍ରଯୁକ୍ତ ଶବ୍ଦଜ୍ଞାନ ଦ୍ୱାରା। ପତଂଜଳି ଏଥିପାଇଁ ଶବ୍ଦକୁ କାମଦୁଘା ବୋଲି ମନେ କରିଛନ୍ତି। କବିର ମନୋରଥ ପୂର୍ଣ୍ଣ କରି ଶବ୍ଦ ହୁଏ କାମଦୁଘା। କିନ୍ତୁ ଶବ୍ଦ ବ୍ୟବହାର ଏକ କଠିନ ବ୍ୟାପାର। ଗୋଟିଏ ଶବ୍ଦର ବିକଳ୍ପ ନ ଥିଲେ ବ୍ୟବହାରରେ ତାହାର ବିଜୟ ଘଟେ। କିନ୍ତୁ ବିକଳ୍ପ ଶବ୍ଦପୂର୍ଣ୍ଣ ଏ ଜଗତରେ ଶବ୍ଦ ନିର୍ବାଚନ ଯୋଗ୍ୟତା ଦୁଷ୍କର କ୍ରୀଡ଼ା ପରି। ସେଥିପାଇଁ ପ୍ରିୟ ଗାଳ୍ପିକ ମହାଶୟ 'ଶବ୍ଦଭେଦ' ପ୍ରଶ୍ନ ଉଠାଇଛନ୍ତି। ଭବନାଥ ବୁଝିଥିଲା ଶବ୍ଦ ଏକ ଭୟାନକ ବସ୍ତୁ। ଭୟାନକ କଥା ଏଇଥିପାଇଁ ଯେ ଆମେ ଭାବିନେଉ ଶବ୍ଦର ଅର୍ଥ ବୁଝି ଯାଇଛୁ। କିନ୍ତୁ ପ୍ରକୃତରେ ବୁଝି ନ ଥାଉ। ଭବନାଥ ଯଦିବା ପାଗଳ ହୋଇଥାଏ, ତା'ର ମୂଳ ଏଇଠି। କିନ୍ତୁ ଦେବନାଥ କ'ଣ କଲା ? କବିତା ଲେଖୁଥିବା ଯାଏଁ ତା'ର ସମସ୍ୟା ନ ଥିଲା। କବି ବୋଲି ପ୍ରଶଂସା ମିଳୁଥିଲା। ମାତ୍ର ଗୀତର ଦୁନିଆରେ ପ୍ରବେଶ ପରେ ବଦଳିଗଲା ତା'ର ଜୀବନ। କବି ଓ କଳାକାର ଦୁଇଟି ସ୍ୱତନ୍ତ୍ର ସତ୍ତାର ବ୍ୟକ୍ତିତ୍ୱଧାରୀ। କବିଭାବେ ସେ ଶବ୍ଦକୁ ଆୟତ୍ତ କରିଥିଲା। ଏଇ ଗୁଣର ପୂର୍ଣ୍ଣତା ବା ସ୍ୱାତନ୍ତ୍ୟ ନେଇ କବିର ସାର୍ଥକତାର ବିଚାର ହୁଏ। ଏଥିରେ ସଫଳତା ବା ପୂର୍ଣ୍ଣତା ନିର୍ଣ୍ଣୟ କରୁଥିବା ତା' ଭିତରର ଭୋକ୍ତା ମଣିଷ ଓ ସର୍ଜନଶୀଳ ମଣିଷ ମନ କେତେ ପୃଥକ୍। ଟି.ଏସ୍.ଇଲିଅଟ୍ ସତ୍‌କବିର ବିଚାର ବେଳେ ଏଇ ଲକ୍ଷଣଟି ଦେଖିଛନ୍ତି। ତେବେ ଦେବନାଥର ଯେଉଁ ପରିବର୍ତ୍ତନ ଘଟିଲା, ତାହା ତା'ର କୃତକର୍ମ। କଳାକାରଙ୍କ ସହ ସାଙ୍ଗ ହୋଇ ସେ ମଦ ପିଇଛି, କଲିକତାର ହାଡ଼କଟା ଗଳିର ବେଶ୍ୟାଳୟରେ ପହଞ୍ଚିଛି। ଏକ ଅନିୟନ୍ତ୍ରିତ ଜୀବନର ମୋହ କିଛିଦିନ ତାକୁ କରିଛି ଉଦ୍‌ଭ୍ରାନ୍ତ। ବାଧ୍ୟ ହୋଇ ଚାକିରିରୁ ଇସ୍ତଫା ଦେଇ ଶେଷରେ ଫେରିଛି ଗାଁକୁ। ଗାଁର ପରିବର୍ତ୍ତିତ ଦୃଶ୍ୟ, ଘଟଣା, ଲୋକରୁଚି, ବ୍ୟବହାର କେଉଁଟି ହେଲେ ତା' ପାଇଁ ଆକର୍ଷଣୀୟ ନ ଥିଲା। ବହୁ ପୂର୍ବରୁ ସ୍ତ୍ରୀ ଓ ପୁଅ ତାକୁ ଛାଡ଼ି ଯାଇଥିଲେ। ଏବେ ସେ ପୂର୍ଣ୍ଣ ସ୍ୱାଧୀନ। ଗୀତ ବା ସିନେମା ସଂଳାପ ଲେଖି ପାଉଥିବା ଅର୍ଥ ସହ ପେନ୍‌ସନ୍ ଟଙ୍କା ମଦ ପିଇବାରେ ଖର୍ଚ୍ଚ। ଘରଭଡ଼ା ବାବଦକୁ ଭଡ଼ାଟିଆ ବୁଝେ ତା'ର ଖାଇବା ଦାୟିତ୍ୱ। କେଉଁ ଏକ ଟି.ଭି.ର ପ୍ରଯୋଜକ ତା'ଉପରେ ବୃତ୍ତଚିତ୍ର ନିର୍ମାଣ ପାଇଁ ଗାଁକୁ ଆସେ। ସାଥିରେ ଜଣେ ଯୁବ ଅଧ୍ୟାପକ, ଯିଏ ଦେବନାଥର କବିତା ସହ ବେଶ୍ ପରିଚିତ। କବିତା ସଂପର୍କରେ ନାନା ପ୍ରଶ୍ନ ଓ ଉତ୍ତର ସହ ତା'ର ବସିବା, ମଦ ପିଇବା ଭଙ୍ଗୀର ବିଭିନ୍ନ ଠାଣିର ଚିତ୍ର ଉଠାଇ ସାହିତ୍ୟ ବିଭାଗରେ ପ୍ରସାରଣ କରିବାର ପ୍ରତିଶ୍ରୁତି ଦେଲା ପ୍ରଯୋଜକ। ମାତ୍ର ଯୁବ ଅଧ୍ୟାପକ କିଛିଦିନ

ପରେ ଦେବନାଥକୁ ଜଣାଇଲା ଯେ ଦେବନାଥର ଜୀବନଚିତ୍ରକୁ ସାହିତ୍ୟ ବିଭାଗ ପରିବର୍ତ୍ତେ ସାମାଜିକ ବ୍ୟାଧି ବିଭାଗରେ ଦେଖାଇବାକୁ ପ୍ରଯୋଜକ ସ୍ଥିର କରିଛି । ଏଥିରେ ଅଧ୍ୟାପକ କ୍ଷୁବ୍ଧ ଓ ନିରୁପାୟ, କିନ୍ତୁ ସେ ଆଶା କରିଛି ଯେ ଦେବନାଥ କବିତା ଲେଖିବା ଅବ୍ୟାହତ ରଖିବ । ତା'ର କାମନା, କବିତା ହେଉ ଦୀର୍ଘଜୀବୀ ।

ଏପରି ଏକ କାହାଣୀ ଜଣେ କବି ଓ କଳାକାରର । ସେ ସହରରେ ଥିବା ବେଳେ କୁସୁମ ଆସି ତା'ର ଦେଖାଶୁଣା କରୁଥିଲା । କୁସୁମ ନ ଥିଲା ତା'ର କବିତା ପ୍ରତି ମୋହାବିଷ୍ଟ, ତଥାପି କାହିଁକି କେଉଁ ଏକ ଦିବ୍ୟଭାବ ନେଇ ସେ ଆକର୍ଷିତ ହୋଇଥିଲା । ବନ୍ଧୁମାନେ କହୁଥିଲେ କୁସୁମକୁ ବିଭା ହୋଇଯିବା ପାଇଁ; ମାତ୍ର ଦେବନାଥ କୁସୁମ ପ୍ରତି ସେପରି ବାସନା ରଖି ନ ଥିଲା । କୁସୁମର ଅଯାଚିତ ଶ୍ରଦ୍ଧା ଓ ସେବା ସେ ଚାହିଁ ନ ଥିଲା, କିନ୍ତୁ ତା' ଠାରୁ କାଟିପାରୁ ନ ଥିଲା ସଂପର୍କ । କୁସୁମ ବିଭା ହୋଇଯିବା ପରେ ସେ ନିଜକୁ ମୁକ୍ତ ମନେକଲା ଓ ପରେ ଗାଁକୁ ଫେରି ଆସିଥିଲା । ଗାଁରେ ତା'ର ପରିଚୟ ସେ ଗୀତ ଲେଖେ । କେହି କେହି ବି ଜାଣନ୍ତି ସେ କବି । ଗୀତ ଲେଖୁଥିବା ବେଳେ ଶବ୍ଦକୁ ଆୟତ୍ତାଧୀନ କରିବାର ରୀତି ଥିଲା ଭିନ୍ନ । ସ୍ୱର ତାଳ ସହ ଶବ୍ଦର ଧ୍ୱନିଗତ ମୂଲ୍ୟ ଖଂଜିବାକୁ ପଡୁଥିଲା । ଗୀତରେ ମନୋନିବେଶ ପରେ ସେ ଭୁଲିଥିଲା କବିତାକୁ । 'କବିତାର ଦୀର୍ଘ ଜୀବନ' ଗଳ୍ପ ଏକ ଦୀର୍ଘ ନା ନାତିଦୀର୍ଘ (ମାପଦଣ୍ଡଟି କ'ଣ ?) ରଚନା, ଯେପରି 'ସମସ୍ୟା' ଓ 'ଜନ୍ମଦାତା' । ଏହି ତିନୋଟି କୃତି ମଧ୍ୟରେ ପ୍ରଥମ ଦୁଇଟି କାହାଣୀମୂଳକ । ଶେଷଟି (ଜନ୍ମଦାତା) ଏଇ ଅର୍ଥରେ ଗୃହୀତ ହେବା ଉଚିତ ମନେହେଉ ନାହିଁ । ଏଥିରେ କାହାଣୀର ଗତିଠାରୁ ମନନ ଓ ଚରିତ୍ରର ଅନ୍ତର୍ଦ୍ୱନ୍ଦ୍ୱର ବର୍ଣ୍ଣନା ଉଜ୍ଜ୍ୱଳ । 'କବିତାର ଦୀର୍ଘ ଜୀବନ'ରେ କୁସୁମ ଚରିତ୍ର କାହାଣୀକୁ ଦୀର୍ଘ କରିବାରେ ସହାୟକ ହୋଇଛି ବୋଲି ମନେହୁଏ । ଦେବନାଥ ଉପରେ ତା'ର ପ୍ରଭାବ କ୍ଷୀଣ । କୁସୁମ କାହିଁକି ବା କେଉଁ ମନୋଭିଳାଷରେ ଦେବନାଥ ପ୍ରତି ଆକୃଷ୍ଟ, ତା'ର ଉତ୍ତର ମିଳେ ନାହିଁ । ସେ କବିତାପ୍ରିୟ ନୁହେଁ, ବରଂ କବିତା କଥା ପଡ଼ିଲେ ସେ କାନ୍ଦେ । ଜଗନ୍ନାଥ ପ୍ରସାଦ ଚତୁରତା ସଂପାଦିଛନ୍ତି, ଗଳ୍ପର ଶେଷରେ । କୁସୁମ ଲେଖିଛି ତା' ଜୀବନର ପ୍ରଥମ ଚିଠି ଦେବନାଥକୁ । ତା'ର ପୁଅ ବଡ଼ ହେଉଛି, ଘର ସଂସାର ଠିକ୍ ଚାଲିଛି । ତା' ସତ୍ତ୍ୱେ ସେ କହୁଛି, "ତମେ ଯଦି ମତେ କେବେ କହିବ ମୋ ପାଖକୁ ଚାଲି ଆ ବୋଲି, ମୁଁ ସେଇ ମୁହୂର୍ତ୍ତରେ ସବୁକିଛି ଛାଡ଼ି ଦେଇ ତମ ପାଖକୁ ଫେରିଆସିବି" (ପୃ.୯୬) । ସଂପନ୍ନ ପରିବାର ପାଇଥିବା ସତ୍ତ୍ୱେ କୁସୁମ କାହିଁକି ଦେବନାଥ ପାଖକୁ ଫେରିଆସିବ ? ପ୍ରସଙ୍ଗଟିରେ କୌଣସି ଯୁକ୍ତି ଥିବା ପରି ଏକଦା ମନେହୁଏ ନାହିଁ । ଦେବନାଥ ପ୍ରତି ଭଡ଼ାଟିଆ ହରିମାଷ୍ଟ୍ର ବ୍ୟତୀତ ଅନ୍ୟ କେହି ସମ୍ବେଦନଶୀଳ ନ ଥିଲେ । ଏକଦା କବିତା ବ୍ୟତୀତ ଅନ୍ୟ କେହି

ନ ଥିଲେ ଦେବନାଥ ପାଖରେ । ସେ ନିଜକୁ ପ୍ରତ୍ୟାହାର କରି ଆଣିଥିଲା ସବୁଥିରୁ; ଚାହିଁଥିଲା ନିଃସଙ୍ଗ ଜୀବନ । ତାହା ମଧ୍ୟ ପାଇଗଲା । ତେବେ କୁସୁମ ପାଇଁ ସମ୍ଭବତଃ ଲେଖକ କହିବାକୁ ଚାହିଁଛନ୍ତି, କବିତା ଅପେକ୍ଷା କବି ଅଧିକ ପ୍ରିୟ । ଗଳ୍ପଟିର ଆଦ୍ୟୋନ୍ତ କଥନିକା ହେଉଛି ଏକାକୀ ନିଃସଙ୍ଗ ଜୀବନ କଟାଉଥିବା ଜଣେ ମଦ୍ୟପ କବି ଜୀବନର କାହାଣୀ । ବର୍ଣ୍ଣନାର ଆରମ୍ଭ ଓ ଶେଷ ମଧ୍ୟରେ ହୁଏତ ସକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ କାଳଖଣ୍ଡଟିଏ । ମଦ୍ୟପାନ ଆଶାରେ ଘରୁ ବାହାରି ଯିବା ପରେ ଖରାବେଳେ ସେ ଫେରିପାରି ନାହିଁ ନିଶାସକ୍ତ ହେତୁ; ଡେରିରେ ହୋସ୍ ଆସିବାରୁ ଉଠି ଠିଆ ହେଉଛି ଘରକୁ ଫେରିବ । ଏଇ ମଝି ଅଂଶରେ ଅତୀତ କଥାର ବର୍ଣ୍ଣନା ରହୁଛି । କ'ଣ କହୁଛନ୍ତି ପ୍ରିୟ ଗାଳ୍ପିକ ? ଏୟା ନା-କବିତା, ଗୀତ, କଳା ସବୁ ମ୍ରିୟମାଣ ହେବା ପରେ କେବଳ ରହେ ବେଦନା, ନିଃସଙ୍ଗତା ଏବଂ କିଛି ସ୍ମୃତି । କବି ପାଇଁ ସେଇ ସ୍ମୃତି ହିଁ ଜୀବନବୋଧର ଅନ୍ୟତମ ଅଂଶ, ଯାହାକୁ ପରାବାସ୍ତବତା ବୋଲି କହିହେବ । ଭବନାଥ ଏପରି ଜୀବନ ଚାହିଁ ନ ଥିଲା ନୁହେଁ, ସେ ସୁଯୋଗ ପାଇଥିଲେ ଗୀତ ରଚନା ପାଇଁ ଦେବନାଥ ପରି ହେବା ଅସମ୍ଭବ ନ ଥିଲା । ଦୁହେଁ ଅନ୍ତର୍ମନରେ ଏକାକୀ; ପ୍ରତ୍ୟାହାରଶୀଳ ଜୀବନର ପକ୍ଷପାତୀ । ଶବ୍ଦ ହିଁ ତାଙ୍କ ପାଇଁ କଥା କୁହେ ଓ ଉଭୟଙ୍କ ମଧ୍ୟରେ ଚାଲେ ବାର୍ତ୍ତାଳାପ । ଭବନାଥ ତାହା ହିଁ କରିଥିଲା । ଏବେ ଦେବନାଥ ପରବର୍ତ୍ତୀ ଅବସ୍ଥାରେ ଉପନୀତ । ଶବ୍ଦମାନେ ଗୀତ ହୋଇ ଶୁଣାଇବେ ଜୀବନର କରୁଣ ରାଗିଣୀ । ତାହାକୁ ଶୁଣିବାକୁ କେହି ନ ଥିବେ । କିନ୍ତୁ ଥିବ କବି, ଦୁଃଖ, ବେଦନା । ଆର୍ତ୍ତ ମଣିଷର ପ୍ରତିନିଧି ହୋଇ ଦେବନାଥ ଭବନାଥର ଉଦ୍ଦେଶ୍ୟ ପୂରଣ କରିବ; ସେ ବଞ୍ଚିବ ଯାନୋବିଧୃତ ବିଗ୍ରହ ନେଇ ।

'କଥାଯାତ୍ରା'ର ଚରିତ୍ର ଅନେକ, ଜଣେ ମାତ୍ର ଅଭିନେତା । ସେ ହିଁ ସ୍ୱୟଂ ଲେଖକ; ଏକକ ଅଭିନୟ କୁଶଳୀ ଜଣେ ସ୍ରଷ୍ଟା । ଯାତ୍ରାର ଦୀର୍ଘ ପଥରେ ମଣିଷର ଆବିଷ୍କାର ହେଉଛି ଗଳ୍ପ କଥନର ଉଦ୍ଦେଶ୍ୟ । ସେ ବିଦୂଷକ ପରି ପ୍ରିୟ । କାରଣ ଲେଖକ ଅନୁଭୂତିର ପାହାଡ଼ ଶୀର୍ଷରେ ଠିଆ । ପାଦ ହଲିଲେ, ତଳେ ବିଷମ ବିବର । ସ୍ୱଚ୍ଛ ଜଳଧାର ଗଡ଼ିଯିବା ପରି ପଳାଇ ଯାଉଛି ସମୟ; ତା' ଭିତରେ ଭାସି ଚାଲିଛନ୍ତି ଚରିତ୍ର । କାହାକୁ ସେ ହାତ ଧରି ଟାଣି ଆଣିବେ ଏବଂ କାହିଁକି ? ସ୍ରଷ୍ଟା ତ୍ରାଣକର୍ତ୍ତା ନୁହନ୍ତି; କାହାକୁ ସେ ଅଧୀନସ୍ଥ କରିବେ ? ପ୍ରତ୍ୟେକ ଚରିତ୍ର ନିଜର ସ୍ୱାଧୀନତା ଘୋଷଣା କରନ୍ତି, ଚରମ ଅବସ୍ଥା ହୁଏତ ଭୋଗନ୍ତି । ଲେଖକ କେବଳ ବିଦୂଷକ ହୋଇ ଲକ୍ଷ୍ୟ କରେ-ସେମାନେ କ'ଣ କରନ୍ତି । ସେ ବିଚଳିତ ହେଲେ ଦେଖିବାର ଇଚ୍ଛା ସନ୍ତୋଷଜନକ ହୁଏ ନାହିଁ । ସେ ନିର୍ବିକାର, ନିଶ୍ଚଳ, ପକ୍ଷପାତଶୂନ୍ୟ; ନା ଥାଏ ଆବେଗ ନା କଂପନ, ନା ଦୁଃଖ ବା ସହାନୁଭୂତି । କେବଳ ଗୋଟିଏ ସର୍ତ୍ତ, ସେ ଯାହା ଦେଖିବେ, ନିର୍ମମ ଭାବେ ତାହା ବର୍ଣ୍ଣନା

କରିବେ (ପ୍ରଫେସର ଦାଶରଥି ଦାସଙ୍କୁ ସ୍ମରଣ କରୁଛି)। ଏଇ ନିର୍ଲିପ୍ତଭାବ ଜଣେ ସ୍ରଷ୍ଟାକୁ ଅହଂମୁକ୍ତ କରେ; ଅପରପକ୍ଷରେ ଜୀବନବୋଧ ପ୍ରତି ଅଙ୍ଗୀକାର ମୁଣ୍ଡ ଟେକେ। ବିସ୍ମୟ ବା କୌତୂହଳ ତାଙ୍କୁ ଅଧୀର ବା ଆନମନା କରେ ନାହିଁ। ଚରିତ୍ରକୁ ନିୟନ୍ତ୍ରଣ କରିବାର ସ୍ୱାଧୀନତା ଲେଖକଙ୍କର ଥାଏ କି ? ନ ଥାଏ ବୋଲି ବିଦୂଷକ ପ୍ରିୟ। ଆହା ଲେଖକ ! କେତେ ଆୟାସ ନ କରେ ଚରିତ୍ରକୁ ନିଜ ମନର ଗଣ୍ଡିରେ ବାନ୍ଧିବାକୁ, ନିଜ ରୁଚିରେ ସୁନ୍ଦର କରିବାକୁ; କିନ୍ତୁ ତାଙ୍କୁ ନିରାଶ ହେବାକୁ ହୁଏ। ସେ ଦେଖନ୍ତି ସଂସାର ମାୟାମୃଗ ପରି ଟାଣେ। ମାୟାମୃଗ ବୋଲି ଜାଣିବା ସତ୍ତ୍ୱେ ସେ ଦୌଡ଼ନ୍ତି ମୃଗ ପଛରେ। ସେଥିରେ ଆନନ୍ଦ। ଶିଳ୍ପପତି ଅନଙ୍ଗଙ୍କର ପତ୍ନୀ ମାନସୀ ଶରୀରରେ ଭୋଗିଲେ ମେଦବହୁଳତା। କ୍ଲବରେ ଖେଳ ଆଦି ପରେ ତାଙ୍କର ସଉକ ହେଲା ନାଟକ କରିବେ। 'ମାୟାମୃଗ' ନାଟକ ଅଭିନୀତ ହେବ। ମାନସୀ ହେବେ ସୀତା, ଯଦି ସତକୁ ସତ ହରିଣଟିଏ ଆସେ। ପତ୍ନୀଙ୍କର ଇଚ୍ଛା ପୂରଣ ପାଇଁ ବହୁଶ୍ରମ ଶେଷରେ ସତ ହରିଣଟିଏ ମିଳିବା ବେଳକୁ ଶୁଣିଲେ ନାଟକ ବନ୍ଦ ଏବଂ ମାନସୀ ଚାଲି ଯାଇଛନ୍ତି ବମ୍ବେ। ଅନଙ୍ଗ ଦେଖିଲେ ଯେଉଁ ପରିବାରରୁ ହରିଣ ଆଣିଥିଲେ, ସେ ପରିବାରରେ ସୀମିତତା ସତ୍ତ୍ୱେ ଥିଲା ଆନନ୍ଦ ଓ ପାରସ୍ପରିକ ପ୍ରେମ ବନ୍ଧନ। ଆନନ୍ଦର କେନ୍ଦ୍ରବିନ୍ଦୁ ପରି ଏକ ଉପଲକ୍ଷ ଥିଲା ହରିଣ। କିନ୍ତୁ ଅନଙ୍ଗଙ୍କର ସବୁ ଥାଇ ମଧ୍ୟ ସଂସାର ଲାଗୁଥିଲା ମାୟାମୃଗ ସମ।

ଜଗନ୍ନାଥଙ୍କ ଗଳ୍ପ ବିଷୟରେ ତିନୋଟି ମନ୍ତବ୍ୟ ଏଠାରେ ସ୍ମରଣ କରାଯାଉ। ୧-ଜଗନ୍ନାଥ ପ୍ରସାଦଙ୍କ କ୍ଷୁଦ୍ରଗଳ୍ପ ରଚନା କାଳ ଓଡ଼ିଶା ଓ ଓଡ଼ିଆ ସମାଜର ଏକ ଘଡ଼ିସନ୍ଧିକାଳ। ବ୍ୟାପକ ଶିକ୍ଷା, ବିଶେଷତଃ ନାରୀ ଶିକ୍ଷାର ପ୍ରସାର, ଶିଳ୍ପାୟନ ତଥା ନଗରୀକରଣ, ଓଡ଼ିଆ ସମାଜର ଜୀବନଶୈଳୀରେ ବିପୁଳ ପରିବର୍ତ୍ତନ, ସାଂସ୍କୃତିକ ଜୀବନରେ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ଭାବଧାରାର ଅନୁ(?)ପ୍ରବେଶ- ଏ ସବୁକୁ ନିଜ କ୍ଷୁଦ୍ରଗଳ୍ପରେ ରୂପଦାନ କରିଛନ୍ତି ଜଗନ୍ନାଥ ପ୍ରସାଦ। ସେ ଆମ ସମୟର ଅନ୍ୟତମ ପ୍ରମୁଖ ଭାଷ୍ୟକାର-ତାଙ୍କ କ୍ଷୁଦ୍ରଗଳ୍ପ ସବୁ ଆମ ସମାଜର ମାନସିକତାର ଏକ ସ୍ୱଚ୍ଛ ଆଲେଖ୍ୟ (ଜଗନ୍ନାଥ ପ୍ରସାଦ-ସୃଜନ ଯାତ୍ରା-ପୃ.୯୧)। ୨-କ୍ଷୁଦ୍ରଗଳ୍ପଗୁଡ଼ିକର ରଚନା ଶୈଳୀ ମାର୍ଜିତ, ସାବଲୀଳ; ଅନେକ ସମୟରେ ସିଧାସଳଖ ଭାଷା ଶୈଳୀର କାରୁକାର୍ଯ୍ୟ ଅପେକ୍ଷା ଜୀବନର ଗଭୀରତା ଓ ସୂକ୍ଷ୍ମ ସଂଘାତ ଉପରେ ଗୁରୁତ୍ୱ ଅଧିକ। ଜୀବନ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ବହୁ ସମୟରେ ଅନ୍ତର୍ମୁଖୀ। ବାହ୍ୟଘଟଣା ବା ଦୃଶ୍ୟ ଏହି ଅନ୍ତର୍ମୁଖୀନତା ସୂଚାଇଦିଏ। ପ୍ରଶ୍ନଟିଏର ଉତ୍ତର ନିର୍ଣ୍ଣୟ କରିବା ଅପେକ୍ଷା ପ୍ରଶ୍ନଟିଏ ପଚାରିବା ଯେପରି ତାଙ୍କର ବହୁ କ୍ଷୁଦ୍ରଗଳ୍ପର ଶେଷକଥା (ତତ୍ରୈବ)। ୩- ପରିଚିତ ପୃଥିବୀରୁ ଅପରିଚିତ ପୃଥିବୀରେ ପହଞ୍ଚାଇ ଦେବା ଜପ୍ରଦାଙ୍କ ଗଳ୍ପର ବିଶେଷତ୍ୱ (ମୀନାକ୍ଷି ମୁଖାର୍ଜୀ)। ପ୍ରଥମରୁ

ମନେହୁଏ, ନାଟକୀୟତା ନୁହେଁ ସଲିଲକି ବା ନିଜସ୍ୱ ସଂଳାପ ଜପ୍ରଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକର ମୂଳ ନିର୍ଯ୍ୟାସ (ହିମାଂଶୁ ଶେଖର ମହାପାତ୍ର), ଜପ୍ର–ସ୍ମୃ.ଯାତ୍ରା, ପୃ.୯୧ । କଥିତ ଅନୁଶୀଳନ ଅବଧାରିତ ସତ୍ୟ ପରି ମନେହୁଏ । ଗଳ୍ପର ବିଷୟ ସାଂପ୍ରତିକ ଓଡ଼ିଶାର ସମାଜ ଓ ଜୀବନର ଛବି । ଗାଳ୍ପିକ ଭାବେ ସେ ଘଟଣାର ଅବତାରଣା କରନ୍ତି ଚରିତ୍ରର ଅନ୍ତର୍ଜଗତର ରୂପ ଆବିଷ୍କାର ପାଇଁ । ଉଦାହରଣ ପ୍ରତୁଳ, ଯଥା 'ଦୁଃସ୍ୱପ୍ନ' ଗଳ୍ପ । ଅବିନାଶ ସ୍ୱପ୍ନ ଦେଖିଲା, ମୁହୂର୍ତ୍ତକ ପାଇଁ ଭଗବାନ ତା' ସାମନାରେ ଠିଆ ହେଲେ ଏବଂ କହିଲେ, 'ତୋର ବେଳ ହୋଇଗଲା, ଏଥର ମୋ ପାଖକୁ ଚାଲି ଆ' । (ଭବନାଥ ଓ ଅନ୍ୟମାନେ) କଳ୍ପନା ବହିର୍ଭୂତ ଏ ସ୍ୱପ୍ନ ବ୍ୟଥିତ କଲା ଓ ତା' ମନକୁ ଆସିଲା ମୃତ୍ୟୁ ବିଷୟକ ଭୟଙ୍କର ଦୃଶ୍ୟ । ଗଳ୍ପଟି ସୁସଂଯୋଜିତ । ମୃତ୍ୟୁ ଚିନ୍ତା ଅସ୍ଥିର କରୁଥିବା ବେଳେ ଆଖି ଆଗରେ ଘଟୁଥିବା ଦୃଶ୍ୟ ଅବିନାଶ ପାଇଁ ମୃତ୍ୟୁର ସଙ୍କେତାତ୍ମକ ଚିତ୍ର ପ୍ରସ୍ତୁତ କରୁଛି । ଦୃଶ୍ୟ ଓ ଅନୁପମ ଭାଷାରେ ଚରମ ଅସହାୟ ଓ ବିଷାଦର ଚିତ୍ର ଆଙ୍କିଦେଉଛି । ଦୁର୍ବଳ ମନର ଏଇ ଦୃଶ୍ୟାବଳୀ ଅନ୍ତରର ସୀମାହୀନ ଅକର୍ତ୍ତୃତ୍ୱବୋଧ, ଆତ୍ମପୀଡ଼ନ, ଅବାସ୍ତବତା ପାଖରେ ବ୍ୟକ୍ତିତ୍ୱର ସମର୍ପଣ, ବିଷାଦର କଳା ବିଭୀଷିକା-ଏସବୁ ଯେମିତି ଖୋଲିଦିଏ ଅନ୍ତର୍ମନର ରହସ୍ୟ ।

ମଣିଷର ଅନ୍ତର୍ମନର ରହସ୍ୟ ଖୋଲିବା ମନୋବିଜ୍ଞାନର କାମ । କିନ୍ତୁ ସାହିତ୍ୟିକ / ଗାଳ୍ପିକ ସେ ଜଗତରେ ପଶିବ ନାହିଁ, ଏପରି କଥା ନୁହେଁ । କିନ୍ତୁ ସେହି ପ୍ରବେଶ ମନୋବିଜ୍ଞାନ ଧାରାରେ ନ ହୋଇ ସାହିତ୍ୟ ଧାରାରେ ସାଧାରଣତଃ ହୋଇଥାଏ । ଏଇଟି ଜଗତର ଅପରିବର୍ତ୍ତନୀୟ ଭାବାତ୍ମକ ତତ୍ତ୍ୱ: ତାହା ହେଉଛି ମୃତ୍ୟୁଚିନ୍ତାରେ ଜଣେ ବିଚଳିତ ହେବ, କାମବାସନାରେ ଜାଗିବ ଆତୁରତା, ଈଶ୍ୱର କଥା ଉଠିଲେ ଅଲକ୍ଷ୍ୟରେ ହାତ ଟେକି ହେଇଯିବ-ଏହିପରି ମୌଳିକ ପ୍ରବୃତ୍ତିମାନ ଚଞ୍ଚଳ ହେବ । ଲେଖକର ଅନୁଭୂତି ଏଇପରି ପ୍ରବୃତ୍ତି ଚାଳିତ ଆଚରଣରୁ ସଂଗୃହୀତ ହୋଇପାରେ ଏବଂ ଲେଖକ ପାଇଁ ବୌଦ୍ଧିକ ବିଚାରର ଉପାଦାନ ଖଞ୍ଜିଦିଏ । ସେଇ ବୌଦ୍ଧିକ ବିଚାରରୁ ଜୀବନବୋଧ ସହ ସାଦୃଶ୍ୟ ବା ବୈସାଦୃଶ୍ୟ ଉତ୍ପନ୍ନ ହୁଏ । କେହି କେହି ଏହି ବୋଧକୁ ନୈତିକତାର ମାପଦଣ୍ଡରେ ଦେଖନ୍ତି । ପ୍ରସଙ୍ଗକ୍ରମେ ଜଗନ୍ନାଥ ପ୍ରସାଦ ସେପରି ନିଷ୍ଠୁର ଭାବବାଦୀ ବା ନୀତିତତ୍ତ୍ୱବାଦୀ ପରି ଜୀବନବୋଧକୁ ଦେଖି ନାହାନ୍ତି । ତାଙ୍କର ବ୍ୟକ୍ତିଗତ ଧାରଣା, ବିଶ୍ୱାସ ବା ମୂଲ୍ୟାଙ୍କନର ଆଖିରେ ସେ ଘଟଣା ଓ ଚରିତ୍ରକୁ ଦେଖୁ ନାହାନ୍ତି, ଏହା ହିଁ ଗଳ୍ପକଥନରେ ତାଙ୍କର ପାରଗପଣର ବିଶେଷତା । ସେ ଯାହା ଦେଖୁଛନ୍ତି, ତାହା ଦେଖାଇବାକୁ ଚାହୁଁଛନ୍ତି । ସେଥିରେ ଥାଇପାରେ ବ୍ୟକ୍ତିର ବିଷାଦ ବା କାତରତା ବା ଆନନ୍ଦ । ଏଇ ଯେମିତି 'ଏକା ଏକା' (ଇଚ୍ଛାପତ୍ର) ବା 'ପୂଜାସ୍ୱଦେଷୁ' (ଶେଷ ପର୍ଯ୍ୟନ୍ତ)ରେ ଯଥାକ୍ରମେ ରଂଜନା ଓ ମଲ୍ଲିକା ଦୁଇ ନାରୀ ଚରିତ୍ରର କାହାଣୀ । ରଂଜନା ସ୍ୱାମୀ ସନ୍ତାନଙ୍କ ଗହଣରେ ଥାଇ ସାମୟିକ ଏକୁଟିଆ ଥିବା ବେଳେ

ଆସୁଛି ନିର୍ଜନତା ଓ ଏକାକୀତ୍ୱବୋଧ। ଏଇ ସମୟରେ ଗୋଟାଏ କିଛି ନିଜସ୍ୱ କାମ କରିବାର ଥିଲା, ଯାହା ନିଃସଙ୍ଗ ଥିଲା ବେଳେ କରାଯାଇପାରେ (ପୃ.୮୨୯)। ସେଉଠୁ ସେ ମନେପକାଉଛି ଅତୀତ ଘଟଣା। ତାଙ୍କର ସ୍ୱାମୀ ତା' ପାଇଁ ସ୍ଥାନୀୟ କଲେଜରେ ଅଧ୍ୟାପିକା ଚାକିରି କରାଇ ଦେଲେ; ସେ ଗବେଷଣା କାମରେ ଲଣ୍ଡନ ଗଲା। ନିଗ୍ରୋ ସହାୟକ ବନ୍ଧୁ ଜାଭେଦ ତା'ର ସ୍ମରଣକୁ ଆସିଲା। ସନ୍ଧ୍ୟା ପ୍ରହରର ଏକାନ୍ତ ରାତିରେ ସେ ଭିନ୍ନ ଭିନ୍ନ ବେଶରେ ନିଜକୁ ସଜାଇଲା; ସନ୍ତୋଷ ମିଳିଲା ନାହିଁ। ଶେଷରେ ଉଲଗ୍ନ ଅବସ୍ଥାରେ ଖଟରେ ଶୋଇ ଅନୁଭବକୁ ଆଣିଲା ଲଙ୍ଗଳା ଦେହର ପ୍ରତ୍ୟଙ୍ଗଗୁଡ଼ିକର ରୋମାଞ୍ଚ। ଜାଭେଦକୁ (ବଳିଷ୍ଠ ଯୁବ ଶରୀରକୁ) ମନେପକାଇ ମଧ୍ୟ ତାକୁ ନିଜେ ମୂର୍ତ୍ତିମନ୍ତ କରିପାରିଲା ନାହିଁ। ଶେଷରେ ନିଜର ସମସ୍ତ ଚେତନା ଦେଇ ଆବାହନ କଲା ଶ୍ରୀମନ୍ତକୁ, ଯିଏକି କଲେଜର ଜଣେ ସୌମ୍ୟଦର୍ଶୀ ଅଧ୍ୟାପକ। ତା' ବିଷୟରେ ଅଧ୍ୟାପିକାଏ ନାନା ଖରାପ କଥା କୁହନ୍ତି। ସେ କେବଳ ଶୁଣେ। ଏବେ ସେ ତା'ର ନିର୍ଜନ ମୁହୂର୍ତ୍ତର ଅନ୍ତରର ପୁରୁଷ। ଜଣେ ସଂସାରତୃପ୍ତ ପତ୍ନୀ, ସ୍ୱାମୀ ବହୁପାରିଲା ସୁନ୍ଦର କର୍ତ୍ତା; ମାତ୍ର ତେବେ ବି ସେ ଭୋଗେ ଶରୀରର ଅତୃପ୍ତି! ସାମୟିକ ନିଃସଙ୍ଗତା, ଅତୀତର ବନ୍ଧୁଲଗ୍ନ ମୁହୂର୍ତ୍ତକୁ ସ୍ମରଣ କରୁଛି। ଜାଣୁଛି, ଜାଭେଦ ସମର୍ଥ ପୁରୁଷ, ମାତ୍ର ଅନାଗ୍ରହୀ। (ଲଣ୍ଡନ ଛାଡ଼ିବା ପୂର୍ବ ରାତିରେ ତାକୁ କହିଥିଲା, ଆଲାର୍ମ ଦରକାର ନାହିଁ; ଡାକିଦେବ, କବାଟ ଖୋଲା ରଖୁଛି।)

ଶ୍ରୀମନ୍ତ ବିଷୟରେ ସେ ଅବଗତ। ସେଇପରି ପୁରୁଷ ଏବେ ତା'ର ଲୋଡ଼ା। ଭର୍ତ୍ତୃହରି ମନେପଡୁଛନ୍ତି। କହିଲେ, "ନାରୀର ପ୍ରିୟତମ କିଏ? ବାର୍ତ୍ତାଳାପରେ ଜଣକ ସହ, ହାବଭାବରେ ଆଉ କିଏ ଜଣେ ଓ ମନରେ ଅନ୍ୟ କେହି ରାଜୁତି କରେ"।

ଏବେ 'ପୂଜାସ୍ୱଦେଷ୍ଟୁ'ର ମଲ୍ଲିକା। ସ୍ୱାମୀ ଅଭୟ ତାକୁ ଛାଡ଼ିଛି। ଏକାକୀତ୍ୱର ଯନ୍ତ୍ରଣା ଉପଶମ ହେଉଛି ସୋମପ୍ରକାଶଙ୍କ ରଚିତ 'ମହାଜୀବନ' ଉପନ୍ୟାସ ପଢ଼ି। ଲେଖକ ଓ ଉପନ୍ୟାସ ଉଭୟ ମହାନ। ତାଙ୍କୁ ସେ ସାକ୍ଷାତ କରିଛି। ତାଙ୍କର ବୟସ ସତୁରିରୁ ଉର୍ଦ୍ଧ୍ୱ। ଜୀର୍ଣ୍ଣଶୀର୍ଣ୍ଣ କଳେବରକୁ ଲୁଚାଇବା ପାଇଁ କୃତ୍ରିମ ଅଙ୍ଗଭୂଷଣର ଅଧୀନ। ମଲ୍ଲିକା ତାଙ୍କୁ ନିଜର ଦାମ୍ପତ୍ୟର ସବୁ ଗୋପନ କଥା ଶୁଣେଇଛି। ଶେଷରେ ସୋମପ୍ରକାଶ ତାକୁ କହୁଛି "ଅଭୟକୁ ତୁ ଭୁଲି ଯା। ଜୀବନର କୌଣସି ଅତୀତ, ବର୍ତ୍ତମାନ ନାହିଁ; ଜୀବନ ହେଉଛି ଏକ ସମ୍ଭାବନାପୂର୍ଣ୍ଣ ଭବିଷ୍ୟତ। ଆଜିଠାରୁ ତୁ କେବଳ ମୋରି ହୋଇ ରହିବୁ"। ମହାନ ଲେଖକ ହେତୁ ତାଙ୍କ ପାଖରେ ଭିନ୍ନ ଭିନ୍ନ ନାରୀଙ୍କ ସମାବେଶ; କିନ୍ତୁ ମଲ୍ଲିକା ପରି କେହି ନିଜକୁ ସମର୍ପଣ କରିନାହିଁ। ଭର୍ତ୍ତୃହରି ଏଥକୁ କ'ଣ କହିବେ? ପୁରୁଷ ମନରେ ସତତ କ'ଣ ଜଣେ ନାରୀ ବିଳାସ କରେ?

କାମନାବାସନାରେ ଲିଙ୍ଗଭେଦ ଥାଏ କି ? ଏଠାରେ ଲିଙ୍ଗଭେଦ ପ୍ରସଙ୍ଗ ନୁହେଁ। ପ୍ରସଙ୍ଗ ହେଉଛି ବ୍ୟକ୍ତିର କାମନା। କାମନାର ସ୍ଥାନ ଇନ୍ଦ୍ରିୟ, ମନ ଓ ବୁଦ୍ଧି। କାମନାଦ୍ୱାରା ଜ୍ଞାନ ଆଚ୍ଛାଦିତ ହୋଇ ରହୁଥିବାରୁ ଏହା ମୋହସିକ୍ତ କରେ। ପ୍ରଜ୍ୱଳିତ ଅଗ୍ନିରେ ଘୃତାହୁତି ଅଗ୍ନିକୁ ଶାନ୍ତ କରି ନ ପାରିବା ପରି କାମର ନିର୍ବାଣ ଅସମ୍ଭବ। ସୋମପ୍ରକାଶ ଗତାୟୁ ହେଲେ ମଧ୍ୟ କାମବିକାରମୁକ୍ତ ନୁହେଁ। ରଂଜନା ସ୍ୱଭାବତଃ ମୌନ; ସ୍ୱାମୀର କାର୍ଯ୍ୟବ୍ୟସ୍ତତା  ତା'ର ଇଚ୍ଛା ପୂରଣରେ ବାଧକ। ମଲ୍ଲିକା ସ୍ୱାମୀତ୍ୟକ୍ତା। ନାରୀ ଦୁଇଙ୍କ କ୍ଷେତ୍ରରେ କାମଭାବ ଅପରିତୃପ୍ତ ବାସନାର ଅଂଶ, କିନ୍ତୁ ସୋମପ୍ରକାଶ ପାଇଁ ତାହା ଏକ କୃତ୍ରିମ ବିଳାସ। ଏକପକ୍ଷରେ ନିଃସଙ୍ଗତାର କଣ୍ଟକିତ ଯାତନା, ଅପରପକ୍ଷରେ ବାର୍ଦ୍ଧକ୍ୟର ଅସହାୟତା-ଏପରି ଦୁଇ ଦିଗରେ କାମାଚାର ପ୍ରବୃତ୍ତି ଚରିତ୍ର ତିନୋଟିକୁ ଆଚ୍ଛନ୍ନ କରିଦେଇଛି।

କ୍ଷୁଦ୍ରଗଳ୍ପ ଚରିତ୍ରର ସଂସାର। ସେମାନେ ନିଜ ନିଜର କଥା କୁହନ୍ତି। ସେମାନେ ଯାହା ଏବଂ ଯେମିତି, ଅନୁରୂପ ଗଢ଼ିବାକୁ ଚାହିଁଛନ୍ତି ଗାଳ୍ପିକ। ସେମାନଙ୍କ ନିସର୍ଗ ପ୍ରକୃତି ରାଜ୍ୟରେ ସେ ପ୍ରବେଶ କରି ସେମାନଙ୍କୁ ଚିହ୍ନାଇଛନ୍ତି। ସେ ଫାଣ୍ଟାସିର ଘୋର ବିରୋଧୀ, ଅନୁରଂଜନର ଅପକ୍ଷଧାରୀ, ଯାହା ସ୍ୱଭାବସୁଲଭ। ପରିମିତ ବର୍ଣ୍ଣନାରେ ସେ ବିଳାସ କରନ୍ତି। ଏଣୁ ଦୀର୍ଘତା ନୁହେଁ, ଗଭୀରତା ତାଙ୍କ ଗଳ୍ପର ଏକ ବଡ଼ ଗୁଣ। ଗଳ୍ପକୁହା ଢଙ୍ଗ ଚମତ୍କାର, ଅକୃତ୍ରିମ। କଳ୍ପନାର ରଙ୍ଗ ତାକୁ ବିବର୍ଣ୍ଣ କରିପାରେ ନାହିଁ। ଚରିତ୍ର, ଲେଖକଙ୍କ ଆଖିରେ ସତ୍ତା ହରାଇବା ପରି ଦିଶେ ନାହିଁ। ଏଣୁ ସ୍ୱାଭାବିକତା ହିଁ ତାଙ୍କ ଗଳ୍ପର ଯାଦୁ। ବର୍ଣ୍ଣନା ବିସ୍ତାର ନାହିଁ; ସେ ମିତବାକ୍ ଓ ବାସ୍ତବବାକ୍। କଳା ମାତ୍ରକେ ଅନୁରଂଜନ ବୋଲି ଯାହା କୁହାଯାଏ, ସେଥିରୁ ବ୍ୟବଧାନ ରକ୍ଷା କରନ୍ତି ଜପ୍ରଦା। କିନ୍ତୁ ପରିବେଶ ବା ଚରିତ୍ରଠାରୁ ନୁହେଁ। 'ଏକା ଏକା', 'ପୂଜାସ୍ୱଦେଷୁ', 'ମନ୍ତ୍ର' ପରି କେତୋଟି ଗଳ୍ପ ମନେପକାଇ ଦିଏ, ଚରିତ୍ରର ବ୍ୟକ୍ତିଗତ ରୂପ କେତେ ପାଟକନାରେ ଜଉମୁଦଦିଆ ହୋଇପାରେ। ରଂଜନାର ଦେହର ଆକର୍ଷଣ, ସୋମପ୍ରକାଶଙ୍କ ଆଦର୍ଶ ଲେଖକ ଜୀବନର ଅନ୍ତରାଳରେ ଥିବା କାମାଚାର, ବାବାଙ୍କର ଭ୍ରଷ୍ଟାଚାର–ଆଧୁନିକ ଜୀବନର ଛଳନା, ପ୍ରତାରଣା କଥା ମନେ ପକାଇଦିଏ। ଲେଖକ ଭାବେ ଜଗନ୍ନାଥ ପ୍ରସାଦ ଦାସ ଘଟଣା ସହ ଚରିତ୍ରକୁ ଯୋଡ଼ି ଦେଖିଛନ୍ତି ଅଣୁବୀକ୍ଷଣ ଆଖିରେ-ଏମାନେ କେତେ ବିଷାଦ ଭୋଗ କରନ୍ତି ବ୍ୟକ୍ତିଗତ ଜୀବନରେ। ଏ ବିଷାଦ ସ୍ଥୁଳ ନୁହେଁ; ଏଣୁ ତାକୁ ଚିହ୍ନିବାରେ ବିଳମ୍ବ ହୋଇପାରେ। ବିଷାଦର କାରଣ ଚରିତ୍ର ନିଜେ। ସେ ବିଷାଦବୃତ୍ତରୁ ରକ୍ଷା ପାଇବା ସହଜ ନୁହେଁ।

■ ■

# ଦେଶ କାଳ ପାତ୍ର : ଏକ ମୁଗ୍ଧ ପାଠକୀୟ ଅନୁଭୂତି

**ବିଭୂତି ଭୂଷଣ ପ୍ରଧାନ**

ଜଗନ୍ନାଥ ପ୍ରସାଦ ଦାସ ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ନିଜେ ନିଜର ପରିଚୟ । ଜଣେ କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ଗବେଷକ ଓ ଚିତ୍ରଶିଳ୍ପୀ ଭାବେ ତାଙ୍କ ସ୍ଥାନ ସ୍ୱତନ୍ତ୍ର ଓ ସୁନିର୍ଦ୍ଦିଷ୍ଟ । ତାଙ୍କର ମାର୍ଜିତ ରୁଚିବୋଧ, ପ୍ରଗାଢ଼ ପ୍ରଜ୍ଞା, ଗଭୀର ଅନ୍ତର୍ଦୃଷ୍ଟି, ତୀବ୍ର ଅନୁସନ୍ଧିତ୍ସା, ସମ୍ବେଦନଶୀଳ ମନୋଭାବ ଅଥବା ଉଦାତ୍ତ ମାନବବାଦୀ ଦୃଷ୍ଟିକୋଣର ବିଶେଷ କୌଣସି ପରିଚୟ ଦେବା ନିଷ୍ପ୍ରୟୋଜନ। ଅନୁରୂପ ଭାବେ ଆଲୋଚ୍ୟ ଉପନ୍ୟାସ 'ଦେଶ କାଳ ପାତ୍ର' ମଧ୍ୟ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏକ ବିରଳ ଉଦାହରଣ, ଯାହା ପ୍ରତିଟି ଗୁଣମୁଗ୍ଧ ପାଠକର ମାନସ ପଟରେ ଯେ ଚିର ଅମ୍ଳାନ ରହିଆସିଛି, ଏହା ନିଃସନ୍ଦେହ ।

'ଦେଶ କାଳ ପାତ୍ର'ର ବିଚାର କିମ୍ବା ବିଶ୍ଳେଷଣ କରିବା ମୋର ଉଦ୍ଦେଶ୍ୟ ନୁହେଁ। ପାରଦ ଛୟାଳିଶ ଡିଗ୍ରୀ ଡେଇଁବାକୁ ବ୍ୟଗ୍ର ହେଉଥିଲା ବେଳେ ଭୁବନେଶ୍ୱର ସହରର ଉତ୍ତପ୍ତ ଆକାଶ ତଳେ ଦୁଇଟି ବିନିଦ୍ର ନିଶାଥରେ ଏହି ଉପନ୍ୟାସ ମୋ ଭିତରେ ଯେଉଁ ଭାବାବେଗ ସୃଷ୍ଟି କରିଥିଲା, ଏ ଆଲୋଚନା ତାହାର ଏକ ବିମୁଗ୍ଧ ଆଲେଖ୍ୟ । ଅନ୍ତତଃ ସୁଧୀଜନେ ସେହି ଅର୍ଥରେ ଏହାକୁ ଗ୍ରହଣ କଲେ, ମୁଁ ଖୁସି ହେବି । କାରଣ ମୋର ସ୍ଥୁଳ ଅନୁଭବ ଏହି ଗ୍ରନ୍ଥର ବ୍ୟାସ କିମ୍ବା ବ୍ୟାସାର୍ଦ୍ଧ ତ ନୁହେଁ, ଜ୍ୟା ମଧ୍ୟ ନୁହେଁ; ଦୂରଗାମୀ ସ୍ପର୍ଶକଟିଏ ମାତ୍ର । ଏହାର ଆକଳନ କରିବା ମୋର ସାମର୍ଥ୍ୟ ବାହାରର କଥା ।

ମୋର ଆଜି ସ୍ୱୀକାର କରିବାକୁ କୁଣ୍ଠା ନାହିଁ ଯେ ଓଡ଼ିଆ ସାହିତ୍ୟର ଏପରି ଏକ ଅମୂଲ୍ୟ ଓ କାଳୋତ୍ତୀର୍ଣ୍ଣ ଐତିହାସିକ ଉପନ୍ୟାସ ସମ୍ପର୍କରେ ଦୀର୍ଘ କାଳ ଧରି ମୁଁ ଉଦାସୀନ ଥିଲି। ତାହାର କାରଣ, ଏହା ଏପରି ଏକ କାଳୋତ୍ତୀର୍ଣ୍ଣ ଓ ରସୋତ୍ତୀର୍ଣ୍ଣ ଐତିହାସିକ ଉପନ୍ୟାସ ବୋଲି ମୋର ଧାରଣା ନ ଥିଲା। ଶୁଣିଥିଲି, ଏହା ଶ୍ରୀ ଦାସଙ୍କର ଶ୍ରେଷ୍ଠକୃତି। ଏହି ମତକୁ ନିଷ୍କକ୍ଷ ଓ ନିରାପଦ ସମର୍ଥନ କରିବା ସୁଦ୍ଧା ମୋର ସାଧ୍ୟାତୀତ। କାରଣ ମୋ ପରିଚିତ ଜଗନ୍ନାଥ ପ୍ରସାଦ ଦାସ, 'ରକ୍ତର ତଳେ ନାମହୀନ କେଉଁ ଜୀବାଣୁର ଦଳ ଛୁଟେ, ମଣିଷ ଦେହରୁ ତିଳ ତିଳ କରି ରକତ ମାଉଁସ ଲୁଟେ'ର ଛନ୍ଦ ଚପଳ, ସମ୍ବେଦନଶୀଳ, ମାନବବାଦୀ କବି। ତାଙ୍କ କବିତାର ଉତ୍ତରଣ ପର୍ଯ୍ୟାୟ କିମ୍ବା କଳା ସମୀକ୍ଷା ସହ ମୋର ଯଥେଷ୍ଟ ପରିଚୟ ନାହିଁ। ମୋ ପାଇଁ ଆଶ୍ୱାସନାର କଥା 'ମଣିଷ ଦେହରୁ ତିଳ ତିଳ କରି ରକତ ମାଉଁସ ଲୁଟେ'ର ସମ୍ବେଦନଶୀଳତା 'ଦେଶ କାଳ ପାତ୍ର'ରେ ମଧ୍ୟ ଅବ୍ୟାହତ ରହିଛି।

ଗୋଟିଏ ବାକ୍ୟରେ କହିଲେ, 'ଦେଶ କାଳ ପାତ୍ର' ଓଡ଼ିଆ ଜାତିର ଅର୍ଦ୍ଧ ଶତାବ୍ଦୀର ଇତିହାସ। ଇତିହାସ ଓ ଐତିହାସିକ ଉପନ୍ୟାସ ମଧ୍ୟରେ ଏକ ସ୍ପଷ୍ଟ ବିଭାଜକ ରେଖା ଥାଏ। ଇତିହାସ, କାଳର ନିଷ୍ପ୍ରାଣ ଦଲିଲ। ଏହା ଚରିତ୍ର ଓ ଘଟଣା ନିଷ୍କକ୍ଷ। ଏଥିରେ ଲେଖକର ବ୍ୟକ୍ତିଗତ ବିଚାରର ସ୍ଥାନ ନ ଥାଏ। ଐତିହାସିକ ଉପନ୍ୟାସ କିନ୍ତୁ ଜୀବନର ହସକାନ୍ଦ, ସୁଖଦୁଃଖ. ପାପପୁଣ୍ୟ, ଆଶାନିରାଶା,ସ୍ୱପ୍ନ ଓ ସଂସ୍କାରର କାହାଣୀ। ଇତିହାସ ଏହାର ଅସ୍ଥିପଞ୍ଜର ହୋଇପାରେ, ଜୀବନର ଭଲମନ୍ଦ ଏବଂ ମୋହ ଓ ମୋହଭଙ୍ଗ ଏହାର ଆତ୍ମା। ଜଗନ୍ନାଥ, ରାମଚନ୍ଦ୍ରଦେବ କିମ୍ବା ରିଜିଆ ବେଗମ୍ ଇତିହାସ ହୋଇପାରନ୍ତି, କିନ୍ତୁ ସରଦେଇ, ଜଗୁନି ଓ ଷଣ୍ଢସୁଆର ଇତିହାସଠାରୁ ବଳି ଅଧିକତର ସତ୍ୟ। ସେମାନଙ୍କୁ ବାଦ୍ ଦେଇ 'ନୀଳଶୈଳ'ର ପରିକଳ୍ପନା ସୁଦ୍ଧା ବ୍ୟଥାଦାୟକ। ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି 'କୃଷ୍ଣାବେଣୀରେ ସନ୍ଧ୍ୟା' ଉପନ୍ୟାସରେ ନିଷ୍କମ୍ପ ସ୍ୱରରେ ଘୋଷଣା କରିଛନ୍ତି, "ଇତିହାସର ନିନ୍ଦିତ ଓ ଭର୍ତ୍ସିତମାନଙ୍କ ପାଇଁ ମୋର ଥାଏ ଶ୍ରଦ୍ଧା ଓ ସହାନୁଭୂତି। ସେମାନଙ୍କୁ ବୁଝି ନ ପାରିବା ଫଳରେ ଐତିହାସିକମାନେ ସେମାନଙ୍କୁ ନିନ୍ଦିତ



ଅଥବା ଭର୍ତ୍ସିତ କରିଥା'ନ୍ତି ବୋଲି ମୋର ଧାରଣା । ସେମାନଙ୍କ ନିଜ ଦୃଷ୍ଟିକୋଣରୁ ବିଚାର କରି ଦେଖିଲେ, ସେମାନେ ବରଂ ବନ୍ଦିତ ହୋଇ ଉଠିବେ ।" ବସ୍ତୁତଃ ଏହା ହିଁ ଇତିହାସ ଓ ଐତିହାସିକ ଉପନ୍ୟାସ ମଧ୍ୟରେ ପାର୍ଥକ୍ୟ । ଐତିହାସିକ ଚରିତ୍ର ଚିତ୍ରଣରେ ନିଷ୍ପକ୍ଷ । ସେ କେବଳ ଚରିତ୍ରର ଗତିପଥକୁ ଲିପିବଦ୍ଧ କରେ । କିନ୍ତୁ ଔପନ୍ୟାସିକ ଚରିତ୍ରର ପକ୍ଷାଶ୍ରୟୀ । ଐତିହାସିକ ଚରିତ୍ରକୁ ନିର୍ଦ୍ଦିଷ୍ଟ କାଳ ଓ ପରିବେଶର କ୍ରମିକତା ଦୃଷ୍ଟିରୁ ବିଚାର କରେ । ଔପନ୍ୟାସିକ ଚରିତ୍ରକୁ ତା'ର ବ୍ୟକ୍ତିଗତ ରୁଚି, ପ୍ରବୃତ୍ତି ଓ ପୃଷ୍ଠଭୂମି ଦୃଷ୍ଟିରୁ ବିଚାର କରିଥାଏ । ଐତିହାସିକ ଘଟଣାକୁ କାଳର କ୍ରମିକ ବିବରଣୀ ପରି ଅବିକୃତ ଭାବେ କୁକ୍ଷୀଗତ କରେ । କିନ୍ତୁ ଔପନ୍ୟାସିକ ଘଟଣାକୁ ନିଜର ବ୍ୟକ୍ତିଗତ ଦୃଷ୍ଟିକୋଣରୁ ବିଚାର କରି ପଲ୍ଲବିତ କରେ ।

ସେହି ଦୃଷ୍ଟିରୁ ରେଭେନଶା କିମ୍ବା ରାଧାନାଥ 'ଦେଶ କାଳ ପାତ୍ର'ରେ ଇତିହାସ ହୋଇପାରନ୍ତି, କିନ୍ତୁ ନାଥ ଖୁଂଟିଆ ଓ ତା'ର ଶାଳୀ, ବେଧେଇ ଗାଳି ଇତିହାସଠାରୁ ବୃହତ୍ତର ସତ୍ୟ । ବେଗ ଓ ଆବେଗ ଉଭୟ ଦୃଷ୍ଟିରୁ ଏହା ଏକ ରସୋତ୍ତୀର୍ଣ୍ଣ ଉପନ୍ୟାସ ଏବଂ ଓଡ଼ିଆ ଐତିହାସିକ ଉପନ୍ୟାସମାନଙ୍କ ମଧ୍ୟରେ ଏହାର ସ୍ଥାନ ସ୍ୱତନ୍ତ୍ର ।

୧୮୫୯ ଡିସେମ୍ବରରୁ ୧୯୦୭ ଜୁଲାଇ ଓଡ଼ିଶାର ଦୀର୍ଘ ୪୮ବର୍ଷର ଉତ୍‌ଥାନପତନ, ଦୁଃଖଦୁର୍ଦ୍ଦଶା ପୁଣି ଅବିଜିତ ପ୍ରଚଣ୍ଡ ପ୍ରାଣଶକ୍ତିରେ ସବୁ ବିପର୍ଯ୍ୟୟ ଓ ଦୁର୍ବିପାକକୁ ଫାଙ୍କିଦେଇ ନୂତନ ଉଦ୍ଦୀପନାରେ ପୁନର୍ଜାଗରଣର ପ୍ରସ୍ତୁତିପର୍ବ 'ଦେଶ କାଳ ପାତ୍ର'ର ବିସ୍ତୀର୍ଣ୍ଣ କାନଭାସ । ଏହା ଭିତରେ ଆସିଛି ବହୁ କଥାଉପକଥା । ଘଟିଛି ବହୁ ଘଟଣଅଘଟଣ । ନଅଙ୍କ ଦୁର୍ଭିକ୍ଷ ଓ ଅନଟନ, ଅନାହର ପୀଡ଼ିତ ଓଡ଼ିଆର ଚରମ ଅସହାୟତା, କ୍ଷୁଧିତର ଆର୍ତ୍ତ ଚିତ୍କାର, ମୃତ୍ୟୁର ବିଭୀଷିକା, ପୁରୀ ମନ୍ଦିରରେ ପରିଚାଳନାଗତ ନୀତି ବିଶୃଙ୍ଖଳା, ରାଜା ଓ ରାଜପରିବାରର ନାନା କୀର୍ତ୍ତିଅପକୀର୍ତ୍ତି ଓ ଅଦ୍ଭୁତ ଆଚରଣ, ଓଡ଼ିଆ ଭାଷା ବିଲୋପର ଅପଚେଷ୍ଟା, ବିଦେଶୀ ଶାସକଙ୍କ ଖିଆଲୀ ଓ ଉଦାସୀନ ଆଭିମୁଖ୍ୟ ଏହି ଉପନ୍ୟାସର ଅନ୍ଧକାରମୟ ପାର୍ଶ୍ୱ ହେଲା ବେଳେ ଜଗନ୍ନାଥଙ୍କୁ କେନ୍ଦ୍ର କରି ଓଡ଼ିଆ ଜାତିର କ୍ରମ ଶବଳିତ ଜାତୀୟତା, 'ଉତ୍କଳ ଦୀପିକା', 'ସିଦ୍ଧାନ୍ତ ଦର୍ପଣ', 'ଛ'ମାଣ ଆଠଗୁଣ୍ଠ'ର ଧାରାବାହିକ ଆତ୍ମପ୍ରକାଶ ସହ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଯୁଗ ପ୍ରବର୍ତ୍ତକ ରାଧାନାଥଙ୍କ ଆବିର୍ଭାବ, ଶିକ୍ଷା ଓ ନାରୀ ଶିକ୍ଷାର ବିସ୍ତାର ପାଇଁ କ୍ଷେତ୍ର ପ୍ରସ୍ତୁତି ଏହି ଉପନ୍ୟାସର ଆଲୋକିତ ଅବତଳ ।

ଉପନ୍ୟାସର କଳାତ୍ମକ ପ୍ରାରମ୍ଭକୁ ଲକ୍ଷ୍ୟ କରନ୍ତୁ ସୁଧୀଜନେ; "ବିଲୁଆମାନେ ହଠାତ୍ ଭୁକିବା ଆରମ୍ଭ କରିଦେଲେ, ସତେ ଯେମିତି ସେମାନେ ପୁରୀ ସହରକୁ ଦଖଲ କରିବାକୁ ବଦ୍ଧପରିକର । ହୁକେ ହୋ ଚିତ୍କାର ଓ ସକାଳର ଥଣ୍ଡା ପବନରେ ବୀରକେଶରୀଙ୍କର ନିଦ ଭାଙ୍ଗି ଗଲା ।"

ଏ ବର୍ଣ୍ଣନା କେବଳ କଳାତ୍ମକ ନୁହେଁ, ପ୍ରତୀକାତ୍ମକ ବି । ମୁଁ ଏଠାରେ ତିନୋଟି ପ୍ରସିଦ୍ଧ ଓଡ଼ିଆ ଉପନ୍ୟାସର ପ୍ରଥମ ବାକ୍ୟ ଉଦ୍ଧାର କରୁଛି ।

୧."କୋରାପୁଟରୁ ଲକ୍ଷ୍ମୀପୁର ଯିବା ରାସ୍ତାରେ ଲକ୍ଷ୍ମୀପୁର ମୋଟେ ଦେଢ଼କୋଶ ଥାଇ ଯେଉଁ 'ଧର୍ମ ଦୁଆର' ଘାଟି ପଡ଼େ, ଏ ପଟୁ ଚାଳିଶ ସେ ପାଖୁ ପଚାଶ ପାହାଡ଼ ଠେଲାଠେଲି ଧକ୍‌କା ଧକ୍‌କି ହୋଇ ମୁହାଁମୁହିଁ ଠିଆ ହୋଇଛନ୍ତି ... " (ପରଜା-ଗୋପୀନାଥ ମହାନ୍ତି)

୨."ଖରାପୋଡ଼ା ଲୋଟଣୀ ବରଗଛର ଅଲରା ଓହଳ,ଉଇହୁଙ୍କା ଭିତରୁ ଭୂଇଁଫୋଡ଼ ପରି ଉଠିଥିବା ରୋଗଣା ଖଜୁରି ଗଛ, ନଟିବେଢ଼ା ଆମ୍ବ, ପୋଲାଙ୍ଗ, କରଞ୍ଜ ଆଉ ପଳାଶର ପାତଳା ଜଙ୍ଗଲ, ଠାଏ ଠାଏ ନିଛାଟିଆ ଚଟିଘରଟାଏ, ଧୂଳିଆ ଜଗନ୍ନାଥ ସଡ଼କ ଅଙ୍କେଇବଙ୍କେଇ ମଲା ଅଜଗର ସାପ ପରି ଏହାରି ଭିତରେ ଚିତ୍ ହୋଇ ପଡ଼ିରହିଛି ।" (ନୀଳଶୈଳ-ସୁରେନ୍ଦ୍ର ମହାନ୍ତି)

୩."ସେବର୍ଷ ଯେଉଁଭଳି ଦ୍ରୁତଗତିରେ ଅଭୂତପୂର୍ବ ଘଟଣାଗୁଡ଼ିଏ ଆମ ଗାଁ ମହାଦେବପୁରରେ ଘଟି ଯାଉଥିଲା,ସେଥିରେ ଅନ୍ତତଃ ମୋର ସନ୍ଦେହ ନ ଥିଲା ଯେ,ଗାଁ ଗୋଟାଏ ନାହିଁ ନ ଥିବା ପ୍ରସୂତି ବେଦନା ଦେଇ ଗତି କରୁଛି ।" (ଅଭିନୟର ପରିଧି - ରାମଚନ୍ଦ୍ର ବେହେରା)

ସୁଧୀ ପାଠକେ ଅତି ସହଜରେ ଉପନ୍ୟାସଗୁଡ଼ିକର ଏହି ପ୍ରଥମ ବାକ୍ୟମାନଙ୍କରେ ସମଗ୍ର ଉପନ୍ୟାସର କଥାବସ୍ତୁର ଏକ ପ୍ରତୀକାତ୍ମକ ଉପଛାୟା ଲକ୍ଷ୍ୟ କରିପାରିବେ । 'ପରଜା' ଉପନ୍ୟାସର କଥାଶୀର୍ଷ, ରାମ ସାହୁକାରର ହତ୍ୟା, ଧର୍ମ ଦୁଆର ଘାଟି ପରି ଶୋଷକ ଶୋଷିତ ମଧ୍ୟରେ ଥିବା ଚିରନ୍ତନ ସଂଘର୍ଷର ଏକ ନିର୍ଣ୍ଣୟାତ୍ମକ ମୋଡ଼ । ଏପଟେ ଚାଳିଶ ପାହାଡ଼ ସାହୁକାର ରାମ ବିଶୋଇ, ତା'ର ଦଳଖିଆ ଘୋଡ଼ା ଓ ଜଙ୍ଗଲ ଜମାନର ପ୍ରତୀକ ହୋଇଥିଲା ବେଳେ ସେପଟର ପଚାଶ ପାହାଡ଼ ସୁକ୍ରୁଜାନି, ମାଣ୍ଡିଆ,ଟିକ୍ରା ଇତ୍ୟାଦି ଲକ୍ଷ ଲକ୍ଷ ଶୋଷିତଙ୍କ ପ୍ରତୀକ । ଏପଟ ସେପଟ ପାହାଡ଼ ପରି ସେମାନେ ସବୁବେଳେ ମୁହାଁମୁହିଁ । ସେମାନଙ୍କ ଭିତରେ ସନ୍ଧି କିମ୍ବା ସମ୍ପର୍କ ଅସମ୍ଭବ । ସମୁଦାୟ କଥାବସ୍ତୁର ଏକ ସଂକ୍ଷିପ୍ତ ପ୍ରତୀକାତ୍ମକ ରୂପ ଔପନ୍ୟାସିକ ଉପନ୍ୟାସର ପ୍ରଥମ ବାକ୍ୟରେ ହିଁ ପ୍ରକାଶ କରି ଦେଇଛନ୍ତି ।

ଦ୍ୱିତୀୟ ଉଦାହରଣରେ ମଲା ଅଜଗର ସାପ ପରି ଶୋଇଥିବା ଜଗନ୍ନାଥ ସଡ଼କ 'ନୀଳଶୈଳ' ଉପନ୍ୟାସର ବିସ୍ତୀର୍ଣ୍ଣ କଥା କାନଭାସର ଏକ ସଂକ୍ଷିପ୍ତ ଚିତ୍ରକଳ୍ପ । ସ୍ୱୟଂ ଜଗନ୍ନାଥ ଓ ତାଙ୍କୁ କେନ୍ଦ୍ର କରି ଧର୍ମଚ୍ୟୁତ ରାମଚନ୍ଦ୍ର ଦେବ ଏବଂ ବିପର୍ଯ୍ୟସ୍ତ ଓଡ଼ିଶାର ମୁମୂର୍ଷୁ ପରିସ୍ଥିତିକୁ ବୁଝାଇବା ପାଇଁ ମଲା ଅଜଗର ସାପ ଯେ ଉପଯୁକ୍ତ ଚିତ୍ରକଳ୍ପ, ତାହ ବୁଝାଇ କହିବା ଅନାବଶ୍ୟକ ।

ତୃତୀୟ ଉପନ୍ୟାସ 'ଅଭିନୟର ପରିଧି' କାଳ ସଂଘର୍ଷର ଏକ ବିୟୋଗାନ୍ତକ କାହାଣୀ। ମହାଦେବପୁର ଗାଁର ଐତିହ୍ୟସମ୍ପନ୍ନ ସମୃଦ୍ଧ ପରମ୍ପରା କାଳର ନିଷ୍ଠୁର ଦନ୍ତାଘାତରେ କୁମର ମା'ର ବ୍ୟାଧିତ ଜରାୟୁ ପରି ପଚିଯାଉଛି। ପୁଣି ସେହି ରାତିରେ ଗାଁ ଆଧୁନିକତମ ସଂସ୍କରଣ ଇନ୍ଦୁ ଗର୍ଭରୁ ଜନ୍ମ ନେଉଛି ଏକ ଅବୈଧ ସନ୍ତାନ। ତାକୁ ମାରିବାକୁ ଗାଁର ଏକଦା ପ୍ରାଣଚଂଚଳ ଯୁବକ ଦେବ ଆଚାର୍ଯ୍ୟଙ୍କ କମ୍ପିତ ହାତରେ ଶକ୍ତି ନାହିଁ। ଗୋଟାଏ ନୀରବ ବିସ୍ଫୋଟ ସହିତ ତୁଳନା କରାଯାଇପାରେ ଇନ୍ଦୁର ପ୍ରସୂତି ବେଦନାକୁ, ଯାହାର ପୂର୍ବାଭାସ ଉପନ୍ୟାସର ପ୍ରଥମ ବାକ୍ୟରେ ଦିଆ ସରିଛି।

'ଦେଶ କାଳ ପାତ୍ର'ରେ ଏହି ପ୍ରାକ୍ ସୂଚନା ବା କଥାଛାୟା ଅବଧାରଣର ଧାରା ଅବ୍ୟାହତ।

ଗୋଟାଏ ଯୁଦ୍ଧଲିପ୍ସୁ ,ଦୁର୍ଦ୍ଧର୍ଷ ଜାତି ତା'ର ସାହସ ଓ ବୀରତ୍ୱ ଭୁଲି ବୀରକେଶରୀଙ୍କ ପରି ଶୋଇଛି ମୃତ୍ୟୁ ଶଯ୍ୟାରେ। ତା'ର ଆତ୍ମାକୁ କବଳିତ କରିବାକୁ ଚାରିପଟ ଘେରି ନିଥର ପ୍ରଶାସନିକ ଉଦାସୀନତା। ବିଲୁଆଙ୍କ ହୁକେ ହୋ ଚିତ୍କାର ପରି ଶୁଭିଛି ଆସନ୍ନ ନଅଙ୍କର ଭୟାବହ ପଦଧ୍ୱନି। ସକାଳର ଥଣ୍ଡା ପବନ ପରି ଅନାହାର, ଦାରିଦ୍ର୍ୟ ଓ ମୃତ୍ୟୁର ବିଭୀଷିକା। ବୀରକେଶରୀଙ୍କ ପରି ନିଦ ଭାଙ୍ଗୁଛି ଗୋଟାଏ ମୁମୂର୍ଷୁ ଜାତିର। ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ସମ୍ପର୍କରେ ଏହାଠାରୁ ବଳି କଳାତ୍ମକ ଓ ପ୍ରତୀକାତ୍ମକ ପୂର୍ବାଭାସ ଆଉ କେଉଁ ଉପାୟରେ ଦିଆଯାଇ ପାରିଥା'ନ୍ତା!

ଉପନ୍ୟାସ ହିସାବରେ 'ଦେଶ କାଳ ପାତ୍ର'ର ସ୍ଥାନ ସ୍ୱତନ୍ତ୍ର ବୋଲି ପୂର୍ବରୁ ସୂଚନା ଦିଆସରିଛି। ସାଧାରଣତଃ ଉପନ୍ୟାସରେ ଥାଏ ଗୋଟିଏ ମୁଖ୍ୟ ଚରିତ୍ର ଓ ଗୋଟିଏ ମୁଖ୍ୟ ଘଟଣା। ଅନ୍ୟ ଚରିତ୍ର ଓ ଘଟଣା ସେମାନଙ୍କର ପରିପୁଷ୍ଟିରେ ସହାୟତା କରିଥା'ନ୍ତି। କିନ୍ତୁ 'ଦେଶ କାଳ ପାତ୍ର' ବହୁ ଚରିତ୍ର, ନାନା ଘଟଣାର ସମାବେଶରେ ବର୍ଣ୍ଣବିଭୋର। ସେ ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏହା ଏକ ବିରଳ ବୈଶିଷ୍ଟ୍ୟର ଅଧିକାରୀ। ପ୍ରତ୍ୟେକ ଚରିତ୍ର ଓ ଘଟଣା ପୁଣି ସ୍ୱତନ୍ତ୍ର ଓ ସ୍ୱୟଂସମ୍ପୂର୍ଣ୍ଣ। କେହି କାହା ଉପରେ ନିର୍ଭରଶୀଳ ନୁହନ୍ତି। ପ୍ରତ୍ୟେକଙ୍କର କେନ୍ଦ୍ର ଓ ପରିଧି ଭିନ୍ନ। ନିଜ ନିଜ କକ୍ଷ ପଥରେ ସମସ୍ତେ ପରିକ୍ରମଣଶୀଳ।

ରାଧାନାଥ,ଫକୀରମୋହନ, ଭକ୍ତକବି ମଧୁ ସୂଦନ ରାଓ, କୁଳବୃଦ୍ଧ ମଧୁ ସୂଦନ ଦାସ, ଗଙ୍ଗାଧର ମେହେର, ପଠାଣି ସାମନ୍ତ, ଗୌରୀଶଙ୍କର ରାୟ, ଆଚାର୍ଯ୍ୟ ହରିହର, ପ୍ୟାରୀ ମୋହନ ଆଚାର୍ଯ୍ୟ ପୁଣି ଦିବ୍ୟସିଂହ ଦେବ ଓ ମୁକୁନ୍ଦଦେବଙ୍କ ଠାରୁ ଆରମ୍ଭ କରି ରେଭେନଶା, ବାର୍ଲୋ, କକବର୍ଣ୍ଣ, କକଉଡ, ବୀଡ଼ନ, ମନକ୍ରିଫ୍ ଇତ୍ୟାଦି ବହୁ ଚରିତ୍ରର ଚାରୁ ଚିତ୍ରଶାଳା 'ଦେଶ କାଳ ପାତ୍ର'। ଲକ୍ଷ୍ୟ କରିବାର କଥା, ପ୍ରତ୍ୟେକ ଚରିତ୍ର ଔପନ୍ୟାସିକଙ୍କର ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସିଦ୍ଧି ପାଇଁ

ବ୍ୟବହୃତ । ଔପନ୍ୟାସିକ କୌଣସି ଅଯଥା ଚରିତ୍ରକୁ ଏଥିରେ ପ୍ରଶୟ ଦେଇ ନାହାନ୍ତି କିମ୍ବା ଚରିତ୍ର ଚିତ୍ରଣରେ ଅନାବଶ୍ୟକ ଭାବାବେଗର ବଶବର୍ତ୍ତୀ ହୋଇ ନାହାନ୍ତି । କେବଳ ନାଥ ଖୁଂଟିଆ, ତା' ଯାତ୍ରୀଦଳ ଓ ଖଣ୍ଡିକୁ ଛାଡ଼ିଦେଲେ 'ଦେଶ କାଳ ପାତ୍ର'ର ସମସ୍ତ ଚରିତ୍ର ଅଭିଜାତ । ସମାଜର ମୁଖ୍ୟ ସ୍ରୋତ ବା ଶାସନ ସହ ସଂଶ୍ଳିଷ୍ଟ ହୋଇପାରି ନ ଥିବା କୌଣସି ଚରିତ୍ରର ଅବତାରଣା ଏଥିରେ କରାଯାଇ ନାହିଁ । ଖଣ୍ଡି ସୁଦ୍ଧା ମୁକୁନ୍ଦଦେବର ଅନୁଗ୍ରହ ( ଭୟ ?) ରୁ ପରେ ପାଟମା' ଡାକ ପାଇ ଧନ୍ୟା ହୋଇଛି ଓ ପୁରୀ କଲେକ୍ଟରଙ୍କ ଅଫିସ୍‌ରେ ତା ନାଁ ରେ 'ଦି ଖଣ୍ଡି ବା ଦି ମେମ୍‌ଡ ଓମାନ' ନାଁରେ ଗୋଟାଏ ସରକାରୀ ଫାଇଲ୍ ଖୋଲା ହୋଇ ଏହି ଅନାମିତ ଚରିତ୍ର ଉପରେ ସରକାରୀ ମୋହର ଲଗାଇ ଦିଆ ଯାଇଛି । ଆଲୋଚନାର ସଂକ୍ଷିପ୍ତତା ଦୃଷ୍ଟିରୁ ଏଠାରେ କେବଳ ରାଧାନାଥ, ବାର୍ଲୋ ଓ ରେଭେନଶାଙ୍କ ଚରିତ୍ରକୁ ଆଲୋଚନା ପାଇଁ ଗ୍ରହଣ କରା ଯାଉଛି ।

ଉପନ୍ୟାସରେ ରାଧାନାଥଙ୍କ ପ୍ରଥମ ଆବିର୍ଭାବ ସମୟରେ ସେ ମାତ୍ର ଷୋଳ ବର୍ଷର ଯୁବକ । ପୁଣି ସମଗ୍ର ବାଲେଶ୍ୱର ଜିଲ୍ଲାରୁ ଏକମାତ୍ର ଯୁବକ ଯିଏ ସଦ୍ୟ ଏନ୍‌ଟ୍ରାନ୍‌ସ ପାସ୍ କରିଛନ୍ତି । ହାତରେ ବାଲେଶ୍ୱର ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ପଦରେ ନିଯୁକ୍ତି ପତ୍ର । ରୁଗ୍ଣ ଚେହେରା । ପିତା ସୁନ୍ଦର ନାରାୟଣଙ୍କ କଠୋର ଅନୁଶାସନ ଭୟରେ ତ୍ରସ୍ତ ଓ କାକୁସ୍ଥ । ମା'ଙ୍କ ମୃତ୍ୟୁ ପରେ ପିତା ସୁନ୍ଦର ନାରାୟଣ ଅବଶ୍ୟ ଉଭୟ ପିତା ଓ ମାତାର ସ୍ନେହ, ଯତ୍ନ ଦେଇ ତାଙ୍କର ଲାଳନପାଳନ କରିଛନ୍ତି । କିନ୍ତୁ ଅନୁଶାସନ ନାଁରେ କିଶୋର ରାଧାନାଥଙ୍କ ବ୍ୟକ୍ତିଗତ ଜୀବନରେ ତାଙ୍କର ଅଯଥା ହସ୍ତକ୍ଷେପ ରାଧାନାଥଙ୍କ ଜୀବନକୁ ଅତ୍ୟନ୍ତ ଦୁର୍ବିସହ କରିଦେଇଛି । ତେଣୁ ଭୟ ଓ ବିରକ୍ତିରେ ସେ ପିଲାଦିନେ ଅନେକଥର ପିତାଙ୍କ ମୃତ୍ୟୁ କାମନା ସୁଦ୍ଧା କରିଛନ୍ତି । ବାହାରେ ବୁଲିବାକୁ ମନା, କାହାରି ସହ ମିଶିବାକୁ ମନା, ସଭାସମିତିରେ ଯୋଗ ଦେବାକୁ ମନା, ରାସ୍ତାରେ ଚାଲିଲା ବେଳେ ଦୁଇ ପଟକୁ ଚାହିଁବାକୁ ମନା । ମନା...ମନା...ମନା...ହଜାର ଏକ ମନା ଭିତରେ ବିଚରା ରାଧାନାଥ ଅତିଷ୍ଠ । ଶିକ୍ଷକ ଚାକିରି କରି ପ୍ରାପ୍ତବୟସ୍କ ହୋଇଥିଲେ ମଧ୍ୟ ଗଡ଼ଗଡ଼ିଆ ଘାଟରେ ବସି ଫକୀରମୋହନ ଇତ୍ୟାଦିଙ୍କ ସହ ମନଖୋଲା ଗପିବାକୁ ଭୟ, ଡେରି ରାତିରେ ଘରକୁ ଫେରିବାକୁ ଭୟ । ଦାମୋଦର ପ୍ରସାଦ, ଫକୀରମୋହନ ଇତ୍ୟାଦି ମିଶି ବାଲେଶ୍ୱରରେ ଗୋଟିଏ ପ୍ରେସ୍ ବସାଇବାକୁ ଚେଷ୍ଟା କଲାବେଳେ ବାପାଙ୍କ ଭୟରେ କାଗଜପତ୍ରରେ ତାଙ୍କ ନାଁ ରଖିବାକୁ ମନା କରିଛନ୍ତି ପିତୃତ୍ରସ୍ତ ରାଧାନାଥ । ଭୟ-ଭୟରୁ ବିରକ୍ତି-ବିରକ୍ତିରୁ ଏ ଯେଉଁ ପିତୃ ବିଦ୍ୱେଷ ତାଙ୍କ ମନରେ ସୃଷ୍ଟି ହୋଇଛି, ତାହା ପରବର୍ତ୍ତୀ ସମୟରେ ତାଙ୍କୁ କେବଳ ସମଗ୍ର ପିତୃଜାତି ବିରୁଦ୍ଧରେ ବିଦ୍ରୋହୀ କରିଦେଇ ନାହିଁ, ତାଙ୍କୁ ମାନସିକ ଅବସାଦଗ୍ରସ୍ତ କରିଦେଇ ତାଙ୍କ ଜୀବନକୁ ବିଷମୟ କରିଦେଇଛି । ସେଥିପାଇଁ ବୋଧେ ରାଧାନାଥ ଏତେ ନୈରାଶ୍ୟବାଦୀ ।

ସୁନ୍ଦର ନାରାୟଣଙ୍କ ମୃତ୍ୟୁ ପରେ ତାଙ୍କ ମନସ୍ଥିତିକୁ ଲକ୍ଷ୍ୟ କଲେ ତାଙ୍କର ଅନ୍ତର୍ଦ୍ୱନ୍ଦ୍ୱକୁ ସହଜରେ ବୁଝିହେବ। ମନେ ମନେ ସେ ଅନେକଥର ପିତାଙ୍କ ମୃତ୍ୟୁ କାମନା କରିଥିବାରୁ ପିତାଙ୍କ ମୃତ୍ୟୁ ପାଇଁ ସେ ନିଜକୁ ଦାୟୀ ମନେ କରୁଥିଲେ। ସୁନ୍ଦର ନାରାୟଣଙ୍କ ମୃତ୍ୟୁରେ ତାଙ୍କ ଉପରୁ ଅନୁଶାସନର ସବୁ ବନ୍ଧନ ତୁଟି ଯାଇଛି ସତ, କିନ୍ତୁ ସେ ନିଜର ପାପବୋଧ ପାଇଁ ମୁହୂର୍ତ୍ତଟିଏ ବି ଶାନ୍ତିରେ ନିଶ୍ୱାସ ମାରିପାରି ନାହାନ୍ତି। ହଇଜାରେ ସୁନ୍ଦର ନାରାୟଣଙ୍କ ମୃତ୍ୟୁ ହୋଇଥିଲେ ବି ସେ ଏକ ହେତୁହୀନ ଅନୁତାପରେ ଦଗ୍ଧୀଭୂତ ହେବାରେ ଲାଗିଛନ୍ତି। ଏପରି ଅନୁଶାସନମୁକ୍ତି ତାଙ୍କୁ ଲଜ୍ଜିତ କରିଛି। ଏହାର କିଛି ଦିନ ପରେ ଫକୀର ମୋହନଙ୍କ ସହ ବୁଲି ସେ ଯେତେବେଳେ ଡେରି ରାତିରେ ଘରକୁ ଫେରିଛନ୍ତି, ତାଙ୍କର ଅନୁଭବ ହୋଇଛି ଯେ ସେ ପ୍ରକୃତରେ ଅନୁଶାସନମୁକ୍ତ। କିନ୍ତୁ ପରେ ପରେ ଶ୍ୱାସକଷ୍ଟ ଅନୁଭବ କରି ଭାବିଛନ୍ତି, ବାପାଙ୍କୁ ଅବଜ୍ଞା କରିବାରୁ ତାଙ୍କର ଏ ଶାସ୍ତି। ଶ୍ୱାସକଷ୍ଟ ଉପଶମ ପାଇଁ ବାପା ତାଙ୍କୁ ଆଗରୁ ପ୍ରତିଦିନ ଏକ ନିର୍ଦ୍ଦିଷ୍ଟ ପରିମାଣର ଅଫିମ ଖାଇବାକୁ ଯେଉଁ ନିର୍ଦ୍ଦେଶ ଦେଇଥିଲେ, ସେଦିନ ସେ ଜାଣି ଜାଣି ତାହା ଅମାନ୍ୟ କରି ଆଉ ଗୋଟାଏ ଗୁଳା ଅଫିମ ଅଧିକ ଖାଇଛନ୍ତି। ଅଫିମ ଖାଇବା ପରେ ତାଙ୍କ ମନରେ ଯେଉଁ ଆନନ୍ଦ ଜାତ ହୋଇଛି ତାହା ନିଶାଜନିତ ଆନନ୍ଦ ନା ପିତାଙ୍କ ଆଦେଶ ଅବଜ୍ଞା କରିବାର ଆନନ୍ଦ, ତାହା ବୁଝିବା କଷ୍ଟସାଧ୍ୟ। ପୁଣି ଏହି ଆନନ୍ଦମୟ ଅନୁଭୂତି ମଝିରେ ତାଙ୍କ ଆଗରେ ରକ୍ତଚକ୍ଷୁ ମେଲି ଠିଆ ହୋଇଛନ୍ତି ପିତା ସୁନ୍ଦର ନାରାୟଣ। ଏ ପାପବୋଧ ଅଶରୀରୀ ସୁନ୍ଦର ନାରାୟଣଙ୍କ ପିଙ୍ଗଳାକ୍ଷି କବଳରୁ ତାଙ୍କର ଆଜୀବନ ମୁକ୍ତି ନ ଥିଲା। ବାଉନ ବର୍ଷ ବୟସରେ ସୁଦୂର ବର୍ଦ୍ଧମାନରେ ନଗେନ୍ଦ୍ରବାଳାଙ୍କ ପ୍ରଥମ ସ୍ପର୍ଶରେ ତାଙ୍କର ଯେତେବେଳେ ମନେହୋଇଛି–ତାଙ୍କର କବିତ୍ୱ, ତାଙ୍କର ଜୀବନ, ଅତୀତ, ବର୍ତ୍ତମାନ ସବୁ ସାର୍ଥକ ହୋଇଯାଇଛି, ମନ ଯେତେବେଳେ ଉଡ଼ି ବୁଲୁଛି ଏକ ସମୟାତୀତ ଅମୂର୍ତ୍ତ ଆନନ୍ଦାଲୋକରେ, ସବୁକିଛି ଲାଗିଛି ସ୍ୱପ୍ନମୟ (ପୃ.୪୦୯, ଦେଶ କାଳ ପାତ୍ର, ୫ମ ସଂସ୍କରଣ, ୨୦୧୪) ସେତେବେଳେ ବି ତାଙ୍କ ଆଗରେ ଭର୍ତ୍ସନାରେ ଭ୍ରୂକୁଂଚନ କରି ଠିଆ ହୋଇଛନ୍ତି ପିତା ସୁନ୍ଦର ନାରାୟଣ।

ନଗେନ୍ଦ୍ରବାଳାଙ୍କ ସହ ସମ୍ପର୍କ ଭିତରେ ଓ ବାହରେ, ସେ ଦଣ୍ଡେ ହେଲେ ସ୍ୱସ୍ତିରେ ନିଃଶ୍ୱାସ ମାରି ପାରିନାହାନ୍ତି। ସବୁବେଳେ ତାଙ୍କୁ ଦୁଇ ବ୍ୟସ୍ତ ବାହୁରେ ଦୂରକୁ ଠେଲି ଦେବାକୁ ଚେଷ୍ଟା କରିଛନ୍ତି। ତାଙ୍କର ବର୍ଦ୍ଧମାନର ସମୁଦାୟ ରହଣିକାଳ ଏହି ଅନୈତିକ ସମ୍ପର୍କ ଯୋଗୁଁ ଅଶାନ୍ତ ଓ ଅସ୍ୱସ୍ତିକର ହୋଇଉଠିଛି। ନଗେନ୍ଦ୍ରବାଳାଙ୍କୁ ସେ ଛାଡ଼ି ପାରିନାହାନ୍ତି କିମ୍ବା ନିଜର କରିପାରି ନାହାନ୍ତି। ପତ୍ନୀ ପରଶମଣି ପୁଣି ଯେମିତି ନିଃସନ୍ଦେହରେ ଏହି ସମ୍ପର୍କକୁ ଗ୍ରହଣ କରି ନଗେନ୍ଦ୍ରବାଳାଙ୍କୁ ଅନାବିଳ ମମତ୍ୱରେ ଆଦର ଅଭ୍ୟର୍ଥନା କରିଛନ୍ତି, ତାହା ରାଧାନାଥଙ୍କ ଅନୁତାପକୁ ବହୁଗୁଣିତ

କରିଦେଇଛି । ପରଶମଣିଙ୍କ ଉଦ୍ଦେଶ୍ୟରେ ସେ ରଚନା କରିଥିବା 'ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି' ମୂଳରେ ଅଛି ଏହି ତୀବ୍ର ବିବେକ ଦଂଶନର ଜ୍ୱାଳା । ପାପବୋଧ ତାଙ୍କୁ ଏହି ସମୟରେ ଘୋର ମାନସିକ ଅବସାଦର କରାଳ ଘୂର୍ଣ୍ଣି ମଧ୍ୟକୁ ବାରମ୍ବାର ଟାଣି ନେଇଛି ଏବଂ ତାଙ୍କର ଅବସର ଜୀବନ ହଳାହଳମୟ ହୋଇଉଠିଛି । ଏଥିରୁ ନିସ୍ତାର ପାଇବାକୁ ସେ ପ୍ରତିଦିନ ସନ୍ଧ୍ୟାରେ ସିତାର ବାଦନ ଅଭ୍ୟାସ କରିଛନ୍ତି । ସକାଳ ସନ୍ଧ୍ୟା ତାଙ୍କ ସହ ଶାସ୍ତ୍ର ଆଲୋଚନା କରିବାକୁ ଦରମା ଦେଇ ଜଣେ ସଂସ୍କୃତଜ୍ଞ ପଣ୍ଡିତ ନିଯୁକ୍ତ କରିଛନ୍ତି । ସକାଳୁ ଉଠି ହଜାରେ ଥର ମଧୁସୂଦନ, ମଧୁସୂଦନ ଲେଖିଛନ୍ତି । କାଠେଯୋଡ଼ିରେ ଘଂଟା ଘଂଟା ଧରି ଥରକୁ ଥର ଗାଧୋଇଛନ୍ତି ।

ଆଶ୍ୱାସନାର କଥା, ଏହି ମାନସିକ ଅବସାଦ ସମୟରେ ତାଙ୍କ ପଛରେ ଛାଇ ପରି ଲାଗି ରହିଛନ୍ତି ପୁଅ ଶଶିଭୂଷଣ । ସେ କେବଳ ଶାରୀରିକ ଓ ମାନସିକ ଅସୁସ୍ଥତା ପୀଡ଼ିତ ପିତାଙ୍କର ସେବା ଶୁଶ୍ରୂଷା କରି ନାହାନ୍ତି, ସାମାଜିକ ନିନ୍ଦା ଅପବାଦକୁ ଭ୍ରୂକ୍ଷେପ ନ କରି ପିତାଙ୍କ ସ୍ୱୀକାରୋକ୍ତି ହଜାରେ ସଂଖ୍ୟାରେ ଛପାଇ ସବୁ ଓଡ଼ିଆ ଓ ବଙ୍ଗଳା ପତ୍ରପତ୍ରିକାର ସମ୍ପାଦକ ଓ ସମ୍ବାଦପତ୍ର-ମାନଙ୍କୁ ପଠେଇଛନ୍ତି । ଏଥିରୁ ପିତାପୁତ୍ରଙ୍କ ସମ୍ପର୍କ ଅତି ନିବିଡ଼ ଓ ଆତ୍ମିକ ଥିଲା ବୋଲି ସହଜରେ ଅନୁମାନ କରାଯାଇପାରେ । ନିଜ ଜୀବନର ତିକ୍ତ ଅନୁଭୂତିରୁ ସେ ବୋଧେ ଶଶିଭୂଷଣଙ୍କୁ ମୂଳରୁ ଅନୁଶାସନମୁକ୍ତ ରଖିବାର ଚେଷ୍ଟା କରିଛନ୍ତି ।

ନିଜର ଶାରୀରିକ ଅସୁସ୍ଥତା ପାଇଁ ମଧ୍ୟ ସେ ଏହି ସମାଜ ନିଗୃହୀତ ପରକୀୟାକୁ ଦାୟୀ କରି ଲେଖିଛନ୍ତି – ମଧ୍ୟାହ୍ନ ଶାରଦାତପ ଦ୍ରବ ଭାବାପନ୍ନ ହୋଇ ସମୟ ସମୟରେ ଶିରାପ୍ରଶିରାରେ ପ୍ରବାହିତ ହେଉଛି, ଏହିପରି ବୋଧ ହୁଏ । ବାମ ପଞ୍ଜର ଓ ଜଂଘରେ ସର୍ବଦା ଗୋଟିଏ ତୀବ୍ର କଷ୍ଟ ଅନୁଭୂତ ହୁଏ । ପ୍ରତ୍ୟହ ଅନେକ ଥର ଆତ୍ମହତ୍ୟାର କଥା ମନରେ ପଡ଼ିଥାଏ । ପାପର ଦଣ୍ଡ ଏହି ରୂପ । ବର୍ତ୍ତମାନ ମୋହର ପ୍ରତ୍ୟେକ ଅଙ୍ଗ ମୋହର ବିରୋଧାଚରଣ କରୁଛି । ଉଦର, ବକ୍ଷସ୍ଥଳ, ଗୋଡ଼, ହାତ, ଚକ୍ଷୁ ସମସ୍ତେ ହିଁ ମୋତେ କଷ୍ଟ ଦେଉଅଛନ୍ତି । ସମସ୍ତେ ହିଁ ନୀରବ ଭାଷାରେ ଯେପରି କହୁଅଛନ୍ତି, ତୁମ୍ଭେ ପାପୀ, ତୁମ୍ଭର ଜୀବନରେ ଅଧିକାର ନାହିଁ, ଆମ୍ଭେମାନେ ତୁମର କାର୍ଯ୍ୟ କରିବାକୁ ପ୍ରସ୍ତୁତ ନୋହୁ ।" ....

ନିଜର ସ୍ୱୀକାରୋକ୍ତିରେ ସେ ନଗେନ୍ଦ୍ରବାଳାଙ୍କୁ ରାକ୍ଷସୀ, କୁହୁକିନୀ, ମାୟାବିନୀ, ତାହାଙ୍କର ଚରିତ୍ର ଅତ୍ୟନ୍ତ ବିକୃତ ଥିଲା ଇତ୍ୟାଦି କହି କଟୁ ଭାଷାରେ ଗାଳି ଦେଇଛନ୍ତି । କିନ୍ତୁ ନଗେନ୍ଦ୍ରବାଳାଙ୍କ ସହ ପ୍ରତ୍ୟକ୍ଷ ସାକ୍ଷାତର ଦୀର୍ଘ ସତେଇଶ ବର୍ଷ ପୂର୍ବରୁ, ଯେତେବେଳେ ସେ ମାତ୍ର ପଚିଶ ବର୍ଷର ଉଦ୍ଦାମ ଯୁବକ, 'ମେଘଦୂତ'ର ପୂର୍ବ ମେଘରେ ଲେଖିଥିଲେ,

"ନଗେନ୍ଦ୍ରବାଳା ପଦ୍ମପାଦ ଯୁଗଳ,ଛୁଇଁ ଦେହ ଧାରଣ ହେବ ସଫଳ।" ନଗେନ୍ଦ୍ରବାଳାଙ୍କ ପ୍ରଥମ ସ୍ପର୍ଶରେ ବି ସେଇ ଏକା ଅନୁଭବ; ରାଧାନାଥ ତାଙ୍କ କବିତ୍ୱ, ତାଙ୍କର ଜୀବନ, ଅତୀତ, ବର୍ତ୍ତମାନ ସବୁ ସାର୍ଥକ ହୋଇଯାଇଥିବା ଅନୁଭବ କରିଛନ୍ତି। ଏହି ପଦ ସଂଯୋଜନା ପ୍ରସଙ୍ଗାନୁସାରୀ ହୋଇପାରେ, କାକତାଳିକ ହୋଇପାରେ, ହୋଇପାରେ ବି ଅବଦମିତ ଅବଚେତନର କାରସାଦି। ଯୌବନର ପ୍ରାରମ୍ଭରେ ଯେଉଁ ସ୍ଖଳନକୁ ଡରି ବାପା ତାଙ୍କୁ ରାସ୍ତାରେ ଗଲାବେଳେ ଦୁଇପଟକୁ ଚାହିଁବାକୁ ମନା କରିଥିଲେ, ସେହି ସ୍ଖଳନ ତାଙ୍କ ଶେଷ ଜୀବନକୁ ଅତିଷ୍ଠ ଓ ଦୁର୍ବିସହ କରିଦେଇଛି।

ବ୍ୟକ୍ତିଗତ ଜୀବନକୁ ବାଦ ଦେଲେ ଏହି ପ୍ରଚଣ୍ଡ ପ୍ରତିଭାଧର କବିଙ୍କର ସାରସ୍ୱତ ଜୀବନ ଓ ବୃତ୍ତିଗତ ଜୀବନ ମଧ୍ୟ କମ୍ ବିବଦମାନ ନ ଥିଲା। ବୃତ୍ତିଗତ ଜୀବନରେ ସେ ପାଠ୍ୟପୁସ୍ତକ ନିର୍ବାଚନ, ପରୀକ୍ଷକ ନିଯୁକ୍ତି, ବିଭାଗୀୟ ନିଯୁକ୍ତି ଇତ୍ୟାଦିରେ ପକ୍ଷପାତ କରୁଥିବାର ସମାଲୋଚନା ହେଉଥିଲା। ସମ୍ବାଦ ବାହିକା ତାଙ୍କର ନିଯୁକ୍ତିରେ ପକ୍ଷପାତିତାକୁ ସମାଲୋଚନା କରି ଲେଖିଥିଲା - ଜଏନ୍ଟ ଇନ୍ସପେକ୍ଟର ରାଧାନାଥବାବୁ କୌଣସି ସ୍ଥାନରେ ଗୋଟିଏ ପଦ ଶୂନ୍ୟ ହେବାର ଦେଖିଲେ ଆଦିମ ଓଡ଼ିଆମାନଙ୍କୁ ଉପେକ୍ଷା କରି ଆପଣାର ଜାତିଭାଇ ଏବଂ ଲେଖାଯୋଖା ସମ୍ବନ୍ଧୀୟ ଲୋକମାନଙ୍କୁ ଆଗ ନିଯୁକ୍ତ କରନ୍ତି, ପୁଣି କୌଶଳ ଦ୍ୱାରା ନିଯୁକ୍ତ କରାଇବାକୁ ଛାଡ଼ନ୍ତି ନାହିଁ। ସବଇନ୍ସପେକ୍ଟର ପଦ କଥା ତେଣିକି ଥାଉ,ଇନ୍ସପେକ୍ଟିଂ ପଣ୍ଡିତ ପଦ, ଯହିଁ ଉପରେ ଆଦିମ ଓଡ଼ିଆମାନଙ୍କର ସମ୍ପୂର୍ଣ୍ଣ ଅଧିକାର, ସେଥି ଉପରେ ସୁଦ୍ଧା ରାଧାନାଥବାବୁଙ୍କ ଲେଖାଯୋଖା ଶଳା,ଭିଣୋଇଙ୍କର ଭାଗ ବସିଅଛି।" [୮୮]

ଗୌରୀଶଙ୍କର ରାୟ ମଧ୍ୟ ତାଙ୍କ କାର୍ଯ୍ୟକଳାପରେ ସନ୍ତୁଷ୍ଟ ନ ଥିଲେ। ସେଥିପାଇଁ ରାଧାନାଥ 'ରାୟ ବାହାଦୁର' ଉପାଧି ପାଇଲା ବେଳେ ତାଙ୍କୁ କୌଣସି ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ ନ ଥଲେ। ଓଡ଼ିଶାରେ ରାଧାନାଥ ଓ ମଧୁସୂଦନଙ୍କୁ ଲୋକେ ପରିହାସରେ ଓଡ଼ିଶା ଶିକ୍ଷା ବିଭାଗର ବଡ଼ଲାଟ ଛୋଟଲାଟ ବୋଲି ଡାକୁଥିଲେ। ଶେଷ ଜୀବନରେ 'ମହାଯାତ୍ରା' ପାଇଁ ତାଙ୍କର ସୁଦୂର ବର୍ଦ୍ଧମାନକୁ ବଦଳି ହେଲା ବୋଲି ସେ ଭାବୁଥିଲେ। ଓଡ଼ିଶା ଶିକ୍ଷା ବିଭାଗର ସର୍ବୋଚ୍ଚ ସ୍ଥାନରେ ପହଂଚି ମଧ୍ୟ ତାଙ୍କର ବୃତ୍ତିଗତ ଜୀବନ ବିବାଦମୁକ୍ତ ନ ଥିଲା।

ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ସେହି 'ଲେଖାବଳୀ'ର ରଚନାକାଳରୁ ସେ ବାରମ୍ବାର ସମାଜ ଓ ସଂସ୍କୃତିର ଲକ୍ଷ୍ମଣରେଖା ଉଲ୍ଲଂଘନ କରି କଠୋର ସମାଲୋଚନାର ଶରବ୍ୟ ହୋଇଛନ୍ତି। ଲେଖାବଳୀର ଚରିତ୍ରମାନଙ୍କୁ ପୁରାଣ ପୃଷ୍ଠାରୁ ସଂଗ୍ରହ କଲାବେଳେ ସେ ଅଲକ୍ଷ୍ୟରେ କେତେବେଳେ କମଳକାମିନୀ ଓ କୁମାରନାଥ ପରି କାଳ୍ପନିକ ଚରିତ୍ରର ସଂଯୋଜନା କରିଛନ୍ତି,

ଯେଉଁମାନଙ୍କର ସାମାଜିକ ସମ୍ପର୍କ ଥିଲା ମାମୁଝିଅ ଓ ପୀଉସୀ ପୁଅ। ଏ ପ୍ରକାର ସାଂସ୍କୃତିକ ଅନୈତିକତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ଭୂଦେବ ମୁଖାର୍ଜୀ ସେତେବେଳେ ଉପଦେଶ ଦେଇଥିଲେ–ଏଥିରେ ଆଦିରସର ଯେ ରୂପ ଅବତାରଣା ହୋଇଅଛି, ତାହା ଉଚିତ ସୀମା ଅତିକ୍ରମ କରିଅଛି। ଆଦିରସର ଏ ରୂପ ଅବତାରଣା ନୈତିକ ସ୍ୱାସ୍ଥ୍ୟର ପ୍ରତିକୂଳ, ସୁତରାଂ ପରିହାର୍ଯ୍ୟ।" ....

ତାଙ୍କର 'କେଦାରଗୌରୀ'କୁ ସମାଲୋଚନା କରି କେହି ଜଣେ ସମାଲୋଚକ ଲେଖିଥିଲେ – ରାଧାନାଥଙ୍କ କୁଟିଳତା ଭେଦ କରିବା ଟୀକାକାରଙ୍କ ପିତାମହଙ୍କ ସାଧ୍ୟ ନୁହେଁ; କାରଣ ସେକ୍ସପିଅର ମୃତ୍ୟୁର ଏତେକାଳ ପରେ, ଓଡ଼ିଶାରେ ରାଧାନାଥ ରୂପରେ ପୁନର୍ବାର ଜନ୍ମ ଗ୍ରହଣ କରିଅଛନ୍ତି।' ....

ସେହିପରି ପ୍ରଣୟପ୍ରମତ୍ତା ନନ୍ଦିକେଶରୀର ଜାତିଦ୍ରୋହ ଓ ପିତୃଦ୍ରୋହ ପ୍ରସଙ୍ଗରେ କୁହାଯାଇଥିଲା ଯେ ରାଧାନାଥଙ୍କ କଳ୍ପନାଶକ୍ତି ଅଶ୍ରାବ୍ୟ, ଅପାଠ୍ୟ, ଜଘନ୍ୟ, ନୀଚ ଓ କଦର୍ଯ୍ୟ ଆଖ୍ୟାୟିକାମାନ ସୃଷ୍ଟି କରିଛି।....

'ପାର୍ବତୀ' କାବ୍ୟ ପ୍ରକାଶ ପାଇବା ପରେ ଦୀପିକା ଏହାର କଠୋର ସମାଲୋଚନା କରି ଲେଖିଥିଲା –ରାଧାନାଥବାବୁ କେଉଁ ଉଦ୍ଦେଶ୍ୟ ସାଧନାର୍ଥେ ବୀରପ୍ରସୂ ଓଡ଼ିଶାର ବିସ୍ତୀର୍ଣ୍ଣ ଇତିହାସରୁ ଏହି ଜଘନ୍ୟ ପାପମୟ ବିଷୟ ଉଦ୍ଧାର କରି କବିତାମୟୀ ପୁସ୍ତିକାରେ ଲିପିବଦ୍ଧ କରିବାକୁ ପ୍ରୟାସ ପାଇ ଅଛନ୍ତି, ତାହା ଆମ୍ଭେମାନେ ଅନୁମାନ ସୁଦ୍ଧା କରିପାରୁ ନାହୁଁ। ଆମ୍ଭେମାନେ କେବଳ ଏତିକି କହିବୁ ଯେ ଏଭଳି ବିଷୟ ଲିପିବଦ୍ଧ କରିବାକୁ ଯାଇ ତାଙ୍କ ସୁନ୍ଦର ଲେଖନୀ କଳଙ୍କିତ ହୋଇଅଛି।....

ଏହି ପ୍ରଚଣ୍ଡ ପ୍ରତିଭାଧର କବି ଏବଂ ଆଧୁନିକ ଓଡ଼ିଆ ପଦ୍ୟ ସାହିତ୍ୟର ଯଥାର୍ଥ ଯୁଗ ପ୍ରବର୍ତ୍ତକ ଜୀବନରେ ବାରମ୍ବାର ସାରସ୍ୱତ ଶୂନ୍ୟତାର ସମ୍ମୁଖୀନ ହେବାର କାରଣ ବୋଧେ ଏହି କଟୁକଠୋର ସମାଲୋଚନା। 'ମହାଯାତ୍ରା'ର ଅଷ୍ଟମ ସର୍ଗ ଲେଖିବାକୁ ବସିଲାବେଳେ ତାଙ୍କ ଲେଖନୀ ପକ୍ଷାଘାତପୀଡ଼ିତ ହୋଇପଡ଼ିଛି। ପୂର୍ବବର୍ତ୍ତୀ ସର୍ଗର ଶେଷ ଧାଡ଼ି କେତୋଟି ବାରମ୍ବାର ମନରେ ଦୋହରାଇ ସୁଦ୍ଧା ସେ ନିଜ ଭିତରେ ଆଉ ଧାଡ଼ିଟିଏ ଲେଖିବାର ଉଦ୍ଦୀପନା ଅନୁଭବ କରି ନାହାନ୍ତି। ଭାବ ଓ ଭାଷା ଯେପରି ତାଙ୍କ ମନରୁ ଉଭେଇ ଯାଇଛି। ବାଧ୍ୟ ହୋଇ ସେ ସେହି ନିଷ୍ଫଳ ପ୍ରୟାସରୁ ନିଜକୁ ନିବୃତ୍ତ କରିଛନ୍ତି। ଫକୀରମୋହନଙ୍କ 'ବିରହୀ ହଳଦୀ ବସନ୍ତ' କବିତା ସଂଶୋଧନ କରି ସେଥିରେ ଦୁଇଟି ନୂଆ ପଦ ସଂଯୋଜନା କରିସାରିଲା ପରେ ତାଙ୍କ କବି ହୃଦୟ ନୂତନ ସର୍ଜନା ପାଇଁ ଯେତେ ଉଦ୍‌ବେଳିତ ହେଲେ ସୁଦ୍ଧା ତାଙ୍କ ସୃଜନଶୀଳତା ନିର୍ବେଦ ଓ ଅଥର୍ବ

ହୋଇପଡ଼ିଛି । ତାଙ୍କ ମାନସିକ ଦୁଷ୍ଚିନ୍ତାର ଏକ ସ୍ପଷ୍ଟ ଚିତ୍ର ସେ ୧୮-୩-୧୮୯୫ରେ ଗଙ୍ଗାଧର ମେହେରଙ୍କୁ ଲେଖିଥିବା ଚିଠିରୁ ଜଣାପଡ଼େ । ବାହାରକୁ ପାରିବାରିକ ପୀଡ଼ା,କାର୍ଯ୍ୟର ଝଂଝଟ ଏବଂ ଦେଶର ଅନାଗ୍ରହତାର ଯେତେ ଛଳନା କଲେ ମଧ୍ୟ ତାଙ୍କ ଭିତରୁ ଅଭିମାନୀ କବିତ୍ୱ କେବେଠାରୁ ଅଲକ୍ଷ୍ୟରେ ବିଦାୟ ନେଇସାରିଥିଲା । ତାଙ୍କର ବର୍ତ୍ତମାନ ବଦଳି ପାଇଁ ସେ 'ମହାଯାତ୍ରା'କୁ ଦାୟୀ କରିଛନ୍ତି । ୧୮୯୯ ମସିହା ଜୁଲାଇ ମାସରେ ଯେତେବେଳେ ଇଂରେଜ ସରକାର ତାଙ୍କୁ 'ମହାଯାତ୍ରା'ର ପଂଚମ ସର୍ଗରୁ "ବହୁ ଦୂରୁ ଆସି, ଶୋଷିବେ ଭାରତ ଦେହୁ ଶୋଣିତ ନିରତେ, ଯବନ ଜଳୌକାପୁଞ୍ଜ ଶୋଷଣ କୌଶଳେ" ପଦଟି ବାଦ ଦେବାକୁ ଗୋପନ ନିର୍ଦ୍ଦେଶ ଦେଇଛନ୍ତି, ସେ କବିତ୍ୱର ଅଭିମାନ ଭୁଲି କେବଳ ନିସର୍ତ୍ତରେ କ୍ଷମା ଭିକ୍ଷା କରି ପତ୍ର ଲେଖିନାହାନ୍ତି; ଅଧିକନ୍ତୁ ଆଗୁଆ ସତର୍କତା ଅବଲମ୍ବନ କରି କେବଳ ସେହି 'ଯବନ' ପଦଟି ପାଇଁ ସମୁଦାୟ 'ଶିବାଜୀଙ୍କର ଉତ୍ସାହ ବାକ୍ୟ' କବିତାଟିକୁ କବିତାବଳୀର ୨ୟ ସଂସ୍କରଣରୁ ବାଦ୍ ଦେଇଛନ୍ତି ।

ତାଙ୍କ ମାନସିକ ନୈରାଶ୍ୟକୁ ଦେଖନ୍ତୁ ପାଠକେ, 'ମହାଯାତ୍ରା'ର ପାଂଚଟି ସର୍ଗ (୮ମରୁ ୧୨ଶ) ଓ ଅନ୍ୟ ଅଠରଟି ସର୍ଗର ଖସଡ଼ାକୁ ସେ ଅଗ୍ନିଗର୍ଭକୁ ନିକ୍ଷେପ କରି ଭସ୍ମସାତ୍ କରି ଦେଇଛନ୍ତି । ତାଙ୍କର ମାନସିକ ସନ୍ତପ୍ତତା ପାଇଁ 'ଦେଶ କାଳ ପାତ୍ର'ରେ ଔପନ୍ୟାସିକ ଆଦୌ ସହାନୁଭୂତିଶୀଳ ପରି ମନେହୁଅନ୍ତି ନାହିଁ । ବରଂ 'ଏଇଭଳି ସନ୍ତପ୍ତ ମାନସିକ ଅବସ୍ଥା ନେଇ ରାଧାନାଥ ତାଙ୍କର ଶେଖବଜାର ଭଡ଼ା ଘରେ ତଳେ ମସିଣା ଉପରେ ବୀରାସନରେ ବସି ଉଷା ନାମକ କାବ୍ୟ ଲେଖିବାରେ ମନ ଦେଲେ' ଏପରି ବାକ୍ୟପ୍ରୟୋଗରେ ରାଧାନାଥଙ୍କ ପ୍ରତି ତାଙ୍କର ଶ୍ଳେଷାତ୍ମକ ଦୃଷ୍ଟିକୋଣ ପ୍ରଚ୍ଛନ୍ନ ରହିଥିବା ପରି ମନେହୁଏ ।

ସ୍ୱୟଂ ରାଧାନାଥ ମଧ୍ୟ ନିଜ ସାହିତ୍ୟିକ ଜୀବନ ପ୍ରତି ବୀତସ୍ପୃହ ହୋଇ ଗଙ୍ଗାଧର ମେହେରଙ୍କୁ ଗଭୀର ଦୁଃଖରେ ଲେଖିଛନ୍ତି–ମୁଁ ସାହିତ୍ୟ ପ୍ରତି ପ୍ରଥମେ ମନୋଯୋଗୀ ହୋଇ ନିଜର ଭୟଙ୍କର କ୍ଷତି କରିଅଛି । ପାଠ୍ୟପୁସ୍ତକ ରଚନା ପ୍ରତି ପୂର୍ବରୁ ମନୋଯୋଗୀ ହୋଇଥିଲେ, ଆଜିସରିକି ମୋହର ଆର୍ଥିକ ଅବସ୍ଥା ଏପରି ଉନ୍ନତ ହୋଇଥା'ନ୍ତା ଯେ ମୁଁ ମୋହର ସମସ୍ତ ଅବକାଶ ସାହିତ୍ୟ ପ୍ରତି ଅର୍ପଣ କରିପାରନ୍ତି ।"

ବୃତ୍ତିଗତ ଓ ସାରସ୍ୱତ ଜୀବନ ପରି ଏହି ନୈରାଶବାଦୀ (ସୁଖ ବୋଲି ଯାହା ଜନ ନେତ୍ରେ ଦିଶେ ...ଇତ୍ୟାଦି) କବି ନିଜର ଆର୍ଥିକ ଅବସ୍ଥାରେ ମଧ୍ୟ ସୁଖୀ ନ ଥିଲେ । ଜୀବନର କଠିନତମ ବାସ୍ତବତା ତାଙ୍କୁ ସବୁବେଳେ ଚିନ୍ତିତ କରି ରଖିଥିଲା । ତା' ନ ହୋଇଥିଲେ, ମୟୂରଭଞ୍ଜର ରାଜା କୃଷ୍ଣଚନ୍ଦ୍ର ଯେତେବେଳେ ତାଙ୍କୁ ଗଭୀର ଶ୍ରଦ୍ଧା, ଆସ୍ଥା ଓ ବିଶ୍ୱାସ ଯୋଗୁଁ ଦେୱାନ ପଦରେ ଯୋଗ

ଦେବାକୁ ସାଦର ଆମନ୍ତ୍ରଣ ଜଣାଇଲେ, ସେ ଏତେ ଲାଭକ୍ଷତିର ଅଙ୍କ କଷି ତାକୁ ବିନମ୍ରତାର ସହିତ ପ୍ରତ୍ୟାଖାନ କରି  ନ ଥା'ନ୍ତେ। କୃଷ୍ଣଚନ୍ଦ୍ରଙ୍କ ଆମନ୍ତ୍ରଣକୁ ପ୍ରତ୍ୟାଖାନ କରି ଚିଠି ଲେଖିଲା ବେଳେ ସେ ଯେତେ ବଶମ୍ବଦତାର ଅଭିନୟ  କରିଥା'ନ୍ତୁ ପଛେ,  ଅଧିକ ଦରମା ପ୍ରାପ୍ତି ଯେ ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା, ଏହା ପରବର୍ତ୍ତୀ ଘଟଣାକ୍ରମରୁ (ଗଡ଼ଜାତ ଆସିଷ୍ଟାଂଟ୍ ସୁପରିଟେଣ୍ଡେଂଟଙ୍କ ଚିଠି ପାଇ ନିଜ ଭାଗ୍ୟ ଓ କୃଷ୍ଣଚନ୍ଦ୍ରଙ୍କୁ ଗାଳିଦେବା ''''ଘଟଣାରୁ) ସ୍ପଷ୍ଟ ହୋଇପଡ଼େ।

ସେହିପରି ବାମଣ୍ଡା ରାଜା ବାସୁଦେବ ସୁଢ଼ଳ ଦେବ  ତାଙ୍କୁ ତାଙ୍କ ରାଜ୍ୟକୁ ବୁଲି ଯିବାକୁ ସଶ୍ରଦ୍ଧ ନିମନ୍ତ୍ରଣ କଲାବେଳେ, ସେ ସ୍ନେହ ଶ୍ରଦ୍ଧା ସମ୍ମାନ କଥା ଭୁଲି  ତାଙ୍କୁ ବ୍ୟକ୍ତିଗତ ଛୁଟି ନେଇ ବାମଣ୍ଡା  ଯିବାକୁ ପଡୁଥିବାରୁ ବିରକ୍ତି ପ୍ରକାଶ କରି ନ ଥା'ନ୍ତେ।

ସାମାଜିକ ସ୍ଖଳନ ବ୍ୟତୀତ ରାଧାନାଥଙ୍କ କାବ୍ୟଗୁଡ଼ିକ ସମାଲୋଚିତ ହେବାର ଅନ୍ୟ ଏକ କାରଣ ତାଙ୍କ କ୍ଷମତାପ୍ରୀତି। 'ମହାଯାତ୍ରା'ର ୫ମ ସର୍ଗରେ ଅପ୍ରାସଙ୍ଗିକ ଭାବେ ସେ ଯେପରି 'ଆଶାୟୀ ଉତ୍କଳ ଆଶା କିଶୋର ପାଦପ, ଗୁଣାରାମ ରାମଚନ୍ଦ୍ର ଭଞ୍ଜ କଞ୍ଜ ରବି' ଇତ୍ୟାଦି କହି ଅନାବଶ୍ୟକ ସ୍ତୁତି କରିଛନ୍ତି, ତାହା ପାଠକର ରସବୋଧରେ ବାଧା ସୃଷ୍ଟି କରେ। ପୁଣି ଏହାର ପରବର୍ତ୍ତୀ ପର୍ଯ୍ୟାୟରେ', ତୁମ୍ଭରି ଆଦେଶେ ବୀର ଏ ମହାଗୀତିକା,ଗାଇବା ଆଶାୟେ ଏବେ ଧରିଛି ମୁଁ କରେ, ଚିର-ମୂକ ବୀଣା ମୋର ସିକ୍ତ ନେତ୍ର ଜଳେ, ଆଦିଷ୍ଟ ଏ ଗୀତ ଆସୁ ଦିବ୍ୟ ଅବଧାନେ' ଇତ୍ୟାଦି ପାଠକର ମାର୍ଜିତ ରୁଚିବୋଧକୁ ଆହତ କରେ। ମୟୂରଭଞ୍ଜ ରାଜାଙ୍କଠାରୁ କୌଣସି ଆର୍ଥିକ ସାହାଯ୍ୟ ନ ପାଇ ପରବର୍ତ୍ତୀ ସର୍ଗରେ ସେ ପୁଣି, 'ଦିବ୍ୟ ଅବଧାନେ ଆସୁ ଏ ଗୀତ ତୁମ୍ଭର, ହେ ରାଜେନ୍ଦ୍ର ମହାନାଦୀ ପ୍ରପାତର ପତି, ବାମଣ୍ଡା ମଣ୍ଡଳେଶ୍ୱର ଉତ୍କଳ ମଣ୍ଡନ, ତୁମ୍ଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳେ, ଦେବଦୁର୍ଗ ଦେବ ଏବେ ତୀର୍ଥ ସାରସ୍ୱତ' ଇତ୍ୟାଦି କହି ବାମଣ୍ଡାର ରାଜା ବାସୁଦେବ ସୁଢ଼ଳ ଦେବଙ୍କ ସ୍ତୁତିଗାନରେ ପ୍ରଗଲ୍‌ଭ ହୋଇ ଉଠିଛନ୍ତି। ଉଦ୍ଦେଶ୍ୟ କିନ୍ତୁ ସେଇ ଗୋଟିଏ। ହେଲେ ଏ ସ୍ତୁତି ବି ନିଷ୍ଫଳ ଯିବାରୁ ବାଲେଶ୍ୱର ଗସ୍ତ ସମୟରେ ସେ ଉଭୟ ରାଜାଙ୍କୁ ମନେ ମନେ ଗାଳି ଦେଇଛନ୍ତି।

ଘୋର ବିରକ୍ତିର ସହ  ବ୍ୟକ୍ତିଗତ ଛୁଟି ନେଇ, ହାତୀ ପିଠିରେ ବସି ପ୍ରଥମ ବାମଣ୍ଡା ଗସ୍ତ ସମୟରେ ରାଜାଙ୍କୁ ଭେଟି ଦେବା ପାଇଁ ରାଧାନାଥ ଯେଉଁ ପାଂଚପଦୀ ରଚନା କରିଛନ୍ତି, ତାହାର ପ୍ରଥମ ପଦଟି ଥିଲା- 'ଧିକ ତୋଷାମଦୀ ଧିକ ଧିକ ତୋର ଘୃଣିତ ହୀନ ଜୀବନ, ଧିକ ତୋ ଜୀବିକା ଧିକ ଧିକ ସେହି ଜୀବିକାଜନିତ ଧନ।' ଅଥଚ ବାମଣ୍ଡାର ସାହିତ୍ୟିକମାନଙ୍କ  ସଭାରେ ଏହି କବିତା ପଢ଼ି ରାଜାଙ୍କ ଠାରୁ ପାଂଚ ଶହ ଟଙ୍କା ପୁରସ୍କାର ଧରି ସେ ଫେରିଛନ୍ତି। ରାଧାନାଥଙ୍କ

କାର୍ଯ୍ୟ ଓ କବିତା ଭିତରେ ଦେଖା ଦେଇଥିବା ଏହି ପ୍ରଭେଦକୁ ଔପନ୍ୟାସିକ ବ୍ୟଙ୍ଗ କରି ଲେଖିଛନ୍ତି–ଶେଷରେ ତୋଷାମଦୀ ଜୀବିକାଜନିତ ପାଂଚ ଶହ ଟଙ୍କା ଧରି ରାଧାନାଥ କଟକ ଫେରିଲେ।"

ନଅଙ୍କ ଦୁର୍ଭିକ୍ଷର ମୁଖ୍ୟ କାରଣ ବିଦେଶୀ ଶାସକମାନଙ୍କର ଉଦାସୀନତା ଓ ନିଷ୍କ୍ରିୟତା– ଏଥିରେ ଦ୍ୱିମତ ହେବାର କୌଣସି କାରଣ ନାହିଁ। କିନ୍ତୁ ଯେଉଁ କେତେଜଣ ବ୍ରିଟିଶ ଅଫିସର ଓଡ଼ିଶାର ଏହି ଦୁର୍ଦ୍ଦିନରେ ଓଡ଼ିଆଙ୍କ ପ୍ରତି ଯଥେଷ୍ଟ ସମବେଦନା ଦେଖାଇ ଦିନରାତି ପରିଶ୍ରମ କରି ଏହି ପ୍ରାକୃତିକ ଦୁର୍ବିପାକକୁ ପ୍ରତିରୋଧ କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ, ସେମାନଙ୍କ ଭିତରୁ ପୁରୀର ତତ୍କାଳୀନ କଲେକ୍ଟର ଜି.ଏନ୍.ବାର୍ଲୋ ଅନ୍ୟତମ। ତାଙ୍କ ଭଳି ଦରଦୀ ପ୍ରଶାସକଙ୍କ ଉଦାହରଣ ଅମଲାତନ୍ତ୍ରରେ ଅପ୍ରଚୁର। ବାର୍ଲୋଙ୍କ ପାଖରେ ଥିଲା କବିର କୋମଳ ହୃଦୟ, ପୁଣି ପ୍ରଶାସକୀୟ ଦୂରଦୃଷ୍ଟି। ସାତପଡ଼ା ଅଂଚଳ ବୁଲିସାରି ୧୮୬୫ ଡିସେମ୍ବର ମାସ ୮ ତାରିଖରେ ନିଜ ଡାଏରୀରେ ସେ ଲେଖିଥିଲେ-ଅନାହାର ଓ ଦୁର୍ଗତି ବର୍ତ୍ତମାନ ଯେଉଁ ଚରମ ସୀମାରେ ପହଂଚିଛି, ତାହାକୁ ବିନା ଯନ୍ତ୍ରଣା ଓ ଆତଙ୍କର ମିଶ୍ରିତ ପୀଡ଼ନ ବିନା ଦେଖିହେବ ନାହିଁ। ଆମକୁ ଏଇ କରୁଣ ସତ୍ୟକୁ ମାନିନେବାକୁ ହେବ ଯେ ଏଠାରେ ସବୁ ଲୋକ,ଶିଶୁବୃଦ୍ଧ ସମସ୍ତେ, ଅନାହାରରେ ରହିବେ ଏବଂ ତାଙ୍କୁ ଏଥିରୁ ଉଦ୍ଧାର କରିବାକୁ କୌଣସି ଉପାୟ ନାହିଁ। ବର୍ତ୍ତମାନ କେବଳ ଶେଷ ଲୋକଟି ମରିବା ପର୍ଯ୍ୟନ୍ତ ଗୋଟିଏ ଦିନକୁ ଆଉ ଗୋଟିଏ ଦିନ ପ୍ରାଣ ଧରି ରହିବା କଥା।

ଆସନ୍ନ ଦୁର୍ଭିକ୍ଷ ଭୟରେ ସେ ୧୮୬୫ ଅକ୍ଟୋବର ମାସରୁ ରାମାକ୍ଷୟ ଚାଟାର୍ଜୀଙ୍କ ଚିଠି ପାଇ ବ୍ୟସ୍ତ ହୋଇପଡ଼ିଛନ୍ତି ଏବଂ ବାରମ୍ବାର ଏହି ଭୟାନକ ପରିସ୍ଥିତି ପ୍ରତି କମିଶନର ରେଭେନଶାଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରିଛନ୍ତି। ନଭେମ୍ବର ମାସରେ ସେ ରେଭେନଶାଙ୍କୁ ସ୍ପଷ୍ଟ ବାକ୍ୟରେ ଜଣାଇ ଦେଇଛନ୍ତି ଯେ ଦେଶରେ ଚାଉଳ ମହଜୁଦ ଅଛି ବୋଲି ତାଙ୍କର ଯେଉଁ ଧାରଣା ଅଛି ତାହା ସମ୍ପୂର୍ଣ୍ଣ ଭୁଲ। ତେଣୁ ବାହାରୁ ଚାଉଳ ଆଣିବାକୁ ହେବ। ମାଲୁଦ ଓ ପାରିକୁଦକୁ ସିଧା କଲିକତାରୁ ଗୋଟିଏ ଜାହାଜ ଚାଉଳ ନ ପଠାଇଲେ, ସେଠିକାର ଲୋକେ ଅନାହାରରେ ମରିଯିବେ ବୋଲି ମଧ୍ୟ ସେ ସତର୍କ କରିଦେଇଛନ୍ତି।

ଅନ୍ୟ ପଲ୍ଲବଗ୍ରାହୀ ଇଂରେଜ ଅଫିସରମାନଙ୍କ ପରି ସେ କେବଳ ଚାକିରି କରିବା ପାଇଁ ଚାକିରି କରୁ ନ ଥିଲେ। ଦିନରାତି ଏପରିକି ଗସ୍ତ ସମୟରେ ମଧ୍ୟ ଓଡ଼ିଶା ଓ ଓଡ଼ିଆମାନଙ୍କ ମଙ୍ଗଳ ପାଇଁ ସେ ଚିନ୍ତିତ ଥିଲେ। ଲୋକଙ୍କୁ କାମ ଯୋଗାଇବା ପାଇଁ ସେ ଯେତେବେଳେ ନରେନ୍ଦ୍ର ପୋଖରୀ ଖୋଳାଇବା କାମ ଆରମ୍ଭ କରିବାକୁ ଚିନ୍ତା କରିଛନ୍ତି, ସେତେବେଳେ ତାଙ୍କର ସୁଚିନ୍ତିତ

ଯୋଜନା, ଲୋକଙ୍କ ପେଟକୁ ଦାନା ଯୋଗାଇବା ପାଇଁ ବ୍ୟାକୁଳତା ଓ ପ୍ରଶାସକୀୟ ପ୍ରତ୍ୟୁତ୍ପନ୍ନମତିତାର ସୂଚନା ସେ ରାମାକ୍ଷୟଙ୍କ ପାଖକୁ ଲେଖିଥିବା ଚିଠିରୁ ଜଣାପଡ଼େ । ଦେଶୀୟ ଲୋକଙ୍କର ଆନ୍ତରିକ ସଂପୃକ୍ତି ପାଇଁ ସେ ଶାସନର ନାଲି ଫିତାଠାରୁ କାମଟିକୁ ଦୂରେଇ ରଖିବାକୁ ଚାହିଁଛନ୍ତି । ରାମାକ୍ଷୟଙ୍କୁ ସେ ପରାମର୍ଶ ଦେଇ ଲେଖିଛନ୍ତି- ଆପଣଙ୍କର ଦାୟିତ୍ୱ ହେଲା କାମ ଆରମ୍ଭ କରି ନିଜକୁ ସେଥିରୁ ଦୂରରେ ରଖିବା । କିନ୍ତୁ କାମ ଉପରେ ନଜର ରଖିଥିବେ ଏବଂ ଯେଉଁମାନେ କାମ ତଦାରଖ କରୁଛନ୍ତି, ତାଙ୍କୁ ନିଜର କରି ଅନ୍ୟମାନଙ୍କୁ ପ୍ରବର୍ତ୍ତେଇବେ । ପୂରା ଜିନିଷଟି ଯେପରି ଏକ ସର୍ବସାଧାରଣଙ୍କ ଉଦ୍ୟମ ଭଳି ଜଣାଯାଏ । " ଏହି ଚିଠିରେ ଦୁର୍ଭିକ୍ଷ ସମ୍ପର୍କରେ ତାଙ୍କର ମନ୍ତବ୍ୟ ସଂକ୍ଷିପ୍ତ ଓ ଶାଣିତ-ଦୁର୍ଦ୍ଦଶା ସର୍ବବ୍ୟାପୀ ଓ ସମ୍ପୂର୍ଣ୍ଣ । ଏହା ତାଙ୍କ ଦରଦୀ ମାନବିକତାର ପରିଚୟ ବୋଲି ବୁଝାଇ କହିବା ନିଷ୍ପ୍ରୟୋଜନ ।

ଡିସେମ୍ବରରେ ଚିଲିକା ଅଂଚଳ ଗସ୍ତ ବେଳେ ଲୋକଙ୍କ ଦୁର୍ଦ୍ଦଶା ଦେଖି ସେ ଲୁଣ ମଜୁରି ଦୁଇ ପଇସାରୁ ଚାରି ପଇସାକୁ ବଢ଼େଇ ଦେଇଛନ୍ତି । ପାଂଚ ହଜାର ଟଙ୍କା ଚାନ୍ଦା ସଂଗ୍ରହ କରି ନରେନ୍ଦ୍ର ପୋଖରୀ କାମ ଆରମ୍ଭ କରିଛନ୍ତି । ସାତପଡ଼ାରେ ପୋଖରୀ ଖୋଳାଇବା ପାଇଁ ୫ ହଜାର ଟଙ୍କା ମଞ୍ଜୁରି କରାଇଛନ୍ତି । ଭୂମିହୀନ ଭୋକିଲା ଲୋକଙ୍କୁ କାମ ଦେବା ପାଇଁ ଖୋର୍ଦ୍ଧା-ପୁରୀ ସଡ଼କ କାମ ଆରମ୍ଭ କରିଛନ୍ତି । ଏପରିକି ମାତ୍ର ଶହେ ଟଙ୍କା ଖର୍ଚ୍ଚ କରି ସେ ଗୋଟିଏ ପୁରୁଣା ପୋଖରୀର ପୁନରୁଦ୍ଧାର କାମ କରାଇଛନ୍ତି କେବଳ ଲୋକଙ୍କୁ କାମ ଯୋଗାଇ ବଂଚାଇ ରଖିବା ପାଇଁ ।

ସରକାରୀ ଚାକିରିର ହଜାର ନିୟନ୍ତ୍ରଣ ଭିତରେ ଥାଇ ବି ବାର୍ଲୋ ଯେ ସ୍ୱାଧୀନଚେତା ଓ ନିର୍ଭୀକ ଥିଲେ ଏହା ସ୍ୱୀକାର କରିବାକୁ ହେବ । ଖିଆଲୀ ରେଭେନଶାଙ୍କୁ ସେ କେବଳ ତାଙ୍କ ଧାରଣା ଭୁଲ ବୋଲି ବାରମ୍ବାର ଚେତାଇ ଦେଇ ନାହାନ୍ତି, ଦରକାର ବେଳେ ତାଙ୍କ ଆଦେଶକୁ ଅମାନ୍ୟ ମଧ୍ୟ କରିଛନ୍ତି । ସବୁ ଜିଲ୍ଲାରେ ରିଲିଫ କମିଟି ମିଟିଂ ଡାକି ଚାନ୍ଦା ସଂଗ୍ରହ କରିଦେଲେ ଦୁର୍ଭିକ୍ଷ ସମସ୍ୟାର ସମାଧାନ ହୋଇଯିବ ବୋଲି ରେଭେନଶା ଯେତେବେଳେ ଅବାସ୍ତବ ଚିନ୍ତା କରି କଲେକ୍ଟରମାନଙ୍କୁ ଚିଠି ଲେଖିଥିଲେ, ବାର୍ଲୋ ସେତେବେଳେ ଏକମାତ୍ର କଲେକ୍ଟର ଯେ ଆଦୌ ମିଟିଂ ହିଁ ଡାକି ନାହାନ୍ତି । କାରଣ ସେ ଜାଣିଥିଲେ ଯେ ଏଥିରେ କୌଣସି ଲାଭ ହେବ ନାହିଁ ।

ସାତପଡ଼ା ଅଂଚଳର ନବାପାଟଣା, ଭୂତପାଟଣା, ନୂଆ ଗାଁ, ବାଜମୁଣ୍ଡା ପ୍ରଭୃତି ଗାଁ ବୁଲି ଅନାହାର ମୃତ୍ୟୁ ଓ ଦୁର୍ଗତିର ବୀଭତ୍ସତାକୁ ଆଖିରେ ଦେଖିଲା ପରେ ସନ୍ଧ୍ୟାରେ ନିଜ ସ୍ତ୍ରୀଙ୍କୁ ମନେ ପକେଇ ସେ କାନ୍ଦିଛନ୍ତି । ସେଦିନ ସେ ଡାଏରୀରେ ଲେଖିଛନ୍ତି-ଏଇ ଲୋକମାନଙ୍କୁ ଦେଖିବା ପରେ ମନେହେଲା, କାହିଁ, ଅବସ୍ଥା ତ ଏତେ ଖରାପ ନୁହେଁ । ଲୋକମାନଙ୍କ ମୁହଁରେ ତ ଅନାହାରରେ

ରହିଥିବାର ନିରାଶା ଦିଶୁ ନାହିଁ। କିନ୍ତୁ ଶୀଘ୍ର ମୁଁ ବୁଝିଲି ଯେ ,ଏଠା ଲୋକମାନଙ୍କର ଅଛି ଆଶାତୀତ ଧୈର୍ଯ୍ୟ ଏବଂ ହସ ମୁହଁରେ ସବୁ କିଛି ମାନିନେବାର ଶକ୍ତି। ଏ କଥା ଇଉରୋପୀୟମାନଙ୍କର ଅନାହାର ବିଷୟରେ ଧାରଣାରୁ ସମ୍ପୂର୍ଣ୍ଣ ଭିନ୍ନ। ଏଠା ଲୋକମାନେ ନିଜ ଭାଗ୍ୟକୁ ଅପେକ୍ଷା କରି ରହିଥିଲେ; ଯେମିତି କହୁଥିଲେ–ହେଲା, ଚେରମୂଳ ଛଡ଼ା କିଛି ଖାଇବାକୁ ନାହିଁ; ତେବେ ଆମେ ଏମିତି ଏଇଆକୁ ଖାଇ ରହିଥିବୁ, ମରିବା ଯାଏଁ। ଯେଉଁ ଓଡ଼ିଆମାନେ ରେଭେନଶାଙ୍କ ଧାରଣାରେ ଅଭଦ୍ର, ନିର୍ବୋଧ ଏବଂ ସ୍ତ୍ରୀସୁଲଭ ..., ସେମାନଙ୍କ ସମ୍ପର୍କରେ ଏ ହେଉଛି ଆଉ ଜଣେ ଇଂରେଜ ଅଫିସରଙ୍କ ଆନ୍ତରିକ ଅନୁଭବ। କେବଳ ଏଇ ଗୋଟିଏ ମନ୍ତବ୍ୟରୁ ଓଡ଼ିଆଙ୍କ ପ୍ରତି ଥିବା ତାଙ୍କ ଗଭୀର ମମତା ଓ ଆଶାବାଦୀ ଦୃଷ୍ଟିକୋଣର ସହଜରେ ଆକଳନ କରାଯାଇପାରେ।

ନଅଙ୍କ ଦୁର୍ଭିକ୍ଷର ଠିକ୍ ଶହେ ବର୍ଷ ପରେ, ୧୯୬୫-୬୬ରେ ଓଡ଼ିଶାର କଳାହାଣ୍ଡି ଜିଲ୍ଲାରେ ଆଉଥରେ ଅନାବୃଷ୍ଟିଜନିତ ମରୁଡ଼ି ପଡ଼ିଥିଲା। ସେତେବେଳେ ବି ଖଡ଼ିଆଳ ଅଂଚଳର ବହୁ ଲୋକ ଅନାହାରରେ ମରିଥିଲେ। ଔପନ୍ୟାସିକ ଶ୍ରୀ ଦାସ ସେତେବେଳେ କଳାହାଣ୍ଡିର କଲେକ୍ଟର। ଜିଲ୍ଲାର ଶାସନମୁଖ୍ୟ ହିସାବରେ ସରକାରୀ କର୍ମଚାରୀମାନଙ୍କ ନେତୃତ୍ୱ ନେଇ ସେ ଯେପରି ଦୃଢ଼ତାର ସହିତ ଏହି ବିଷମ ପରିସ୍ଥିତିର ମୁକାବିଲା କରିଥିଲେ, ତାହା ଏ ପର୍ଯ୍ୟନ୍ତ କଳାହାଣ୍ଡିର ବୟସ୍କ ଲୋକେ ଭୁଲି ନାହାନ୍ତି। ନଅଙ୍କ ଦୁର୍ଭିକ୍ଷ ସମୟରେ ଇଂରେଜ ସରକାର ଯେପରି ବାଲେଶ୍ୱରରୁ ଚାଉଳ ଚାଲାଣ ଉପରେ କଟକଣା ଉଠେଇ ଦେଇ ଅବିମୃଶ୍ୟକାରିତାର ପରିଚୟ ଦେଇଥିଲେ ଏବଂ ପରିସ୍ଥିତିକୁ ଅଣାୟତ୍ତ କରିଦେଇଥିଲେ, ତାହାର ପୁନରାବୃତ୍ତି ଘଟିଛି କଳାହାଣ୍ଡିରେ। ଶହେ ବର୍ଷ ପରେ ବି ଆମ ପ୍ରଶାସନିକ ଚିତ୍ର ଓ ଚରିତ୍ରରେ କୌଣସି ପରିବର୍ତ୍ତନ ସମ୍ଭବ ହୋଇ ନାହିଁ। ୧୯୬୫-୬୬ରେ ବି ଲେଖକଙ୍କ ବାରଣ ନ ମାନି ସରକାର କଳାହାଣ୍ଡିରୁ ଚାଉଳ ଚାଲାଣ ଉପରୁ କଟକଣା ଉଠେଇ ଦେଇ ପରିସ୍ଥିତିକୁ ଅଧିକ ଭୟାବହ କରିଦେଇଛନ୍ତି। ବାର୍ଲୋଙ୍କ ପରି ଶ୍ରୀ ଦାସ ବି ଦିନରାତି ନ ମାନି (ଏକାଦିକ୍ରମେ ଅଠର ଦିନ) ଜିଲ୍ଲାସାରା କକ୍ଷଚ୍ୟୁତ ଉଲ୍କା ପରି ଘୂରି ବୁଲିଛନ୍ତି। 'ଦେଶକାଳ ପାତ୍ର'ର ଦୁର୍ଭିକ୍ଷ ଭିତର ଦେଇ ଗତି କଲାବେଳେ ଲାଗେ, ଏହି କଳାହାଣ୍ଡିର ତିକ୍ତ ଅନୁଭୂତି ତାଙ୍କୁ ଏପରି ଏକ ତଥ୍ୟଭିତ୍ତିକ ଉପନ୍ୟାସ ଲେଖିବାକୁ ଅନୁପ୍ରେରିତ କରିଛି। ନିଜର ପ୍ରଶାସନିକ ଅଭିଜ୍ଞତାକୁ ସେ ଆବେଗବର୍ଜିତ ଯୁକ୍ତିନିଷ୍ଠ ଭାଷାରେ ପୁନର୍ବିନ୍ୟସ୍ତ କରିଛନ୍ତି ଏହି ଉପନ୍ୟାସରେ। ତେଣୁ କଲେକ୍ଟର ଜି.ଏନ୍. ବାର୍ଲୋଙ୍କ ପଛରେ ଆଉ ଜଣକର ମୁହଁ ଜଳଜଳ ଦିଶେ। ସେ ମୁହଁ ପ୍ରଶାସକ ଶ୍ରୀ ଦାସଙ୍କର। ବାର୍ଲୋଙ୍କ ପରି ଶ୍ରୀ ଦାସ ବି ଚାକିରିର ଶୃଙ୍ଖଳା ଓ ସରକାରୀ ଅନୁଶାସନ ଭିତରେ ରହି ବୋଧହୁଏ ରୁଦ୍ଧଶ୍ୱାସ ହୋଇପଡ଼ିଛନ୍ତି। ଏହା ବି ହୋଇପାରେ ଆଇ.ଏ.ଏସ୍. ପରି ସର୍ବୋଚ୍ଚ କ୍ଷମତା ଓ

ପ୍ରତିପତ୍ତିସମ୍ପନ୍ନ ଚାକିରି ପ୍ରତି ତାଙ୍କ ବୀତସ୍ପୃହତା ଓ ସ୍ୱେଚ୍ଛାକୃତ ଅବସରର କାରଣ। କଳାହାଣ୍ଡିର ଉତ୍କଟ ମରୁଡ଼ି ପରିସ୍ଥିତି ସମୟରେ ସମ୍ପୂର୍ଣ୍ଣ ଫସଲହାନିଠାରୁ ଅନାହାର ମୃତ୍ୟୁ ଅଭିଯୋଗ ପର୍ଯ୍ୟନ୍ତ ପ୍ରତ୍ୟେକଟି ଅଘଟନ ସମ୍ପର୍କରେ ବାରମ୍ବାର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ସତ୍ତ୍ୱେ ସରକାରୀ କଳର ଉଦାସୀନତା ତାଙ୍କୁ ଯେପରି ବିଚଳିତ କରିଥିଲା, ତାହାର ପୁନର୍ବିନ୍ୟାସ ଘଟିଛି 'ଦେଶକାଳ ପାତ୍ର'ର ଦୀର୍ଘ ୮୦ପୃଷ୍ଠା ବ୍ୟାପି ନଅଙ୍କ ବର୍ଣ୍ଣନାରେ। ବାର୍ଲୋଙ୍କ ଚରିତ୍ରକୁ ପଢ଼ିବା ବେଳେ ମୋତେ ଲାଗିଲା, ଶ୍ରୀ ଦାସ ତାଙ୍କର ପ୍ରଶାସନିକ ଅଭିଜ୍ଞତା ଓ ଅନୁଭୂତିକୁ ଏହି ଚରିତ୍ର ମାଧ୍ୟମରେ ଆବେଗବର୍ଜିତ, ଯୁକ୍ତିନିଷ୍ଠ ଭାଷାରେ ବର୍ଣ୍ଣନା କରି ପାଠକର ଯଥେଷ୍ଟ ନିକଟବର୍ତ୍ତୀ ହୋଇପାରିଛନ୍ତି।

ଅମଲାତନ୍ତ୍ରର ବିଚିତ୍ର ଝାମେଲା ଭିତରେ ବାର୍ଲୋ ବିରଳ ହେଲେ ବି ରେଭେନଶାଙ୍କ ପରି ଖିଆଲୀ ପ୍ରଶାସକଙ୍କର ଆଜି ବି ଅଭାବ ନାହିଁ, ଯେଉଁମାନେ ନିଜ ଭୁଲ ଧାରଣାକୁ ଶେଷ ପର୍ଯ୍ୟନ୍ତ ଜାବୁଡ଼ି ଧରି ସର୍ବନାଶର କାରଣ ହୋଇଥା'ନ୍ତି। ନିଜ ତିକ୍ତ ଅଭିଜ୍ଞତାରୁ ତେଣୁ ଶ୍ରୀ ଦାସ ପ୍ରତିକୂଳ ମତ ଦେଇ କହିଛନ୍ତି ଯେ ସରକାରୀ ଉଚ୍ଚ କର୍ମକର୍ତ୍ତାମାନେ ଅନେକ ସମୟରେ କ୍ଷେତ୍ରର ପ୍ରକୃତ ପରିସ୍ଥିତି ହୃଦୟଙ୍ଗମ କରିପାରନ୍ତି ନାହିଁ। ସେଥିପାଇଁ ତ ରେଭେନଶା କାହା କଥା ନ ଶୁଣି ବୃନ୍ଦାବନ ମାରୁଆଡ଼ୀ ପରି କେତେକ ଲୋକଙ୍କ କାନକୁହା କଥାକୁ ବିଶ୍ୱାସ କରି ବାରମ୍ବାର କହୁଥିଲେ—

୧. (ବାଲେଶ୍ୱର କଲେକ୍ଟର ମସପ୍ରାଟଙ୍କୁ)ତମ ଜିଲ୍ଲାରେ ଯେତେ ଚାଉଳ ଅଛି ବୋଲି ତୁମେ ଭାବୁଛ, ମୁଁ ନିଃସନ୍ଦେହ ଯେ ତା'ଠାରୁ ବେଶୀ ଚାଉଳ ଅଛି।

୨. ମୁଁ ଆଶା କରୁଚି, ତୁମକୁ (ବାର୍ଲୋଙ୍କୁ ମାଲୁଦ ଓ ପାରିକୁଦ ସମ୍ପର୍କରେ ) ଖବର ଦେଇଥିବା ଲୋକ ଏ ବିଷୟ ସାମାନ୍ୟ ଅତିରଞ୍ଜିତ କରି ଜଣାଇଛି।

୩. ବୋଧହୁଏ ଆଉ ପଚରାପଚରି କଲେ ତମେ ଦେଖିବ ଯେ ଚିଲିକା କୂଳର ଖବର ତମେ ଯାହା ଭାବୁଛ, ସେତେ ଖରାପ ନୁହେଁ।

୪. ମୁଁ ନିଶ୍ଚିତ ଜାଣେ ଯେ କିଛି ଉଚ୍ଚ ଜାଗାର ଜମିରେ ଫସଲ ପୂରା ନଷ୍ଟ ହୋଇଛି ସତ; କିନ୍ତୁ ଅନ୍ୟ ଜାଗାରେ ଆଠଅଣାରୁ କମ୍ ଫସଲ ହେବ ନାହିଁ।

୫. ଆଠଅଣା ଫସଲ ହେଲେ ବି ଦୁର୍ଭିକ୍ଷ ହେବ ନାହିଁ

୬. ଫସଲ ଷୋଳ ଅଣାରୁ ଆଠଅଣା ମାତ୍ର ନଷ୍ଟ ହୋଇଛି। ତେଣୁ ଖଜଣା ଦେବାକୁ ଜମିଦାରମାନଙ୍କ ପାଖରେ ସମ୍ବଳ ଅଛି।

ସେଥିପାଇଁ  ରେଭେନଶାଙ୍କ ସମ୍ପର୍କରେ ବାର୍ଲୋ ଭାବିଛନ୍ତି - ଏ ରେଭେନଶା ବି ଅଦ୍ଭୁତ ଜୀବ। ନିର୍ବୋଧମାନଙ୍କ ସ୍ୱର୍ଗରେ ଅଛି ଲୋକଟା।"

ଏ ଭାବନାର ଯୁକ୍ତିଯୁକ୍ତତା ରେଭେନଶା ଲେଖିଥିବା ଚିଠିରୁ ସ୍ୱତଃ ପ୍ରମାଣିତ ହୁଏ। ବଂଚିବା ପାଇଁ ଲୋକେ ମଣିଷମାଂସ ଖାଇବା ଯାଏଁ କଥା ଗଲାବେଳେ ରେଭେନଶା ବାର୍ଲୋଙ୍କୁ ଲୋକମାନଙ୍କୁ ଆଶ୍ୱାସନା ଦେବାକୁ ପରାମର୍ଶ ଦେଇଛନ୍ତି। ପରାମର୍ଶ ଦେଇଛନ୍ତି – ଲୋକମାନଙ୍କୁ ହତାଶ ହେବାକୁ ଦିଅ ନାହିଁ। ସବୁ ବିଷୟରେ ଏବଂ ସବୁ ସମୟରେ ଭଲ ଦିଗକୁ ଦେଖୁଥାଅ। ପୁଣି କହିଛନ୍ତି-ଲୋକମାନଙ୍କ ପଛରେ ଲାଗିଥାଅ, ସେମାନେ ଯେପରି ନିଜକୁ ସାହାଯ୍ୟ କରିବେ। ତମେ କହିବ ଓଡ଼ିଶାରେ ଏ କଥା କଷ୍ଟକର, କିନ୍ତୁ ଚେଷ୍ଟାରୁ ବଳି କିଛି ନାହିଁ। ଚାଉଳ ରପ୍ତାନୀ ସମ୍ପର୍କରେ ତାଙ୍କ ଅଦ୍ଭୁତ ଯୁକ୍ତି ଦେଖନ୍ତୁ - ଯଦି ଅଧିକ  ରପ୍ତାନୀ ହୋଇଛି, ଚାଉଳ ଯାଇ ଟଙ୍କା ତ ଆସିଛି। ଟଙ୍କା ଦେଲେ ଚାଉଳ କିଣି ହେବ ଏବଂ ଯଦି ଚାଉଳ ଥାଏ,  ଯେଉଁଠାରେ ଅଭାବ ସେଠାରେ ପହଂଚିବ।

ବାର୍ଲୋ ରେଭେନଶାଙ୍କୁ ଭାବୁଥିଲେ ନିର୍ବୋଧ , ରେଭେନଶା ବାର୍ଲୋଙ୍କୁ ଭାବୁଥିଲେ, ଅଯଥା ବ୍ୟତିବ୍ୟସ୍ତ ଓ ଭାବପ୍ରବଣ ଜଣେ ମଣିଷ। ସେ ଭାବୁଥିଲେ -କେତେ ଲୋକ ଅଛନ୍ତି, ଅଳ୍ପ କଥାରେ ବ୍ୟସ୍ତ ହୋଇପଡ଼ନ୍ତି, ବାର୍ଲୋ ଏଇଭଳି ହୋଇଥିବେ। " କଟକ ଓ ବାଲେଶ୍ୱର କଲେକ୍ଟର ତାଙ୍କୁ ଦୁର୍ଭିକ୍ଷ ପାଇଁ ବେଶୀ ବ୍ୟସ୍ତ କରୁ ନ ଥିବାରୁ, ସେ ସୁଖୀ  ଥିଲେ। ଅନାହାରରେ ଲୋକେ ପୋକମାଛି ପରି ମରୁଥିବା ବେଳେ ସେ ବଡ଼ ଧରଣର କୃଷିମେଳାଟିଏ ଆୟୋଜନ କରିବାକୁ ଭାବୁଥିଲେ ଏବଂ ଦୁର୍ଭିକ୍ଷ ଯୋଗୁଁ ଏହାକୁ ଘୁଂଚାଇ ଦେବାକୁ ଅନ୍ୟମାନେ କହୁଥିବାରୁ ମନେ ମନେ ବ୍ୟସ୍ତ ହେଉଥିଲେ। ରିଲିଫ କମିଟିର ମିଟିଂ ଡାକି  ଚାନ୍ଦା ସଂଗ୍ରହ କରିଦେଲେ ସବୁ ସମାଧାନ ହୋଇଯିବ ବୋଲି କଲେକ୍ଟରମାନଙ୍କୁ ଚିଠି ଲେଖି ସେ ବସି ନିଶ୍ଚିନ୍ତ ମନରେ ପିକା ଟାଣୁଥିଲେ ଏବଂ ଓଡ଼ିଆ ପିକା କେମିତି ଲାଗେ ଚାଖି ଦେଖିବେ ବୋଲି ଚିନ୍ତା କରୁଥିଲେ। ଲୋକେ ଖାଇବାକୁ ନ ପାଇ ସଲପ ଗଛ ଅଟା ଖାଉଥିବାରୁ ସେ ମନେ ମନେ ଖୁସି ହେଉଥିଲେ ଯେ ଲୋକେ ନୂଆ ଖାଦ୍ୟ ଆବିଷ୍କାର କରିଛନ୍ତି। ତେଣୁ ଅବସ୍ଥା ଏତେ ଆତଙ୍କଜନକ ନୁହେଁ ବୋଲି ସ୍ଥିର କରି ସେ ବୋର୍ଡକୁ ସେହି ମର୍ମରେ ଚିଠି ଲେଖିଥିଲେ।

ଚିଲିକା ଅଂଚଳର ଲୋକଙ୍କୁ କାମ ଯୋଗେଇବା ପାଇଁ ବାର୍ଲୋ  ପୁଣି ଲୁଣମରା କାମ ଆରମ୍ଭ କରିବାକୁ ପ୍ରସ୍ତାବ ଦେବାରୁ ରେଭନେଶା କିପରି ତାତ୍ପର୍ଯ୍ୟହୀନ  ବିପରୀତ  ଉପଦେଶ ଦେଇଛନ୍ତି, ଦେଖନ୍ତୁ –ବେଶୀ କାମ ହାତକୁ ନିଅ ନାହିଁ। ଯଦି ଲୋକେ ଅନାହାରରେ ଅଛନ୍ତି, ସେମାନେ କାମ ପାଇଁ ଦଶ ବାର ମାଇଲ ଯିବେ। ତେଣୁ ଯେଉଁ ଗାଁରେ ଅଭାବ ଅଛି,

ସେଇଠାରେ କାମ କରିବା ଆବଶ୍ୟକ ନୁହେଁ । ଲୋକେ କାମ ପାଖକୁ ଯିବା କଥା, କାମ ଲୋକଙ୍କ ପାଖକୁ ନୁହେଁ ।

ରେଭେନଶା ଭଦ୍ର, ମେଳାପି, ଶାନ୍ତଶିଷ୍ଟ ସ୍ୱଭାବର ଥିଲେ । ତାଙ୍କ ଓଡ଼ିଶା ଆଗମନ ସମୟରେ ତାଙ୍କ ଚରିତ୍ର ଉପରେ ମତ ରଖି କହିଛନ୍ତି ଔପନ୍ୟାସିକ । ଏଥିରେ ଦ୍ୱିମତ ହେବାର କୌଣସି କାରଣ ମଧ୍ୟ ଉପନ୍ୟାସରେ ନାହିଁ । ବରଂ ରେଭେନଶା ଚରିତ୍ର ଚିତ୍ରଣ ସମୟରେ ଔପନ୍ୟାସିକଙ୍କ ଲେଖନୀ କେତେବେଳେ ସମବେଦନାରେ ଆର୍ଦ୍ର ତ ଆଉ କେତେବେଳେ ସମାଲୋଚନାରେ ଶାଣିତ । ଓଡ଼ିଶାରେ ଦୁର୍ଭିକ୍ଷଜନିତ ଡକାୟତି ଯେତେବେଳେ ବଢୁଥିଲା ଏବଂ ଜେଲରେ କଏଦୀ ସଂଖ୍ୟା ବଢ଼ି ହଇଜା ବ୍ୟାପୁଥିଲା, ସେତେବେଳେ ରେଭେନଶା ଅତି ଅମାନୁଷିକ ଭାବେ ଅନାହାରକ୍ଲିଷ୍ଟ କଏଦୀମାନଙ୍କୁ ଜେଲ ବ୍ୟତୀତ ଚାବୁକ ପ୍ରହାର ଦେବାକୁ ସୁପାରିସ କରିବାକୁ ଚିନ୍ତା କରୁଥିଲେ । ଏହି ଗୋଟିଏ ଘଟଣା ବ୍ୟତୀତ ତାଙ୍କ ନିଷ୍ଠୁରତା ଓ ଅମାନବିକତାର ଅନ୍ୟ ଉଦାହରଣ ନାହିଁ । ଉଦାସୀନତା ଓ ଅମାନବିକତା ଏକା କଥା ନୁହେଁ । ଏହି ଘଟଣା ପରେ ପରେ ଲୋକମାନଙ୍କ ଦୁର୍ଗତି ସହ ପ୍ରଥମ ଚାକ୍ଷୁସ ପରିଚୟ ହୋଇଛି ରେଭେନଶାଙ୍କର । ବହୁ କଷ୍ଟରେ ସେ ଜଣେ ବ୍ରାହ୍ମଣକୁ ରନ୍ଧା କାମରେ ଲଗେଇ ମସପ୍ରାଟଙ୍କ ପାଖକୁ ଅତି ଦରଦୀ ଶବ୍ଦରେ ଲେଖିଛନ୍ତି- ଏ ଅଭାଗା ଲୋକେ ଆଜି ଅନ୍ତତଃ ଥରେ ପାଇଁ ପେଟପୂରା ଖାଇବେ । ସେହି ସମୟରେ ସେ ମସପ୍ରାଟଙ୍କୁ କେମଣା ଫାଣ୍ଡି ପାଖରେ ଗୋଟିଏ କାଙ୍ଗାଳକୁ ମଣିଷ ମାଂସ ଖାଉଥିବାର ଦେଖିଛନ୍ତି ବୋଲି ଲେଖିଛନ୍ତି । ତାକୁ ଲୋକେ ପାଗଳ ବୋଲି କହୁଥିଲେ । ତେବେ ତାକୁ ଡାକ୍ତର ପରୀକ୍ଷା ପାଇଁ ପଠାଇବାକୁ ସେ ବାଲେଶ୍ୱର କଲେକ୍ଟରଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ନ ହେଲେ ଲୋକେ ମଣିଷ ମାଂସ ଖାଇବା ପ୍ରଚାର ହୋଇଯିବାର ଆଶଙ୍କା ଥିଲା । ଏହି ଗୋଟିଏ ମାତ୍ର ଘଟଣା ସମୁଦାୟ ଉପନ୍ୟାସରେ ତାଙ୍କ ପ୍ରଶାସନିକ ଦକ୍ଷତା ସମ୍ପର୍କରେ ସାକ୍ଷ୍ୟ ଦିଏ । ନହେଲେ ସମଗ୍ର ଦୁର୍ଭିକ୍ଷ କାଳରେ ତାଙ୍କର ବାରମ୍ବାର ଭୁଲ ନିଷ୍ପତ୍ତି ଗୋଟାଏ ଅସହାୟ ଜାତିକୁ ନିଶ୍ଚିତ ମୃତ୍ୟୁ ମୁଖକୁ ଟାଣି ନେଇଛି । ଏହି ସମୟରେ ସେ କରିଥିବା ଭୁଲର ଗୋଟିଏ ନିରପେକ୍ଷ ତାଲିକା ନିମ୍ନ ମତେ ପ୍ରସ୍ତୁତ କରାଯାଇପାରେ ।

୧. ପ୍ରଥମରୁ ସେ ବାର୍ଲୋଙ୍କ ସତର୍କ ସୂଚନା ଓ ପରାମର୍ଶ ପ୍ରତି ଆଦୌ ଗୁରୁତ୍ୱ ଦେଇ ନାହାନ୍ତି । ଲୋକେ ଭୋକ ଉପାସରେ ଆଉଟୁପାଉଟୁ ହେଉଥିଲାବେଳେ ସେ ବଡ଼ ଧରଣର କୃଷି ମେଳାଟିଏ ଆୟୋଜନ କରିବାକୁ ଚିନ୍ତା କରି ବ୍ୟସ୍ତ ହେଉଛନ୍ତି ।

୨. ସବୁବେଳେ ସେ ଏକ ଭୁଲ ଧାରଣାର ବଶବର୍ତ୍ତୀ ହୋଇ ରହିଛନ୍ତି ଯେ, ଦେଶରେ ପ୍ରଚୁର ପରିମାଣରେ ଖାଦ୍ୟଶସ୍ୟ ମହଜୁଦ ଅଛି ।

୩. ସେ ସ୍ଥିର ସିଦ୍ଧାନ୍ତରେ ପହଂଚିଛନ୍ତି ଯେ କିଛି ଉଚ୍ଚ ଜାଗାରେ ଫସଲ ନଷ୍ଟ ହୋଇଥିଲେ ମଧ୍ୟ ଆଠ ଅଣା ଫସଲ ହୋଇଛି । ତେଣୁ ଖଜଣା ଦେବାକୁ ପ୍ରଜା ଓ ଜମିଦାରମାନଙ୍କ ପାଖରେ ସମ୍ବଳ ଅଛି । ସେଥିପାଇଁ ସେ ବାଲେଶ୍ୱର ଜିଲ୍ଲାର ଜମିଦାରମାନେ ଖଜଣା ଦେବାକୁ ମାସେ ଅଧିକ ସମୟ ମାଗି କରିଥିବା ଆବେଦନକୁ ବିଚାର ନ କରି ପ୍ରତ୍ୟାଖ୍ୟାନ କରି ଦେଇଛନ୍ତି ।

୪. ଦୁର୍ଭିକ୍ଷକୁ ଯେତେବେଳେ ଚାହିଁଥିଲେ ଆୟତ୍ତରେ ରଖାଯାଇ ପାରିଥା'ନ୍ତା, ସେତେବେଳେ ସେ ପରସ୍ଥିତିର ସମ୍ମୁଖୀନ ନ ହୋଇ ଗଡ଼ଜାତ ଗସ୍ତରେ ବାହାରି ଯାଇଛନ୍ତି ।

୫. ପରିସ୍ଥିତିର ଭୟାବହତା ଓ ବାସ୍ତବତା ପ୍ରତି ଦୃଷ୍ଟି ନ ଦେଇ ସେ କଲେକ୍ଟରମାନଙ୍କୁ ବାରମ୍ବାର ଅଯଥା ଦାର୍ଶନିକସୁଲଭ ଉପଦେଶ ଦେଇଛନ୍ତି ।

୬. ନିଜେ ପରିସ୍ଥିତି ଅନୁଧ୍ୟାନ ନ କରି ସେ ବୃନ୍ଦାବନ ମାରୁଆଡ଼ୀ, ପୁରୀର ଜମିଦାର ଓ କଟକରେ ତାଙ୍କୁ ଭେଟୁଥିବା ଲୋକମାନଙ୍କ କଥାକୁ ବିଶ୍ୱାସ କରି ଭୁଲ ନିଷ୍ପତ୍ତି ନେଇଛନ୍ତି । ଡମପଡ଼ାରେ ସେ ଚାହିଁଥିଲେ ନିଜେ କ୍ଷେତ୍ର ଅନୁଧ୍ୟାନ କରିପାରି ଥା'ନ୍ତେ । କିନ୍ତୁ ତାହା ନ କରି ସେ ପଚରାପଚରି କରି ଭୁଲ ସିଦ୍ଧାନ୍ତରେ ପହଂଚିଛନ୍ତି ଯେ ମାତ୍ର ଅଧେ ଫସଲ ନଷ୍ଟ ହୋଇଛି । ଅଧେ ଫସଲ ହେଲେ ଦୁର୍ଭିକ୍ଷ ପଡ଼ିବା ଅସମ୍ଭବ ବୋଲି ସେ ଦୃଢ଼ ନିଶ୍ଚିତ ରହିଛନ୍ତି ।

୭. ମନେ ମନେ ସେ ଭାବିଛନ୍ତି, ପ୍ରତି ଜିଲ୍ଲାରେ ସେ ରିଲିଫ କମିଟି ଗଢ଼ି ଦାତବ୍ୟ ଚାନ୍ଦା ସଂଗ୍ରହ କରିଦେଲେ ଦୁର୍ଭିକ୍ଷର ମୁକାବିଲା କରାଯାଇ ପାରିବ । ତେଣୁ ସେହି ମର୍ମରେ ଚିଠି ଲେଖି ସେ ନିଶ୍ଚିନ୍ତ ହୋଇଯାଇଛନ୍ତି ।

୮. ସେ ସବୁବେଳେ ତିନୋଟି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ରହିଛନ୍ତି । ପ୍ରଥମ– ଲୋକେ ଖାଇବାକୁ ନ ପାଇଲେ କାମ ପାଖକୁ ଯିବେ । ଦ୍ୱିତୀୟ - ଦରକାର ଥିଲେ ମହଙ୍ଗା ହେଲେ ବି ଚାଉଳ ଆପେ ଆପେ ଦରକାର ସ୍ଥାନରେ ପହଂଚିବ । ତୃତୀୟ – ଖାଦ୍ୟାଭାବ ପଡ଼ିଲେ ଲୋକଙ୍କୁ ଅନ୍ୟ ସ୍ଥାନକୁ ସ୍ଥାନାନ୍ତର କରିଦେଲେ,ସମସ୍ୟାର ସମାଧାନ ହୋଇଯିବ ।

୯. ପରିସ୍ଥିତି ଅତ୍ୟନ୍ତ ଅଣାୟତ୍ତ ହୋଇପଡ଼ିଲା ପରେ ଯାଇ ସେ ନିଜର ଭୁଲ ବୁଝି ପାରିଛନ୍ତି ଓ ବାହାରୁ ଚାଉଳ ଆମଦାନି କରିବାର ନିଷ୍ପତ୍ତି ନେଇଛନ୍ତି ।

୧୦. ପୁଣି ଚାଉଳ ବତିଘରେ ପହଂଚିବା ପରେ ତାକୁ କଟକ ଆଣିବାର ବ୍ୟବାସ୍ଥା ନ କରି ପୁରୀ ଗସ୍ତରେ ବାହାରି ଯାଇଛନ୍ତି ।

ରେଭେନଶାଙ୍କ ବ୍ୟକ୍ତିତ୍ୱକୁ ପ୍ରଶଂସା କରି ଔପନ୍ୟାସିକ ମତ ଦେଇଛନ୍ତି-ରେଭେନଶା ଲୋକ ହିସାବରେ ଅତି ଉତ୍ତମ ଥିଲେ, କିନ୍ତୁ ତାଙ୍କର ବିଚାର ବୁଦ୍ଧି ଓ କାମ ଥିଲା ଅଦ୍ଭୁତ ପ୍ରକାରର ।''''

ଦୃଢ଼ତାର ସହିତ ପରିସ୍ଥିତିକୁ ସମ୍ମୁଖୀନ ହେବା ଶାସକର ସର୍ବଶ୍ରେଷ୍ଠ ଗୁଣ, ଯାହା ରେଭେନଶାଙ୍କ ପାଖରେ ଅଭାବ ଥିଲା। ନିଜେ ଭୁଲ ଧାରଣାର ବଶବର୍ତ୍ତୀ ହୋଇ ସେ ଅନ୍ୟମାନଙ୍କ ମତ କିମ୍ବା ପରାମର୍ଶ ଉପରେ କେବେ ଗୁରୁତ୍ୱ ଦେଇ ନାହାନ୍ତି। ବରଂ ନିଜର ମତକୁ ଅନ୍ୟମାନଙ୍କ ଉପରେ ଜୋର୍ କରି ଲଦି ଦେବାକୁ ସବୁବେଳେ କିତାବୀ ଉପଦେଶ ଓ ଶାସକୀୟ ଚାତୁର୍ଯ୍ୟର ଆଶ୍ରୟ ନେଇଛନ୍ତି।

୧୮୬୫ ଜୁଲାଇ ତିନି ତାରିଖରେ ଓଡ଼ିଶାରେ ପହଂଚିଲା ବେଳେ ରେଭେନଶା ଓଡ଼ିଶା ଉପରେ ବିରକ୍ତ। ଓଡ଼ିଆମାନଙ୍କ ସମ୍ବନ୍ଧରେ ତାଙ୍କର ବହୁତ ଭୁଲ ଧାରଣା। ତାଙ୍କ ଭାବନାରେ ଇଂରେଜମାନଙ୍କ ଅଧୀନରେ ଭାରତର ଯେତେ ଲୋକ ଅଛନ୍ତି, ତା' ଭିତରେ ଓଡ଼ିଆମାନେ ସବୁଠାରୁ ନିର୍ବୋଧ ଓ ଅଭଦ୍ର। ଓଡ଼ିଆମାନେ ଏକ ଅଳସୁଆ ଓ ମାଇଚିଆ ଜାତି। ପୁରୁଷସୁଲଭ ସ୍ଫୂର୍ତ୍ତି ସେମାନଙ୍କ ପାଖରେ ନାହିଁ। ଏ ଧାରଣା ଅଚିରେ ପରିବର୍ତ୍ତିତ ହୋଇଛି। ରେଭେନଶା ଓଡ଼ିଶାକୁ ଏତେ ଭଲ ପାଇଛନ୍ତି ଯେ ଓଡ଼ିଶା ଛାଡ଼ିଯିବାକୁ ତ ଚାହିଁ ନାହାନ୍ତି, ବରଂ ଓଡ଼ିଶା ଛାଡ଼ିବାର ଦୀର୍ଘ କୋଡ଼ିଏ ବର୍ଷ ପରେ ସୁଦୂର ବିଲାତରେ ଜୀବନର ମଧୁର ସ୍ମୃତି ଭାବେ ସାଇତି ରଖିଛନ୍ତି ଓଡ଼ିଶାରୁ ନେଇଥିବା କଟକର ତାରକସି କାମ, ହୁକା, ଢେଙ୍କାନାଳ ରାଜା ଦେଇଥିବା ଛୁରି ଓ କଟୁରି, ଦୁଇଟି ହାତୀ ଦାନ୍ତ, କେନ୍ଦୁଝରର ଆଦିବାସୀ ଅସ୍ତ୍ରଶସ୍ତ୍ର ଇତ୍ୟାଦି। ଏପରିକି ଏତେଦିନ ପରେ ବି ସେ ଓଡ଼ିଶାର ପିକା ଟାଣିବା ଅଭ୍ୟାସ ସେ ପର୍ଯ୍ୟନ୍ତ ଛାଡ଼ିପାରି ନ ଥିଲେ। ମଧୁବାବୁଙ୍କୁ ଖଣ୍ଡେ ବିଡ଼ି ଦେଇ ପାଖରେ ବସାଇ ସେ ନିହାତି ଆତ୍ମୀୟଙ୍କ ପରି ଓଡ଼ିଶାର ଭଲମନ୍ଦ, ସୁଖଦୁଃଖ ପଚାରି ବୁଝିଛନ୍ତି ଏବଂ ମଧୁବାବୁ ବିଦାୟ ନେଇ ଆସିଲାବେଳେ ସେ ତାଙ୍କ ପୁରୁଣା ବନ୍ଧୁମାନଙ୍କୁ ମନେପକେଇ ସେମାନଙ୍କ ଉଦ୍ଦେଶ୍ୟରେ ସଲାମ ପଠେଇଛନ୍ତି। ବୁଢ଼ା ବୟସରେ ବି ରେଭେନଶା ଆଉଥରେ ଓଡ଼ିଶା ବୁଲି ଆସିବାକୁ ଚାହୁଁଥିଲେ। ତାହା ଅବଶ୍ୟ ସମ୍ଭବ ହୋଇ ନ ଥିଲା।

ଏ ହେଉଛି 'ଦେଶ କାଳ ପାତ୍ର'ର ସାର୍ଥକତା। ଏହା ବି ହେଉଛି ଶ୍ରୀ ଦାସଙ୍କ କଥାଶିଳ୍ପର ଚାତୁର୍ଯ୍ୟ। ଯେଉଁଠୁ ଆରମ୍ଭ ହୁଏ, କଥା ପ୍ରବାହ ବୁଲି ବୁଲି ପୁଣି ସେହି ମୂଳ ବିନ୍ଦୁକୁ ଫେରି ଆସେ। ରେଭେନଶା ପ୍ରସଙ୍ଗ ଆରମ୍ଭ ଓଡ଼ିଶା ଉପରେ ବିରକ୍ତିରୁ, ଶେଷ ଓଡ଼ିଶା ପ୍ରତି ଅଶେଷ ମମତ୍ୱରେ। କଥା ପରିଧିର ଚଟୁଳତା ଭିତରେ ଯାହା ରେଖାଙ୍କିତ ହୋଇଉଠିଛି, ତାହା ହେଉଛି ଶ୍ରୀ ଦାସଙ୍କ ଜାତୀୟତା ଆଉ ଦେଶପ୍ରେମ।

ନଅଙ୍କର ଦୀର୍ଘ ଅଶୀ ପୃଷ୍ଠାରୁ ଊର୍ଦ୍ଧ୍ୱ ବର୍ଣ୍ଣନା ଭିତରେ ଏହି ପ୍ରାକୃତିକ ଦୁର୍ବିପାକ ସମୟରେ ସରକାରୀ ଉଦାସୀନତାକୁ ଔପନ୍ୟାସିକ ତୀବ୍ର ସମାଲୋଚନା କରିଛନ୍ତି। ସରକାର ସାମାନ୍ୟ

ତତ୍ପରତା ଦେଖାଇ ଓଡ଼ିଶାକୁ ଚାଉଳ ଆମଦାନି କରିବାର ଅନୁମତି ଦେଇଥିଲେ, ଏହି ଭୟାବହ ଦୁର୍ଭିକ୍ଷକୁ ସହଜରେ ଏଡ଼େଇ ଦେଇ ହୋଇଥା'ନ୍ତା । କିନ୍ତୁ କେବଳ କମିଶନର ରେଭେନଶା ନୁହନ୍ତି, ଛୋଟଲାଟ ବୀଡ଼ନ. ବୋର୍ଡ ସେକ୍ରେଟାରୀ ଚାପମ୍ୟାନ, ରେଭିନ୍ୟୁ ବୋର୍ଡର ସିନିଅର ସଭ୍ୟ ଏ.ଗ୍ରୋଟ୍ ସମସ୍ତେ ଓଡ଼ିଶାକୁ ଚାଉଳ ଆମଦାନି ବିରୁଦ୍ଧରେ ଶେଷ ପର୍ଯ୍ୟନ୍ତ ଜିଦି ଧରି ବସିଛନ୍ତି । ଚାଉଳ ଦରକାର ଥିଲେ, ତାହା ଆପେ ଆପେ ଦରକାରୀ ସ୍ଥାନରେ ପହଂଚିବ ବୋଲି ସେମାନଙ୍କର ବଦ୍ଧମୂଳ ଧାରଣା । ଏ ଧାରଣାର ମୂଳରେ ଅଛି, ସେତେବେଳେ ଭାରତରେ କାମ କରୁଥିବା ଇଂରେଜ ଅଫିସରମାନଙ୍କ ଅଦୃଶ୍ୟ ପରାମର୍ଶଦାତା ଜନ୍ ହ୍ଟୁଆର୍ଟ ମିଲଙ୍କ ଗୋଟିଏ ସିଦ୍ଧାନ୍ତ । ଏହି ରାଜନୀତିକ ଅର୍ଥଶାସ୍ତ୍ରୀ ଓ ଦାର୍ଶନିକଙ୍କ ମତ ଥିଲା-ସରକାରୀ ଖର୍ଚ୍ଚରେ ଦୂରରୁ ଖାଦ୍ୟଦ୍ରବ୍ୟ ମଗାଇବାର ସିଧାସଳଖ ବ୍ୟବସ୍ଥା କେବଳ ସେତିକିବେଳେ ଯଥାର୍ଥ ହୋଇପାରେ, ଯେତେବେଳେ କୌଣସି ବିଶେଷ କାରଣରୁ ଏହା ବେସରକାରୀ ଲାଭ ବିବେଚନା ଦ୍ୱାରା ନ ହେବାର ସମ୍ଭାବନା ଥାଏ । ଅନ୍ୟ ସମୟରେ ଏପରି ବ୍ୟବସ୍ଥା କରିବା ଏକ ବିରାଟ ଭୁଲ । ଏପରି ହେଲେ ବେସରକାରୀ ବେପାରୀ ସରକାର ସହିତ ପ୍ରତିଯୋଗିତା କରିବା ପାଇଁ ସାହସ କରିବେ ନାହିଁ ଏବଂ ଯଦିଓ ସରକାର ଯେ କୌଣସି ଜଣେ ବ୍ୟବସାୟୀ ଅପେକ୍ଷା ବେଶି କରିପାରିବେ,ସବୁ ବ୍ୟବସାୟୀ ମିଶି ଯାହା କରିବେ,ସରକାର କେବେ ହେଲେ ସେତେ କରିପାରିବେ ନାହିଁ । "" ଏହି ଗୋଟିଏ ତତ୍ତ୍ୱ ପାଇଁ ଗୋଟାଏ ଜାତିର ମେରୁଦଣ୍ଡ ଭାଙ୍ଗିଗଲା । ଏହି ଲୋମହର୍ଷଣକାରୀ ଦୁର୍ଭିକ୍ଷ ଓଡ଼ିଶାର କି ଶୋଚନୀୟ ଦୁର୍ଦ୍ଦଶା ସୃଷ୍ଟି କରିଥିଲା, ତାହା ଉପନ୍ୟାସର ନିମ୍ନୋକ୍ତ ବିବରଣୀରୁ ଅନୁମାନ କରାଯାଇପାରେ ।

୧. ୧୮୬୫ ନଭେମ୍ବର ମାସ ସୁଦ୍ଧା ସବୁଆଡ଼େ ଲୋକେ ଚାଉଳ ବଦଳରେ ଚେର, ମୂଳ, କଇଁନାଡ଼,କଣିକାମୂଳ, ତେନ୍ତୁଳିପତ୍ର ଓ ଦହଣା ଇତ୍ୟାଦି ଖାଇ ବଂଚି ରହିଥିଲେ ।

୨. ମାଲୁଦ ଅଂଚଳରେ ଲୁଣ ତିଆରି ବନ୍ଦ ହୋଇଯାଇଥିବାରୁ ସେଠାରେ ଲୋକେ ଅନାହାରରେ ମରୁଥିଲେ ।

୩. ବାଲେଶ୍ୱରରେ ୧୮୬୬ ଅଗଷ୍ଟ ପହିଲାରୁ ବାର ତାରିଖ, ୧୨ ଦିନ ଭିତରେ ୧୦୧୩ ଜଣ ମରିଯାଇଥିଲେ ।

୪. କେନ୍ଦ୍ରାପଡ଼ାରୁ ଫେରିବା ରାସ୍ତାରେ ରେଭେନଶା ଦଶ ମାଇଲ ରାସ୍ତାରେ ୨୩୮ଟି ମଣିଷ ଖପୁରି ଦେଖିଥିଲେ ।

୫. କେନ୍ଦ୍ରାପଡ଼ାର ଜନସଂଖ୍ୟାର ଶତକଡ଼ା ପଚିଶ ମରି ଯାଇଥିଲେ ।

୬.  ପୁରୀ ଜିଲ୍ଲାର ୪୦୧୫୦୧ ଲୋକଙ୍କ ଭିତରୁ ୧୬୭୩୫୬ ଜଣ ମରି ଯାଇଥିଲେ। ପୁରୀ ସହରକୁ ମିଶେଇ ପୁରୀ ଜିଲ୍ଲାର ଜନସଂଖ୍ୟାର ଅନ୍ତତଃ ପଚାଶ ପ୍ରତିଶତ ଲୋକ ଦୁର୍ଭିକ୍ଷରେ ମରିଯାଇଥିଲେ।

୭.  ରିଲିଫ ଆସିଷ୍ଟାଂଟ କଲେକ୍ଟର ଜି.ଏମ୍ .କରି ଚିଲିକାର ଗୋଟିଏ ଗାଁକୁ ଯାଇ ୨୮ଟି ପରିବାରରେ ମାତ୍ର ୨ଜଣ ଲୋକ  ଜୀବିତ ଥିବାର ଦେଖିଥିଲେ।

ଏ ଦୁର୍ଭିକ୍ଷରେ ଲୋକେ ମଣିଷ ମାଂସ ଖାଇବାର ଅନ୍ତତଃ  ଚାରିଟି ଚାକ୍ଷୁସ ପ୍ରମାଣ ଅଛି।

୧.  ରାଧାନାଥ ସ୍କୁଲରୁ ଫେରିବା ବାଟରେ ଗୋଟିଏ ପିଲାକୁ ଗୋଟିଏ ମଣିଷ ହାତଖଣ୍ଡକୁ ଚୋବେଇ କଂଚା ମାଂସ ଖାଉଥିବାର ଦେଖିଥିଲେ।

୨.  ଖୋଦ ରେଭେନଶା କେମଣା ଫାଣ୍ଡି ପାଖରେ ଜଣେ କାଙ୍ଗାଳ ମଣିଷ ମାଂସ ଖାଉଥିବାର ଦେଖିଥିଲେ।

୩.  କେନ୍ଦ୍ରାପଡ଼ାରେ ଜଣେ ଛୋଟ ଜାତିର ଲୋକ ଗୋବରୀ ନଦୀରେ ଭାସୁଥିବା ଗୋଟେ ଛୋଟ ପିଲାର ଶବକୁ ଆଣି ରାନ୍ଧି ଖାଇଥିଲା।

୪.  କେନ୍ଦ୍ରାପଡ଼ାର ଡେପୁଟି କଲେକ୍ଟର ଓ ମାଜିଷ୍ଟ୍ରେଟ ବାବୁ ଦୁର୍ଯ୍ୟୋଧନ ଦାସ ଜଣେ ଲୋକ ମଣିଷ ମାଂସ ଖାଇଥିବା କଥା ଚପରାସୀ ଓ ବରକନ୍ଦାଜମାନଙ୍କ ଠାରୁ ଶୁଣିଥିଲେ।

ନଅଙ୍କର ସ୍ଥୁଳ ଓ ସଂକ୍ଷିପ୍ତ ଚିତ୍ର ଦୁର୍ଭିକ୍ଷ କମିଶନ ଆଗରେ କେନ୍ଦ୍ରାପଡ଼ାର ପୂର୍ବତନ ଡେପୁଟି କଲେକ୍ଟର ଓ ମାଜିଷ୍ଟ୍ରେଟ ବାବୁ ଦୁର୍ଯ୍ୟୋଧନ ଦାସଙ୍କ ସାକ୍ଷ୍ୟର ମାତ୍ର ତିନି ଚାରିଟି ବାକ୍ୟରୁ ମିଳିଥାଏ। ସେ କହିଥିଲେ: ୧୮୬୫-୬୬ ସାଲରେ ମାତ୍ର ଚାରିଅଣା ଫସଲ ହୋଇଥିଲା ଏବଂ ମାର୍ଚ୍ଚ ୧୮୬୬ରୁ ଦୁର୍ଭିକ୍ଷଜନିତ ମୃତ୍ୟୁ ଆରମ୍ଭ ହୋଇଥିଲା। ଏପ୍ରିଲ, ମେ, ଜୁନ୍‌ରେ ମୃତ୍ୟୁ ସଂଖ୍ୟା ବଢ଼ି ଚାଲିଲା। ଜୁଲାଇରେ ହଇଜା ଯୋଗୁଁ ଅବସ୍ଥା ଆହୁରି ଖରାପ ହେଲା। କେନ୍ଦ୍ରାପଡ଼ାର ଜନସଂଖ୍ୟାର ଶତକଡ଼ା ପଚିଶ ମରି ଯାଇଥିଲେ। ସେପ୍ଟେମ୍ବର ମାସରେ ବିଆଳି ଧାନ ଆସିବାରୁ ଅବସ୍ଥାର ସୁଧାର ହେଲା।

ନଅଙ୍କ ଦୁର୍ଭିକ୍ଷର ତଥ୍ୟନିଷ୍ଠ, ଯୁକ୍ତିବାଦୀ ବର୍ଣ୍ଣନା 'ଦେଶ କାଳ ପାତ୍ର'। ଘଟଣାର ଘନଘଟା ଅଛି, କିନ୍ତୁ ଅତିରଞ୍ଜନ ନାହିଁ। ଭାଷାରେ ଯଥେଷ୍ଟ ସମବେଦନା ଅଛି, କିନ୍ତୁ ଭାବପ୍ରବଣତା ନାହିଁ। ଗୋଟାଏ ଅପରାଜେୟ  ସମରାଭିଳାଷୀ ଜାତି ବିଦେଶୀ ଶାସକଙ୍କ ନିସ୍ପୃହତା ଓ ତ୍ରୁଟିଯୁକ୍ତ ସିଦ୍ଧାନ୍ତ ଯୋଗୁଁ ତଳିତଳାନ୍ତ ହୋଇଯାଇଛି; କିନ୍ତୁ ପରାଜୟ ସ୍ୱୀକାର କରିନି। ଅବିଜିତ ପ୍ରଚଣ୍ଡ

ପ୍ରାଣଶକ୍ତିରେ ପୁଣି ପୁନର୍ଜୀବିତ ହୋଇ ଶତ ସିଂହର ପରାକ୍ରମରେ ମାତି ଉଠିଛି। ଏହା ହିଁ ଔପନ୍ୟାସିକଙ୍କର ଶ୍ରେଷ୍ଠତମ ବାର୍ତ୍ତା।

ଆଲୋଚନାର ଏହି ପର୍ଯ୍ୟାୟରେ ଆଉ ଜଣଙ୍କୁ ସ୍ମରଣ ନ କଲେ ଆଲୋଚନା ଅପୂର୍ଣ୍ଣ ରହିଯିବ। ସେ ହେଉଛନ୍ତି ବେଙ୍ଗଲ ଚାମ୍ବରର ଭାଇସ ପ୍ରେସିଡେଣ୍ଟ ଆର.ସ୍କଟ ମନକ୍ରିଫ୍। ଦୁର୍ଭିକ୍ଷ ଭୟାବହ ରୂପ ନେବା ଆଗରୁ ସେ ଛୋଟଲାଟଙ୍କୁ ଓଡ଼ିଶାକୁ ଚାଉଳ ପଠାଇବା ପାଇଁ କେବଳ ସୁଚିନ୍ତିତ ପରାମର୍ଶ ଦେଇ ନାହାନ୍ତି, ନିଜେ ଏହି ଦାୟିତ୍ୱ ବହନ କରିବାକୁ ସ୍ୱଇଚ୍ଛାରେ ରାଜି ମଧ୍ୟ ହୋଇଛନ୍ତି। ପୁଣି ୧୮୬୬ ମେ ମାସରେ ଓଡ଼ିଶାର ଭୟାବହ ପରିସ୍ଥିତି ସମ୍ପର୍କରେ ସେ ଉଭୟ ଛୋଟଲାଟ ଓ ବଡ଼ଲାଟଙ୍କୁ ଦୀର୍ଘ ପତ୍ର ଲେଖି ଅବହିତ କରିବା ସଙ୍ଗେ ସଙ୍ଗେ ଆରାକାନରୁ ଚାଉଳ କିଣି ପଠାଇବାକୁ ଅନୁରୋଧ କରିଛନ୍ତି। ପୁଣି ଜୁନ୍ ୨୧ତାରିଖ ଦିନ ବୋର୍ଡ ସେକ୍ରେଟାରୀଙ୍କୁ ଚରମ ପତ୍ର ଲେଖି କଲିକତାରେ ଶେରିଫଙ୍କୁ କହି ଆଲୋଚନା କରିବାର ଧମକ ମଧ୍ୟ ଦେଇଛନ୍ତି। ବାର୍ଲୋଙ୍କ ପରି ମନକ୍ରିଫ୍ ବି ଥିଲେ ଓଡ଼ିଆଙ୍କ ପ୍ରତି ଦରଦୀ ଓ ଓଡ଼ିଶାର ଚିର ହିତାକାଙ୍କ୍ଷୀ। ତାଙ୍କୁ ଉପନ୍ୟାସରେ ଯଥାଯୋଗ୍ୟ ମର୍ଯ୍ୟାଦା ଦେଇ ଔପନ୍ୟାସିକ ଏକ ଐତିହାସିକ ଋଣ ପରିଶୋଧ କରିଛନ୍ତି।

ପ୍ରଶାସକ ହିସାବରେ ଔପନ୍ୟାସିକଙ୍କ ପ୍ରତ୍ୟକ୍ଷ ଅଭିଜ୍ଞତାର ସୂଚନା ପୂର୍ବରୁ ଦିଆ ଯାଇଛି। ସରକାରୀ କଳର ଯାନ୍ତ୍ରିକତାର ବହୁ ଉଦାହରଣ ଏହି ଉପନ୍ୟାସରୁ ମିଳେ। ସରକାରୀ ଅଫିସରଙ୍କ ବିଚିତ୍ର ଆଚରଣ ଓ ହାସ୍ୟାସ୍ପଦ ଅଭିବ୍ୟକ୍ତିର ସର୍ବଶ୍ରେଷ୍ଠ ଉଦାହରଣ ହେଉଛି ଛୋଟଲାଟ ବୀଡ଼ନଙ୍କ ତାତ୍ପର୍ଯ୍ୟହୀନ ଭାଷଣ। ଓଡ଼ିଶାରେ ଲୋକ ପୋକ ମାଛି ପରି ମରୁଥିବା ବେଳେ ଛୋଟଲାଟ ବୀଡ଼ନ ଦୁର୍ଭିକ୍ଷ ପରିସ୍ଥିତିକୁ ନିୟନ୍ତ୍ରଣ କରିବାକୁ ଓଡ଼ିଶା ଆସି ନାହାନ୍ତି, ଆସିଛନ୍ତି ଇରିଗେସନ କମ୍ପାନୀର କାମ ଦେଖିବାକୁ ଏବଂ କଟକରେ ଦରବାର ବସେଇ ଓଡ଼ିଶାର ରାଜା ଜମିଦାରମାନଙ୍କୁ ଭେଟିବାକୁ। ଏହି ଦରବାର ପ୍ରତି କଥାକାରଙ୍କ ମନୋଭାବ ନିମ୍ନ ପ୍ରଦତ୍ତ ହାସ୍ୟୋଦ୍ଦୀପକ ଶୀତଳ ବ୍ୟଙ୍ଗରୁ ବୁଝା ପଡ଼ିବ।

୧.ଏଥିରେ ଏକମାତ୍ର ଦୃଷ୍ଟିକଟୁ ଜିନିଷ ଥିଲା, ଏଇ ସମୟରେ ସହରର ରାସ୍ତାଘାଟରେ ଅସ୍ଥିକଙ୍କାଳସାର ଦଳ ଦଳ ଭିଖାରି ସ୍ତ୍ରୀ, ପୁରୁଷ, ପିଲା 'ମା, ପେଜ ମୁନ୍ଦାଏ ଦିଅ'ବୋଲି ଡାକି ବୁଲୁଥିବା।''''

୨.ଏଥର ଛୋଟଲାଟ ଠିଆ ହେବାରୁ ସଭାଗୃହ କରତାଳିରେ କମ୍ପି ଉଠିଲା ଏବଂ ଦିବ୍ୟସିଂହ ତା' ପାଖରେ ବସିଥିବା ଟୋକା ଧନୁର୍ଜୟକୁ ଠେଲି ଦେଇ କହିଲା,ଆମ ନଅରରେ ଗୋଟାଏ ପାତି ମାଙ୍କଡ଼ ଅଛି; ଏ ଲୋକଟା ଠିକ୍ ତା'ରି ପରି ଦିଶୁଛି।''''

ନିଜେ ଛୋଟଲାଟ ବୀଡ଼ନ ମଧ୍ୟ ତାଙ୍କ ଭାଷଣରେ ପରିସ୍ଥିତିର ପ୍ରତିକୂଳରେ ଗୁଡ଼ାଏ ଅଯଥା କଥା କହି କମ୍ ହାସ୍ୟାସ୍ପଦ ହୋଇ ନାହାନ୍ତି । ମୁଁ ଏଠାରେ ତାଙ୍କ ଭାଷଣର କେତୋଟି ପରିସ୍ଥିତି ବିପରୀତ ଅଭିବ୍ୟକ୍ତି ଉଦ୍ଧାର କରି ତାହାର ହାସ୍ୟକର ଦିଗ ସୂଚିତ କରିବାର ଲୋଭ ସମ୍ବରଣ କରି ପାରୁନାହିଁ ।

୧.ମୁଁ ଏପରି ସମୟରେ ଆପଣମାନଙ୍କ ପାଖକୁ ଆସିଛି, ଯେତେବେଳେ ଆପଣମାନେ ଅନାବୃଷ୍ଟିର ଦୁଃଖଦ ପରିଣାମ ଭୋଗୁଛନ୍ତି । ଏପରି ଦୈବୀ ଦୁର୍ବିପାକରେ ସରକାର କୌଣସି ପ୍ରତିକାର ବା ଉପଶମ କରିବା ସମ୍ଭବ ନୁହେଁ । ପାଣିପାଗ ଭଗବାନଙ୍କ ହାତର କଥା ଏବଂ ମଣିଷ ତାକୁ ନିୟନ୍ତ୍ରଣ କରିପାରିବ ନାହିଁ ।

୨.ଚାଉଳ ବ୍ୟବସାୟୀଙ୍କୁ ଅନେକ ସମୟରେ ସର୍ବସାଧାରଣଙ୍କର ଶତ୍ରୁ ବୋଲି ମନେକରା ଯାଇଥାଏ,କିନ୍ତୁ ଏମାନେ ପ୍ରକୃତରେ ଲୋକମାନଙ୍କର ସର୍ବଶ୍ରେଷ୍ଠ ବନ୍ଧୁ; କାରଣ ଏମାନଙ୍କ ବିନା ଚାଉଳ ରହିବ ନାହିଁ, ଧାନ ଅମଳ ହେବା ସଙ୍ଗେସଙ୍ଗେ ଲୋକେ ତାକୁ ଖାଇଦେବେ ଏବଂ କେବେ ଅନାବୃଷ୍ଟି ହେଲା ମାତ୍ରେ ହିଁ ଅନାହାର ଓ ଦୁର୍ଗତି ହେବ, ଯାହା ବର୍ତ୍ତମାନ ହେବା ଅସମ୍ଭବ ।

୩.ଆପଣମାନଙ୍କୁ ବିଶେଷ ଅଧିକାର ଦିଆଯାଇଛି ଏବଂ ଆପଣମାନେ ଏଥିପାଇଁ କୃତଜ୍ଞତା ଜଣାଇବା ଉଚିତ ।

ଛୋଟଲାଟଙ୍କର ଏହି ପ୍ରଗଲ୍‌ଭତାକୁ ତୀବ୍ର ସମାଲୋଚନା କରି ‘ହିନ୍ଦୁ ପାଟ୍ରିଅଟ’ ପତ୍ରିକା ଲେଖିଥିଲା :

୧.ଲୋକମାନେ ନ ଖାଇ ମରୁଥିଲା ବେଳେ ମିଷ୍ଟର ବୀଡ଼ନ ସୁଶାସନର ଆଶୀର୍ବାଦ ବିଷୟରେ ଅତି ସୁନ୍ଦରଭାବେ କହିଥିଲେ ।

୨.ଲୋକମାନେ ସର୍ବଗ୍ରାସୀ ଦୁର୍ଭିକ୍ଷର କବଳରେ ଥିଲା ବେଳେ ସେ ଅପରାଧ ନିରାକରଣ ଓ ତ୍ୱରାନ୍ୱିତ ବିଚାର ପ୍ରଣାଳୀ ବିଷୟରେ କହିଥିଲେ ।

୩.ସାରାଦେଶରେ ଚାରିଦିଗରୁ ଯେତେବେଳେ ହା ଅନ୍ନର ଚିତ୍କାର ଶୁଭୁଥିଲା, ସେ ସ୍ଥାନୀୟ ଉନ୍ନତି ବିଷୟରେ କହିଥିଲେ ।

୪.ଲକ୍ଷ ଲକ୍ଷ ଭୋକିଲା ଲୋକଙ୍କର କ’ଣ ଯାଏ ଆସେ, ସେମାନଙ୍କୁ ଯଦି କୁହାଯାଏ ଯେ ସରକାରଙ୍କର ଉଦ୍ଦେଶ୍ୟ ଉଦାର ଓ ନ୍ୟାୟସଙ୍ଗତ ? "'"

ଅନ୍ୟ କଥା ଦୂରେ ଥାଉ; ଓଡ଼ିଶାର ଲକ୍ଷ ଲକ୍ଷ ଜନତା ଭୋକରେ ଆଉଟୁପାଉଟୁ ହେଲାବେଳେ ଛୋଟଲାଟ ଓ ବଡ଼ଲାଟ ସିମିଲା, ଦାର୍ଜିଲିଂର ଗ୍ରୀଷ୍ମ ନିବାସରେ ଗରମରୁ ଆତ୍ମରକ୍ଷା କରିଛନ୍ତି। ଲକ୍ଷ ଲକ୍ଷ ବୁଭୁକ୍ଷୁ ଜନତାର ଆର୍ତ୍ତ ଚିତ୍କାରକୁ ଉପେକ୍ଷା କରି ଛୋଟ ଲାଟ ନିଜ ସ୍ୱାସ୍ଥ୍ୟ ରକ୍ଷା ପାଇଁ ଦାର୍ଜିଲିଂ ଚାଲିଯାଇଛନ୍ତି। ପୁଣି ଓଡ଼ିଶାର ତତ୍କାଳୀନ ଭାଗ୍ୟ ବିଧାତା ରେଭେନଶା, ତାଙ୍କ ସ୍ତ୍ରୀ ହଠାତ୍ ଇଂଲଣ୍ଡରୁ ଫେରି ଆସିବାରୁ ସେଥିପାଇଁ ବ୍ୟସ୍ତ ରହି ଦୁର୍ଭିକ୍ଷ କାମ ତଦାରଖ କରିପାରି ନାହାନ୍ତି। ଏହାଠାରୁ ବଳି ଦୁର୍ଭାଗ୍ୟର ବିଷୟ ଆଉ କ'ଣ ଥାଇପାରେ।

ଏହି ଦୁର୍ଭିକ୍ଷ ସମ୍ପର୍କରେ ବ୍ରିଟିଶ୍ ହାଉସ୍ ଅଫ୍ କମନ୍‌ସ ଦେଇଥିବା ବିବୃତି ଏକ ସର୍ବକାଳୀନ ସତ୍ୟ। ତାହା ଲିପିବଦ୍ଧ କରି କଥାକାର ଏକ ଜାତୀୟ କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି। ବିବୃତିଟି ଉଦ୍ଧାର କରି ମୁଁ ଆଲୋଚନାର ଏହି ପର୍ଯ୍ୟାୟ ଶେଷ କରୁଛି।

"ଓଡ଼ିଶାର ଦୁର୍ଭିକ୍ଷ ଚିରଦିନ ପାଇଁ ଆମର ବିଫଳତାର ଏକ ସ୍ମୃତିସ୍ତମ୍ଭ ହୋଇ ରହିବ; ଆମର ଦେଶବାସୀ,ଆମର ସରକାର,ଭାରତରେ ଥିବା ଆମର ଯେଉଁ ଅଫିସରଙ୍କ ପାଇଁ ଆମର ଗର୍ବ, ସମସ୍ତଙ୍କ ପାଇଁ ଏହା ଏକ ଅପମାନ।"

'ଦେଶ କାଳ ପାତ୍ର' ଏକ ସ୍ୱୀକୃତ ବାସ୍ତବବାଦୀ ଉପନ୍ୟାସ। ଦୁର୍ଭିକ୍ଷ ପୀଡ଼ିତ ଓଡ଼ିଶାର ଆତ୍ମାର ଏହା ମୌନ ଅଥଚ ମୁଖର ଇସ୍ତାହାର। ଔପନ୍ୟାସିକ କୌଣସି ତାତ୍ପର୍ଯ୍ୟହୀନ ପ୍ରଚଳିତ ଧାରଣାର ବଶବର୍ତ୍ତୀ ନ ହୋଇ, ଏଥିରେ ଗବେଷଣାଲବ୍ଧ ତଥ୍ୟନିଷ୍ଠ ସତ୍ୟର ଉପସ୍ଥାପନା କରିଛନ୍ତି। ଔପନ୍ୟାସିକଙ୍କ ନିର୍ଭୀକ ବ୍ୟକ୍ତିତ୍ୱ,ସତ୍ୟ ପ୍ରତି ଅକୃତ୍ରିମ ବିଶ୍ୱସ୍ତତା, ଯୁକ୍ତିପ୍ରିୟତା, ତର୍କସିଦ୍ଧ ଗଦ୍ୟର ସହଜ ସାବଲୀଳ ରୀତି,ସ୍ପଷ୍ଟ ପରିଚ୍ଛନ୍ନ କଥନ ଶୈଳୀ, ପୁଣି ଆହରିତ ତଥ୍ୟର ସୁବିନ୍ୟାସ, ଏହି ଐତିହାସିକ ଉପନ୍ୟାସକୁ ସୁଖପାଠ୍ୟ କରିଛି। ଐତିହାସିକ ବାସ୍ତବତା ସହିତ ଜୀବନର ଭଲମନ୍ଦ ଓ ପାପପୁଣ୍ୟର ଅନାସକ୍ତ ବିଶ୍ଳେଷଣ ଏବଂ ଚେତନ ଅବଚେତନ ମନର ସଂଘାତ ଓ ସଂଘର୍ଷ, ଏହି ଉପନ୍ୟାସକୁ ଏକ କଳାତ୍ମକ ଉଚ୍ଚତା ପ୍ରଦାନ କରିଛି। ପ୍ରକାଶଭଙ୍ଗୀରେ ମୌଳିକତା, କାହାଣୀ ପ୍ରବାହରେ ସ୍ୱାଭାବିକ ସ୍ୱଚ୍ଛତା, ଚରିତ୍ର ନିର୍ମାଣରେ ପୀନବଦ୍ଧତା ପୁଣି ଭାଷାର ଯୁଗୋପଯୋଗିତା, ଏହାକୁ ଦେଇଛି ପାଠକୀୟ ସମାଦୃତି।

କୌଣସି ଆଲୋଚନା କୌଣସି କାଳରେ ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ। ଅପୂର୍ଣ୍ଣତା କଳାର ସ୍ୱଧର୍ମ। ବିଭିନ୍ନ ଦୃଷ୍ଟିକୋଣରୁ ଗୋଟିଏ କଳା ବା ସାରସ୍ୱତ କୃତିର ବିଚାର ବିଶ୍ଳେଷଣ କରାଯାଇପାରେ। ତାହା ଭିନ୍ନ କଥା। ଏହି ଆଲୋଚନାର ଅପୂର୍ଣ୍ଣତା ପ୍ରତି ମୁଁ ସମ୍ପୂର୍ଣ୍ଣ ସଚେତନ। ଓଡ଼ିଶାର ତତ୍କାଳୀନ ରାଜା ଜମିଦାରମାନଙ୍କର କିମ୍ଭୂତକିମାକାର ଆଚରଣ, ନାନା କୀର୍ତ୍ତି ଅପକୀର୍ତ୍ତି, ଅଯଥା ଅହଙ୍କାର

ଓ ବୃଥା ଆସ୍ଫାଳନ, ପୁଣି କ୍ରମ ଅବକ୍ଷୟିଷ୍ଣୁ ରାଜତନ୍ତ୍ରର ଦାରୁଣ ବିପର୍ଯ୍ୟୟ ଆଲୋଚ୍ୟ ଉପନ୍ୟାସର ଗୋଟିଏ ଚମତ୍କାର ପ୍ରସଙ୍ଗ। ଏହା ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ। ଉପନ୍ୟାସରେ ବ୍ୟବହୃତ ମହାକାଳସୁଲଭ ନିର୍ଲିପ୍ତ ଓ ନୈର୍ବ୍ୟକ୍ତିକ ସ୍ୱର ଓ ଯୁକ୍ତିସିଦ୍ଧ ଗଦ୍ୟ ରୀତି ପାଇଁ ମଧ୍ୟ ବିଶେଷ ଆଲୋଚନାର ଆବଶ୍ୟକତା ଅଛି। ଶ୍ରୀ ମନ୍ଦିରର ନୀତି ବିଶୃଙ୍ଖଳା, ଓଡ଼ିଆ ଭାଷା ବିଲୋପର ଅପଚେଷ୍ଟା,ଓଡ଼ିଶାରେ ନବଜାଗରଣର ଉଦ୍ଦୀପନା ଓ ପ୍ରସ୍ତୁତିପର୍ବ ଉପରେ ମଧ୍ୟ ପୃଥକ୍ ପୃଥକ୍ ଆଲୋଚନା କରାଯାଇପାରେ। ମଧୁସୂଦନ ଦାସ,ଫକୀରମୋହନ ସେନାପତି, ଗୌରୀ ଶଙ୍କର ରାୟ, ପ୍ୟାରୀମୋହନ ଆଚାର୍ଯ୍ୟ, ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ପରି ଚରିତ୍ର ମଧ୍ୟ ସ୍ୱତନ୍ତ୍ର ଆଲୋଚନା ଦାବି କରନ୍ତି। ସେ ସବୁର ଆଲୋଚନା ଆଉ କେବେ ସୁଯୋଗ ମିଳିଲେ କରିବାର ବାସନା ରହିଲା।

■ ■

# ଜଗନ୍ନାଥ ପ୍ରସାଦଙ୍କ ନାଟକରେ
# ନବମୂଲ୍ୟବୋଧର ସନ୍ଧାନ

**ପ୍ରଫେସର ବିଜୟ କୁମାର ଶତପଥୀ**

ଯଶସ୍ୱୀ କବି, କଥାକାର, ନାଟ୍ୟକାର ପୁଣି ଶକ୍ତିଶାଳୀ ଗଦ୍ୟ ସାହିତ୍ୟର ସ୍ରଷ୍ଟା ଭାବରେ ବିଦିତ ଜଗନ୍ନାଥ ପ୍ରସାଦ ଦାସ ନବମୂଲ୍ୟବୋଧର ସନ୍ଧାନ କରିଛନ୍ତି ତାଙ୍କର ନାଟକଗୁଡ଼ିକରେ ଓ ଏଥିପାଇଁ ଦାୟୀ ତାଙ୍କର ଗଭୀର ଜୀବନାନୁଭବ । କାବ୍ୟିକ ଅନ୍ତର୍ଦୃଷ୍ଟି ଦ୍ୱାରା ଶାଣିତ ଏହି ଜୀବନାନୁଭବର ଦୃଶ୍ୟରୂପ ଶ୍ରୀଯୁକ୍ତ ଦାସ ପ୍ରସ୍ତୁତ କଲା ବେଳେ ପାଠକ ଓ ଦର୍ଶକମାନଙ୍କୁ ନେଇଯା'ନ୍ତି ବୃହତ୍ତର ସମାଜ ବ୍ୟବସ୍ଥା ଆଡ଼କୁ ଓ ସେଥିରେ ସେ ସମନ୍ୱିତ କରିପାରନ୍ତି ଉଚ୍ଚମାନର କଳାତ୍ମକତା । ୧୯୭୦ ମସିହା ପରବର୍ତ୍ତୀ କାଳରେ ସେ ପ୍ରଥମେ ନାଟକ ରଚନାରେ ହାତ ଦିଅନ୍ତି ଓ ପ୍ରାୟ ଦୁଇ ଦଶନ୍ଧି ମଧ୍ୟରେ ('ସୂର୍ଯ୍ୟାସ୍ତ ପୂର୍ବରୁ' ନାଟକଠାରୁ ଆରମ୍ଭ କରି 'ସୁନ୍ଦର ଦାସ' ପର୍ଯ୍ୟନ୍ତ) ରଚିତ ତାଙ୍କର ନାଟକଗୁଡ଼ିକରେ ରୂପାୟିତ ମଧ୍ୟବିତ୍ତ ମଣିଷର ଅସହାୟତା, ଯନ୍ତ୍ରଣା ଜର୍ଜରିତ ଜୀବନର କାହାଣୀ, ପୁଣି କ୍ଷତାକ୍ତ ଆତ୍ମାର ହାହାକାର । ତା' ସହିତ ସ୍ୱାଧୀନତା ପରବର୍ତ୍ତୀ କାଳର ପ୍ରତାରଣାପୂର୍ଣ୍ଣ ରାଜନୀତିରେ ଅଭ୍ୟସ୍ତ ଧୂର୍ତ୍ତ ନେତା, ଭ୍ରଷ୍ଟାଚାରୀ ଓ ଦୁର୍ନୀତିଗ୍ରସ୍ତ ଶଠ ପୁଞ୍ଜିପତି ଓ ସେମାନଙ୍କର ସମର୍ଥକ ତଥା ବଚସ୍କର କଳାକାର ଓ ସାହିତ୍ୟିକମାନଙ୍କର ମୁଖା ଉନ୍ମୋଚନ ସାର୍ଥକତାର ସହ କରିଛନ୍ତି ନାଟ୍ୟକାର । ନିବିଡ଼ ଜୀବନାନୁଭବର ଏଇ ଶିଳ୍ପୀ ସାଂପ୍ରତିକ କାଳର ସମାଜ ବ୍ୟବସ୍ଥାରେ ସୃଷ୍ଟ ସଙ୍କଟଗୁଡ଼ିକୁ ସୂକ୍ଷ୍ମ ଭାବରେ ଅନୁଶୀଳନ କରି ସେଗୁଡ଼ିକ କିପରି ସୁସ୍ଥ ଜୀବନବୋଧର ପ୍ରତିକୂଳ ବାତାବରଣ ସୃଷ୍ଟି କରୁଛନ୍ତି ଓ ପଚମାନ ମୂଲ୍ୟବୋଧକୁ ଆବାହନ କରି ଆଣୁଛନ୍ତି, ତା'ର ସାର୍ଥକ ଚିତ୍ର ସମୂହ

ଆଙ୍କିଯାଇଛନ୍ତି ତାଙ୍କର ନାଟକଗୁଡ଼ିକରେ। ସମାଜ ଓ ଜୀବନର ଏଇ ନୈରାଶ୍ୟ, ହା ହତୋସ୍ମି କେବଳ ତାଙ୍କ ନାଟ୍ୟ ସୃଷ୍ଟିକୁ ମଣ୍ଡିତ କରି ନାହିଁ, ପ୍ରତ୍ୟେକ ନାଟ୍ୟ ସୃଷ୍ଟିରେ ତାଙ୍କର ବ୍ୟଞ୍ଜିତ ହୋଇଉଠିଛି ଏ ସବୁ ମଧ୍ୟରୁ ଏକ ଉତ୍ତରଣ ପ୍ରୟାସ। ଜୀବନ ଓ ଜଗତ ପ୍ରତି ଏହି positive value ନାଟ୍ୟ କାହାଣୀକୁ ସାମାଜିକ ଅଂଶୀଦାରରେ ମଣ୍ଡିତ କରିବାରେ ସହାୟକ ହୋଇପାରିଛି।

ଜଗନ୍ନାଥ ପ୍ରସାଦ ଦାସଙ୍କ 'ସୂର୍ଯ୍ୟାସ୍ତ ପୂର୍ବରୁ' (୧୯୭୭) ପ୍ରଥମେ ୧୯୭୬ ମସିହାରେ ହିନ୍ଦୀରେ ଅନୂଦିତ ହୋଇ ଦିଲ୍ଲୀରେ ମଞ୍ଚସ୍ଥ ହେବା ସହିତ ଦିଲ୍ଲୀ ଦୂରଦର୍ଶନ କେନ୍ଦ୍ରରୁ ମଧ୍ୟ ପ୍ରସାରିତ ହୋଇଥିଲା । ନାଟକଟିରେ ଅନ୍ତର୍ମନର ବିଶ୍ଳେଷଣ ସାର୍ଥକତାର ସହ କରିଛନ୍ତି ନାଟ୍ୟକାର। ନାଟ୍ୟ କାହାଣୀ ଗଢ଼ି ଉଠିଛି ଦୀପଙ୍କର, ପତ୍ନୀ ଶୀଲା, ପ୍ରେମିକ ସରୋଜ ଓ ବନ୍ଧୁ ସଂଜୟକୁ ନେଇ। କେନ୍ଦ୍ର ଚରିତ୍ର ଦୀପଙ୍କର ମଧ୍ୟରେ ନାଟ୍ୟକାର ଆଧୁନିକ ମଣିଷର ବିଭକ୍ତ ବ୍ୟକ୍ତିତ୍ୱ, ବିପର୍ଯ୍ୟସ୍ତ ସ୍ଥିତିର ଚିତ୍ର ଆଙ୍କିଛନ୍ତି। ଦୀପଙ୍କର ନିଜର କାମନା ଓ ବାସନାର ନିଆଁରେ ପ୍ରଜ୍ୱଳିତ ଏକ ଦୀପଶିଖା ଭାବରେ ଆତ୍ମପ୍ରକାଶ କରେ। ଏହି ଆତ୍ମଦହନ ମଧ୍ୟ ଦେଇ ସେ ଖୋଜି ଚାଲିଛି ଜୀବନର ସଂଜ୍ଞା କ'ଣ ? ସରୋଜକୁ ସେ ପ୍ରଥମେ ଭଲପାଇ ବସିଥିଲା। କିନ୍ତୁ ତାହା ପର୍ଯ୍ୟବସିତ ହୋଇଥିଲା ବିଫଳତାରେ। ସେଇ ପ୍ରେମ ଆଣିଥିଲା ସ୍ୱପ୍ନଭଂଗର କାହାଣୀ-ଦହନ। ଦୀପଙ୍କର ଏବେ ଚାଳିଶବର୍ଷ ଅତିକ୍ରମ କରିବାକୁ ଯାଉଛନ୍ତି। ଏହାରି ମଧ୍ୟରେ ସେ ଖୋଜୁଛନ୍ତି ବାଇଶ ବର୍ଷର ଜୀବନ। ତାଙ୍କର ମନେ ହୋଇଛି, ସେ ଯେମିତି ହାରିଯାଉଛନ୍ତି। ନିଜ ଉପରୁ ଧୀରେ ଧୀରେ ତାଙ୍କର ଆସ୍ଥା ତୁଟି ଯାଉଛି। କମି ଆସୁଛି ଆତ୍ମବିଶ୍ୱାସ। ଦେହରେ, ପୁଣି ମନରେ, ବୟସର ଛାପ। ନିଜକୁ ସେ ମନେ କରିଛନ୍ତି ଜୀବନ ଯୁଦ୍ଧରେ ହାରିଯାଉଥିବା ନାୟକ ପରି। ନୈରାଶ୍ୟ, କ୍ଳାନ୍ତି, ଅବସନ୍ନତା ତାଙ୍କୁ ଘେରି ରହିଛି କୁହୁଡ଼ି ଆସ୍ତରଣ ପରି। ଦିନେ ସେ ହୁଏତ ଭାବିଥିଲେ ସ୍ୱପ୍ନସବୁ ଚରିତାର୍ଥ ହେବ, ଆଶା ଓ ଆକାଂକ୍ଷା ଫଳବତୀ ହେବ; କିନ୍ତୁ ସବୁ ବୃଥା ହେଲା। ଉଜୁଡ଼ିଗଲା ତାସ୍‌ର ଘର ପରି। ଏଣିକି ସେ ଜୀବନର ଅବଶିଷ୍ଟ ସମୟତକ ଜିଇଁବେ ବ୍ୟର୍ଥତାକୁ ଜାବୁଡ଼ିଧରି। ଏଥିରେ ଉତ୍ସାହ ନାହିଁ କି ଉଦ୍ଦୀପନା ମଧ୍ୟ ନାହିଁ। ପତ୍ନୀ ଶୀଳା ତା' ପାଇଁ କୌଣସି ସ୍ୱପ୍ନର ମାୟାଜାଲ ରଚିପାରେନା କିମ୍ବା ପ୍ରେରଣାଟିଏ ହୋଇପାରେନା। ସେ କେବଳ ତାକୁ ବିବାହ କରିଛି ସାମାଜିକ ନିରାପତ୍ତା ପାଇଁ। ଦୀପଙ୍କର ଭାବିଛି ଯେ ଜଣେ ଜଣକୁ ଭଲ ଭାବରେ ବୁଝିବା ଅର୍ଥ ଭଲପାଇବା। ତେବେ ତାକୁ ବୁଝିଛି ବା କିଏ ? ଜୀବନ ତା' ପାଇଁ ପାଲଟିଛି ବ୍ୟର୍ଥତାର ଏକ ରାଗିଣୀ। ଶୀଳା ତାକୁ ବୁଝିନାହିଁ ଆଦୌ। ସରୋଜକୁ ମଧ୍ୟ ସେ ପାଇପାରି ନ ଥିଲା, କାରଣ ଭଲ ପାଇବା ପାଇଁ ଯେଉଁ ସାହସ ଦରକାର ସେଇ ସାହସ ସେ ଦେଖାଇପାରିନି। କାପୁରୁଷମାନେ କେବେ ପ୍ରେମ କରିପାରନ୍ତି ନାହିଁ-ଏହା ସତ୍ୟରେ ପରିଣତ ହୋଇଛି ତା' ପାଇଁ। ସରୋଜ ଦିନେ ତାକୁ ଠିକ୍ କହିଥିଲା- "ତମେ କେବେ କାହାକୁ ଭଲ

ପାଇଛ ନିଜ ଛଡ଼ା ?" ପ୍ରକୃତରେ ନାଟକ ମଧ୍ୟରେ ଏକ ନାର୍‌ସିସିଷ୍ଟ ଚରିତ୍ର ଭାବରେ ସେ ଆତ୍ମପ୍ରକାଶ କରେ । ନିଜ ମୁହଁକୁ ଦେଖୁଥାଏ ବାରମ୍ବାର ଦର୍ପଣରେ ଓ ମୁଗ୍ଧ ହେଉଥାଏ । ସେ କେବଳ ଆତଯାତ ହେଉଥାଏ ନିଜେ ରଚିଥିବା ନିଜର ପରିଧି ମଧ୍ୟରେ । ଅନ୍ୟର ଅନୁପ୍ରବେଶ ସେ ଜମା ବରଦାସ୍ତ କରିପାରେନା । ଏକ ପ୍ରକାର ମାନସିକ ବନ୍ଦିତ୍ୱ ଭୋଗୁଥିବା ଏଇ ଆଧୁନିକ ମଣିଷଟିର ଚରିତ୍ରାୟନ ଜଗନ୍ନାଥ ପ୍ରସାଦ ଦାସଙ୍କ ଉକ୍ତ ନାଟକକୁ ସ୍ୱତନ୍ତ୍ର ପରିଚୟରେ ମଣ୍ଡିତ କରିଛି । ଆଲୋଚକ ଡ. ହେମନ୍ତ କୁମାର ଦାସ ଉକ୍ତ ନାଟକ ସଂପର୍କରେ ଯେଉଁ ମନ୍ତବ୍ୟ ଦିଅନ୍ତି, ତାହା ଲକ୍ଷ୍ୟ କରାଯାଇ ପାରେ । ସେ କହନ୍ତି- "ଜୀବନ ଯେମିତି, ନାଟ୍ୟକାର ଏଥିରେ ତାକୁ ସେଇଭଳି ରୂପ ଦେଇଛନ୍ତି । ଏହା ହିଁ ତାଙ୍କର ପ୍ରଧାନ କୃତିତ୍ୱ । ଚରିତ୍ର ମାଧ୍ୟମରେ ନାଟ୍ୟକାର ଏଠାରେ ଅନେକ ଅନୁତ୍ତରିତ ପ୍ରଶ୍ନ ଉଠାଇଛନ୍ତି । ପ୍ରେମ ବା ଈଶ୍ୱରଙ୍କ ସଂଜ୍ଞା କ'ଣ ? କବିତା କେମିତି ପିସ୍ତଲରେ ପରିଣତ ହୁଏ, ତାହା ତମେ ଜାଣ ? ସବୁ ନପୁଂସକ କ'ଣ ଭୀରୁ ? ଜୀବନ କ'ଣ ଏକ ଲଟେରୀ ? ପ୍ରେମକୁ ଗୋଟିଏ ଲକରରେ କ'ଣ ବନ୍ଦକରି ରଖାଯାଇ ପାରେ କି ? ଜୀବନ ଏକ ଶୋଭାଯାତ୍ରା ହୋଇପାରେ କି ? ଫୁଲ କ'ଣ ପ୍ରେମର ପ୍ରକୃତ ସଂଜ୍ଞା ? ଏହିଭଳି ବହୁ ଅସମାହିତ ପ୍ରଶ୍ନର କୋଳାହଳ ମଧ୍ୟରେ ଦୀପଙ୍କରଙ୍କ ବିପର୍ଯ୍ୟସ୍ତ ଜୀବନର ବିଶ୍ଳେଷଣ କରାଯାଇଛି । ବୈଷୟିକ ଦୃଷ୍ଟିରୁ ଜୀବନକୁ ଦେଖୁଥିବା ସଂତୃପ୍ତ ସଂଜୟର ବିପରୀତରେ ଦୀପଙ୍କରର ମୂଲ୍ୟବୋଧଜନିତ ଦ୍ୱନ୍ଦ୍ୱମୁଖର ଜୀବନର ପ୍ରତିରୂପ ଅତ୍ୟନ୍ତ ସ୍ପଷ୍ଟ ହୋଇଛି ।" (ଓଡ଼ିଆ ନାଟକର ବିକାଶଧାରା-୪ର୍ଥ ଖଣ୍ଡ, ସାଥୀମହଲ, କଟକ-୧୯୮୮)

ଦୀପଙ୍କର ଏପରି ଏକ ଚରିତ୍ର ଯାହାର ମାନସିକତାରେ ରହିଛି ନାନା ବିରୋଧାଭାସର ଅସ୍ତିତ୍ୱ । ତା'ର ବ୍ୟକ୍ତିସତ୍ତାକୁ କେବଳ ବିଖଣ୍ଡିତ କହିଲେ ଠିକ୍ ହେବ ନାହିଁ, ତାହା ବିଚୂର୍ଣ୍ଣିତ । ସେ ନିଜେ ନିଜ ପାଇଁ ରଚିଛି ବନ୍ଦିଶାଳା । ପୁଣି ବଡ଼ ଆକୁଳ ଭାବରେ ସେ ସେଠାରୁ ଚାହୁଁଛି ମୁକ୍ତି । ମୁକ୍ତିପାଦ-ଏହି ଚରିତ୍ରଟି ମଧ୍ୟରେ ଜୀବନ ଜିଜ୍ଞାସା ତଥା ମୁକ୍ତିର ଯେଉଁ ଆହ୍ୱାନଗୁଡ଼ିକୁ କାବ୍ୟିକ ଢଂଗରେ ଉପସ୍ଥାପନ କରାଯାଇଛି, ତାହା ମଧ୍ୟରେ ନିହିତ କାଳଜୟୀ ସତ୍ୟ । ଏହା ଫଳରେ ଦୀପଙ୍କର ଚରିତ୍ରଟି ୧୯୭୦ ମସିହା ପରବର୍ତ୍ତୀ ଓଡ଼ିଆ ନାଟକରେ ଏକ ସ୍ୱତନ୍ତ୍ର ଆସନ ଦାବି କରେ ।

'ସବାଶେଷ ଲୋକ' (୧୯୭୮) ନାଟକଟି ମଧ୍ୟ 'ସୂର୍ଯ୍ୟାସ୍ତ ପୂର୍ବରୁ' ପରି ହିନ୍ଦୀରେ ଅନୂଦିତ ହୋଇ ଦିଲ୍ଲୀଠାରେ ମଂଚସ୍ଥ ହୋଇଥିଲା । ହିନ୍ଦୀ ଅନୂଦିତ ନାଟକର ଶୀର୍ଷକ ହେଉଛି- 'ସବ୍‌ସେ ନୀଚେକା ଆଦମୀ' ।

ନାଟକରେ କେବଳ ସମାଜ ସଚେତନ ଦୃଷ୍ଟିଭଂଗୀ ନାହିଁ, ଅଛି ଦୃଢ଼ ସାମାଜିକ ଅଂଗୀକାର ।

୧ ୯ ୯ ୦ ମସିହା ବେଳକୁ ଏଇ ଆଲୋଚକ ତା'ର ଏକ ପ୍ରବଂଧରେ ('ସବାଶେଷ ଲୋକ'ରେ ପ୍ରତିଫଳିତ ସାମାଜିକ ଅନ୍ତର୍ଦୃଷ୍ଟି ଓ ଗଭୀର ଜୀବନବୋଧ) ଏହି ନାଟକ କିପରି ସୋସିଆଲ୍ କମିଟ୍‌ମେଣ୍ଟର ବାର୍ତ୍ତା ବହନ କରିଛି, ସେ ସଂପର୍କରେ ଆଲୋଚନା କରିଥିଲା ଓ ସେଇଟି ତା'ର 'ନୂତନ ମୂଲ୍ୟବୋଧର ନାଟକ' ଶୀର୍ଷକ ଗ୍ରନ୍ଥରେ ସଂକଳିତ ହୋଇଥିଲା । ପୁଣି ଏଇ ଆଲୋଚକ ମଧ୍ୟ ତା'ର ଗବେଷଣା ନିବନ୍ଧ 'ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା' ଗ୍ରନ୍ଥରେ ଉକ୍ତ ନାଟକରେ ନିହିତ ସାମାଜିକ ପ୍ରତିବଦ୍ଧତା ଓ ଏହାର କଳାତ୍ମକ ଦିଗ ଉପରେ ଏକ ଆଲୋଚନା (ଓଡ଼ିଆ ସାହିତ୍ୟର ପ୍ରଗତିବାଦୀ ଧାରା- ପୃ-୫୫୮-୫୬୪, ପ୍ରକାଶକ, ଓଡ଼ିଶା ବୁକ୍ ଷ୍ଟୋର, କଟକ-୧ ୯ ୯ ୫) ମଧ୍ୟ ଲେଖିଥିଲା ।

'ସବାଶେଷ ଲୋକ'-ଏହି ନାଟକର ନାମକରଣରୁ ଜଣାପଡୁଛି ଯେ ନାଟ୍ୟକାର ସମାଜର ନିମ୍ନବର୍ଗର ସମସ୍ୟା ଓ କାହାଣୀକୁ ଏଥିରେ ଉପସ୍ଥାପନ କରିବା ପାଇଁ ଯାଉଛନ୍ତି । କେବଳ ଦଳିତ ମଣିଷର କଥା ଏଥିରେ କୁହାଯାଉନାହିଁ, ଏଥିରେ ବି ରହିଛି ଦଳିତ ମଣିଷର ପ୍ରତିବାଦର ସ୍ୱର, ପୁଣି ଯେଉଁମାନେ ସେମାନଙ୍କୁ ସହାନୁଭୂତି ଦେଖାନ୍ତି ସେମାନଙ୍କର ଛଳନା ଓ ପ୍ରବଂଚନାର ଚିତ୍ର । ବଡ଼ ଚତୁରତାର ସହ ନାଟ୍ୟକାର ସେମାନଙ୍କର ମୁଖା ଉନ୍ମୋଚନ କରିଦେଇଛନ୍ତି । 'ସବାଶେଷ ଲୋକ'ର ଚରିତ୍ରଗଣ ସମାଜର ଏକ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ପ୍ରତିନିଧିତ୍ୱ କରନ୍ତି । ଯେପରି ବାବୁଜୀ ବୁର୍ଜୁଆ ଶ୍ରେଣୀର ପ୍ରତିନିଧିତ୍ୱ କଲା ବେଳେ ପେଟି-ବୁର୍ଜୁଆ ଶ୍ରେଣୀର ପ୍ରତିନିଧିତ୍ୱ କରିଛନ୍ତି ଅଧ୍ୟାପକ କୁମାର ଓ ମୀନା ଚରିତ୍ର । ରାମୁ ଏଠାରେ ସର୍ବହରା ଗୋଷ୍ଠୀର ପ୍ରତିନିଧି । ଦୁର୍ଭିକ୍ଷର କରାଳ ଗ୍ରାସ, ରାମୁର ମେରୁଦଣ୍ଡ ଭାଙ୍ଗି ଦେଇଛି । ସେ ହୋଇଛି ଫୁଟ୍‌ପାଥର ଭିକାରି । ଭିକ୍ଷାବୃତ୍ତି ଅବଲମ୍ବନ କରିଛି ସହରକୁ ଆସି । ଧନିକ ବାବୁଜୀଙ୍କର ଗ୍ୟାରେଜ୍ ହୋଇଛି, ତା'ର ଆଶ୍ରୟସ୍ଥଳ । ନାଟ୍ୟକାର ପ୍ରତିପାଦନ କରିବା ପାଇଁ ଚାହାନ୍ତି ଯେ ଏହି ରାମୁ ପରି ସର୍ବହରାମାନେ ଗୋଟାଏ ବିଷମ ସମାଜ ବ୍ୟବସ୍ଥାର ଅଭିଶାପକୁ ମୁଣ୍ଡେଇ ଚାଲନ୍ତି । ବିଷମ ସମାଜ ବ୍ୟବସ୍ଥାର ଏହି ସବାଶେଷ ଲୋକମାନଙ୍କ ପାଇଁ ଦରଦ ବା ସହାନୁଭୂତି ଯେପରି ସମାଜର ଉଚ୍ଚବର୍ଗର ଲୋକେ ପ୍ରକାଶ କରନ୍ତି, ତାହା କେବଳ ମୌଖିକ ଅନୁକମ୍ପା ମାତ୍ର; ଯାହା ଛଳନାର ଅନ୍ୟ ନାମ । ନଚେତ୍ ଏହି ନିମ୍ନ ବର୍ଗର ମଣିଷମାନଙ୍କର ସମସ୍ୟାଗୁଡ଼ିକୁ ସେମାନେ ଏଡ଼େଇ ଦେଇଯାଆନ୍ତି; ଉପେକ୍ଷା କରିବସନ୍ତି ।

ନାଟକରେ ବାବୁଜୀ ଚରିତ୍ରଟି ପ୍ରତୀକଧର୍ମୀ । ସେ ହୋଇପାରନ୍ତି ପୁଞ୍ଜିପତି, ଶଠନେତା କିମ୍ବା ପୁଞ୍ଜିପତିମାନଙ୍କର ଦଲାଲ । ପ୍ରବଞ୍ଚନା ଓ ଶଠତାର ମୂର୍ତ୍ତିମନ୍ତ ପ୍ରତୀକ ସେ । ସଂସ୍କୃତିର ସୁରକ୍ଷା ପାଇଁ ସେ ଆହ୍ୱାନ ଦିଅନ୍ତି, କିନ୍ତୁ ସଂସ୍କୃତିପ୍ରବଣତା ନାହିଁ ଆଦୌ ତାଙ୍କର । ତାଙ୍କର ହାତଟେକା

ଦାନରେ ନାଟକମାନ ମଂଚସ୍ଥ ହୁଏ, ପୁଣି ନାଟକମାନ ମଧ୍ୟ ମଂଚସ୍ଥ ହୁଏ ତାଙ୍କରି ଇଙ୍ଗିତରେ ବରାଦ ମୁତାବକ । ଏହି ନାଟକ ରଚନା କରୁଥିବା ପ୍ରଫେସର ଜଣକ ବାବୁଜୀଙ୍କର ବଟସ୍କର ଓ କିଣାଚାକର । ସେ ମେରୁଦଣ୍ଡବିହୀନ । ପୁଞ୍ଜିପତିର ଗୋଲାମ ଏଇ ବିଚରା ବୁଦ୍ଧିଜୀବୀ ମଧ୍ୟରେ ନାଟ୍ୟକାର ଏକ ନିଷ୍ଠୁର ସତ୍ୟର ଅବତାରଣା କରିବା ପାଇଁ ଚାହାନ୍ତି । ପ୍ରଫେସରଙ୍କ ସମସ୍ତ ସ୍ୱାଧୀନତା ଅପହୃତ । ନୂଆ କିଛି ସୃଷ୍ଟି ନାଆଁରେ ସେ ଯାହି ତାହି ଏଣୁ ତେଣୁ କ'ଣ ଗୁଡ଼ାଏ ଲେଖିପକାନ୍ତି ଓ ସାହିତ୍ୟରେ ହଠକାରିତା ବା ଚମକ ସୃଷ୍ଟି ବୋଲି କହିବୁଲନ୍ତି । ବାବୁଜୀଙ୍କ ଅନୁକଂପା ଲାଭ ପାଇଁ ତତ୍‌ପର ତା'ର ନିଜର ସୃଷ୍ଟିଶୀଳତାକୁ (creativity) କବର ଦେଇ ସାରିଥିବା ଏକ ଫମ୍ପା ମଣିଷ ଏଇ ପ୍ରଫେସରଙ୍କୁ ନାଟ୍ୟକାର ଶାଣିତ ବିଦ୍ରୁପର ତରବାରି ଫିଙ୍ଗିଛନ୍ତି । ତାଙ୍କର ମୌଳିକ ଗବେଷଣାକୁ କଟାକ୍ଷ କରି ନାଟ୍ୟକାର କୁହନ୍ତି ଯେ ପ୍ରଫେସରଙ୍କର ଗବେଷଣାଲବ୍ଧ ଜ୍ଞାନ ହେଲା- "ଡନ୍‌କାନ୍ ଉଲଗ୍ନ ହୋଇ ଶୋଇଥିଲେ କି ? ସେଥିପାଇଁ ମାକ୍‌ବେଥ୍ ତାଙ୍କୁ ପ୍ରଥମ ଥର ପାଇଁ ମାରିପାରି ନ ଥିଲେ । ସେକ୍ସପିଅର ପୁଣି ଭାରତୀୟ ଥିଲେ । ସେ ଗୀତା ପଢୁଥିଲେ । ତାଙ୍କ ନାଆଁ ଥିଲା ଶେଷପ୍‌ପା ଆୟାର୍" ପ୍ରଭୃତି । ପ୍ରଫେସର ଜଣକ ଆପଣାକୁ ଆଧୁନିକ କାଳର ନାଟ୍ୟକାର ଭାବରେ ବିଦିତ କରିବା ପାଇଁ ଦୁଇଟି ନାଟକ ମଧ୍ୟ ଲେଖିପକାଇ ତାକୁ ଉଦ୍‌ଭଟ ନାଟକର ଆଖ୍ୟା ଦେଇଥିଲେ । ନାଟକ ଦୁଇଟି ହେଲା 'ଯେତିର ବିଳାପ' ଓ 'ତୁଷାର ମାନବର ସ୍ୱଗତୋକ୍ତି' ।

ବାବୁଜୀଙ୍କ ସମେତ ତାଙ୍କର ଛତ୍ର ଛାୟାତଳେ ବଂଚୁଥିବା ପ୍ରତିଟି ଚରିତ୍ର ନିଜର ଶ୍ରେଣୀ ଚେତନା ସଂପର୍କରେ ସଚେତନ । ଶଠତା ଓ ପ୍ରତାରଣାର ଜାଲ ବୁଣି, ଅନ୍ୟ ଆଖିରେ ଧୂଳିଦେଇ ନିଜର ସ୍ଥିତିକୁ ଠିକ୍ ରଖିଥିବା ବାବୁଜୀ ଜଣକ ସର୍ବହରାଙ୍କ ସଂପର୍କରେ ଲମ୍ବା ଲମ୍ବା ବକ୍ତୃତା ଦିଅନ୍ତି, ନିଜ ଗ୍ୟାରେଜ ମଧ୍ୟରେ ନିତାନ୍ତ ଉପେକ୍ଷିତ ହୋଇ କାଳ କାଟୁଥିବା ରାମୁ ସଂପର୍କରେ ଛଳନାପୂର୍ଣ୍ଣ କଥା ମଧ୍ୟ କହନ୍ତି । ସେ କହନ୍ତି- "ଆମକୁ ଏଥରକ ଏଇଭଳି ଲୋକଙ୍କ ବିଷୟରେ ନାଟକ କରିବାକୁ ହେବ-ଏଇ ଭଳି ଛୋଟ ଛୋଟ ଲୋକଙ୍କର ଛୋଟ ଛୋଟ ସମସ୍ୟା ବିଷୟରେ । ସମାଜର ସବାତଳେ ଯେଉଁମାନେ ରହିଯାଇଛନ୍ତି, ସେଇମାନଙ୍କ ବିଷୟରେ । ଆମର ସାମାଜିକ କର୍ତ୍ତବ୍ୟ ହେଉଛି ଏମାନଙ୍କର ଉନ୍ନତି ଆଣିବା, ଏମାନଙ୍କୁ ସମାଜରେ ଯଥାବିଧି ସ୍ଥାନ ଦେବା । ଏ ଦାୟିତ୍ୱ ଆମକୁ ଆମର ନାଟକ ଜରିଆରେ ପୂରଣ କରିବାକୁ ହେବ । ଆଉ ତମର ରାଜା, ବଣିକ ଓ ଭଦ୍ରବ୍ୟକ୍ତିଙ୍କ କଥା ଚଳିବ ନାହିଁ । ଏଥରକ ଦରକାର ସାଧାରଣ ଲୋକଙ୍କ କଥା । ଟମ୍, ଡିକ୍ ଏବଂ ହ୍ୟାରି, ଯଦୁ, ମଧୁ, ରାମ, ଶ୍ୟାମ ଓ ରାମୁ କଥା ।"

ବଦଳି ଯାଇଛି ପୁଣି ବାବୁଜୀଙ୍କ କଥା । ଉଚ୍ଚାରଣ ଓ ଆଚରଣ ମଧ୍ୟରେ ରହିଥିବା ପାର୍ଥକ୍ୟକୁ ନାଟକରେ ସ୍ପଷ୍ଟ କରିଦିଆଯାଇଛି । ରାମୁ ପରି ସର୍ବହରାର ଜୀବନକୁ ନେଇ ନାଟକ ଲେଖିବା ପରିବର୍ତ୍ତେ ପରୀକ୍ଷାଧର୍ମୀ ଉଦ୍‌ଭଟ ନାଟକ ମଞ୍ଚସ୍ଥ ହେବ ବୋଲି କହିଛନ୍ତି ବାବୁଜୀ । ପୁଣି ଏଥିରେ ରାମୁ ନାୟକ ହେବ ବୋଲି ସେ ମଧ୍ୟ ସିଦ୍ଧାନ୍ତ ନିଅନ୍ତି । ଯେଉଁ ନିଷ୍ପତ୍ତି ସେ ଆଗରୁ ନେଇଥିଲେ ଏଥରକ ଠିକ୍ ତା'ର ବିପରୀତ ନିଷ୍ପତ୍ତି ସେ ନେଇଛନ୍ତି । ତାଙ୍କରି ଛତ୍ରଛାୟା ତଳେ ବଂଚୁଥିବା ମଣିଷମାନେ ଏଥିରେ ଆପତ୍ତି କରିପାରିବେ ନାହିଁ ବୋଲି ସେ ଭଲଭାବରେ ଜାଣନ୍ତି । କୁମାର, ପ୍ରଫେସର, ମୀନା ଏମାନେ ଏକ ପ୍ରକାର ନିର୍ଜ୍ଜୀବ ଓ ପଙ୍ଗୁ ହୋଇ ବଂଚନ୍ତି ବାବୁଜୀଙ୍କ ଦୟାରେ । କୁମାର ଭଲ ଭାବରେ ଜାଣେ, ତା'ର ସ୍ୱାଧୀନତା ନାହିଁ । ମୀନାର ଅନୁଭବ ହେଲା ଯେ ସେ ଶାପଗ୍ରସ୍ତା ଅହଲ୍ୟା । ତା' ପାଇଁ ଅପେକ୍ଷା କରି ରହିଛି ଦୀର୍ଘ ଜୀବନ । କେବଳ ସେ ନୁହେଁ, ସବୁରି ଜୀବନ ନାଟକର ନିୟାମକ ଓ ନିର୍ଦ୍ଦେଶକ ହେଉଛନ୍ତି ବାବୁଜୀ । ଏହି ଅନୁଭବ ଆଣିଛନ୍ତି ନାଟକର ଚରିତ୍ରଗଣ । ନାଟକ ମଧ୍ୟରେ ରାମୁର ଚରିତ୍ର ଚିତ୍ରଣ କ୍ରମରେ ଆମେ ତା' ଭାଇ ଶ୍ୟାମର ଚରିତ୍ର ସଂପର୍କରେ ଅବଗତ ହେଉ । ରାମୁ କହିଛି ଯେ ସେ ତା' ପାଖକୁ ଚିଠିରେ ଅଦ୍‌ଭୁତ କଥାମାନ ଲେଖେ । ଏପରିକି ସେ ମଧ୍ୟ ଦିନେ ଲେଖିଥିଲା- "ଆମେ ସବୁ ପ୍ରସ୍ତୁତ ହେଉଛୁ । ରାମୁ ମଧ୍ୟ ବିଶ୍ୱାସ କରିଛି ଯେ ସେ ଦିନେ ନା ଦିନେ ଆସିବ । ମୋଟ ଉପରେ ଏହି ଶ୍ୟାମକୁ ନାଟ୍ୟକାର ଏକ ଯୁଗପୁରୁଷ ଭାବରେ ଚିତ୍ରଣ କରିଛନ୍ତି । ସେ ଖାଲି ରାମୁର ଭାଇ ନୁହେଁ, ସେ ନିର୍ଯ୍ୟାତିତ ଓ ଦଳିତର ଆରାଧ୍ୟ ଦେବତା । ସେ ମୁକ୍ତିଦାତା । ସେ ଆସିଲେ, ରାମୁ ପରି ମଣିଷମାନଙ୍କ ହାତରୁ ପରାଧୀନତାର ଶୃଂଖଳ ଖସିପଡ଼ିବ । ସାମ୍ୟବାଦ ସମ୍ଭବ ହେବ; ଧନୀ ଓ ଦରିଦ୍ର ମଧ୍ୟରେ ସୀମାରେଖା ରହିବ ନାହିଁ । ଶ୍ୟାମ ଆସିବାର ସମ୍ଭାବନା ମଧ୍ୟରେ ଏକ ନୂତନ ଚେତନାର ପଦଧ୍ୱନି ଯେପରି ଶୁଣାଇଛନ୍ତି ନାଟ୍ୟକାର । ସହରସାରା ବିକ୍ଷୋଭ, ହରତାଳ ମଧ୍ୟରେ ସେ ଆସିବାର ପଦଧ୍ୱନି । ସେ ଯେପରି ବିପ୍ଳବ - ବେଗବାନ ଅଶ୍ୱ-ଅନ୍ୟାୟ ଓ ଅନୀତିର ଧ୍ୱଂସକାରୀ ଶକ୍ତି !

ପ୍ରଥମ ଦୃଶ୍ୟରେ ରାମୁ ଶ୍ୟାମର ଯେଉଁ ସୂଚନା ଦେଇଛି, ତାହା ପରବର୍ତ୍ତୀ ଦୃଶ୍ୟମାନଙ୍କରେ ଆହୁରି ପ୍ରାଞ୍ଜଳ ଓ ସ୍ପଷ୍ଟ ହୋଇଉଠିଛି । ନାଟକର ପ୍ରଥମ ଦୃଶ୍ୟଠାରୁ ଦ୍ୱିତୀୟ ଦୃଶ୍ୟ ମଧ୍ୟରେ ସାତଦିନ, ପୁଣି ଦ୍ୱିତୀୟ ଦୃଶ୍ୟଠାରୁ ତୃତୀୟ ଦୃଶ୍ୟ ମଧ୍ୟରେ ସେଇ ସାତଦିନ; ଅର୍ଥାତ୍ ନାଟ୍ୟ କାହାଣୀର ସୀମା ମୋଟେ ଚଉଦଦିନ । ଦ୍ୱିତୀୟ ଦୃଶ୍ୟରେ ଯେତେବେଳେ ପ୍ରଫେସର ଓ କୁମାର ହରତାଳ କରୁଥିବା ମଣିଷମାନଙ୍କର ଗହଳି ଅତିକ୍ରମ କରି ଆସିଛନ୍ତି, ସେ ଦୁହେଁ ନିଜ ଭିତରେ ଏକ ଉଦ୍‌ବେଳନକୁ ଅନୁଭବ କରିଛନ୍ତି । ପରେ ସେମାନଙ୍କୁ ପୁଣି ଗ୍ରାସ କରିଛି ଦାସତ୍ୱ । କୁମାର ବାବୁଜୀଙ୍କ ନିକଟରେ ଆଣ୍ଠୁମାଡ଼ି ବସି ଆନୁଗତ୍ୟ ପ୍ରକାଶ କଲା ବେଳେ ପ୍ରଫେସର ତାଙ୍କ

ଉଦ୍ଦେଶ୍ୟରେ ଫିଙ୍ଗାଯାଇଥିବା ଟଙ୍କାକୁ ଗୋଟାଇଛନ୍ତି । ସର୍ବହରା ରାମୁ କିନ୍ତୁ ଏହି କ୍ଲୀବମାନଙ୍କୁ ଦୟାର ଚକ୍ଷୁ ନେଇ ଦେଖିଛି । ବାବୁଜୀଙ୍କ ମୁହଁ ପାଖରେ ସେ ଗୋଟେ ଠୁଙ୍ଗାର ମୁହଁ ବନ୍ଦ କରି ଜୋର୍‌ରେ ଫୁଟାଇଲା ବେଳେ ତେଣେ ଦୂରରୁ ଶୁଭିଛି ବଂଧୁକର ଆବାଜ୍। ବିପ୍ଳବକୁ ରୋକିବା ସମ୍ଭବ ହୋଇନି । ଆସିଛି ଶ୍ୟାମ । ସେ ରାମୁ ବି ହୋଇପାରେ । ମୋଟ ଉପରେ ଶତ ଶତ ଉପେକ୍ଷିତ ଜନତାର ପ୍ରତିନିଧିତ୍ୱ କରି ସେ ଆସିଛି । ଏହାର ମୁକାବିଲା ପାଇଁ ତିନିଗୋଟି ପ୍ଲାନ୍ ପ୍ରସ୍ତୁତ କରିଛନ୍ତି ବାବୁଜୀ । ପ୍ରଥମଟି କୁମାର ଦ୍ୱାରା ରାମୁର ହତ୍ୟା, ଦ୍ୱିତୀୟଟି ରାମୁର ପ୍ରେମଜନିତ ମୃତ୍ୟୁ, ତୃତୀୟଟି ପ୍ରଫେସରଙ୍କ ଲେଖାରେ ରାମୁର ପତନ । ତେବେ ସବୁ ପ୍ଲାନ୍ ଫେଲ୍ ମାରିଛି । ବାବୁଜୀଙ୍କର ପ୍ରତାରଣାପୂର୍ଣ୍ଣ ଉକ୍ତି ପୁଣି ପ୍ରକାଶ ପାଇଛି- "ନା ମୋ ଭାଇକୁ କେହି ଛୁଇଁପାରିବେ ନାହିଁ। ଏ ମୋର ଭାଇ। ଦୁର୍ଭିକ୍ଷ ବେଳେ ଘରଦ୍ୱାର ଛାଡ଼ି ଆମେ ଏଠାକୁ ଆସିଥିଲୁ। ପୁଣି ଏକାଠି ଆମେ ଗାଁକୁ ଫେରିଯିବୁ।" କିନ୍ତୁ ଏହି ହିପୋକ୍ରାସି ସମୟର ସ୍ପନ୍ଦନ ତଥା ବିଦ୍ରୋହର ନିଆଁକୁ ଅଟକାଇ ପାରିନାହିଁ । ଟାଇମ୍‌ବମ୍ ହୋଇଛି ଏଠାରେ ପରିବର୍ତ୍ତନ ପାଇଁ ଏକ ସତର୍କ ସୂଚନା । ବିକ୍ଷୁବ୍ଧ ଜନତା ସହ ବାବୁଜୀ ଓ ତାଙ୍କର ତୋଷାମଦକାରୀମାନେ ଆଗେଇଲା ବେଳେ ମୀନା ଅଟକି ଯାଇଛି । ରାମୁକୁ ଆଣି ସେ ପାଖରେ ବସେଇଛି । ଏକ ବୈପ୍ଳବିକ ମୂଲ୍ୟବୋଧର କାର୍ଯ୍ୟକାରିତା ପାଇଁ ନାଟ୍ୟକାର ନାରୀ ଓ ପୁରୁଷର ପରିପୂରକ ଭୂମିକାକୁ ସ୍ୱୀକାର କରିଛନ୍ତି ।

ଉକ୍ତ ନାଟକରେ ସବୁଠାରୁ ବଡ଼ ସଂପଦ ହେଲା ସେଥିରେ ନିହିତ ଶକ୍ତିଶାଳୀ ବ୍ୟଞ୍ଜନା । ଯେଉଁ ସମାଜ ବ୍ୟବସ୍ଥାରେ ଶ୍ରେଣୀ ପାର୍ଥକ୍ୟର ରୂପରେଖ ବଡ଼ ଜଟିଳ, ସେଠାରେ ବିଡ଼ମ୍ବିତ ଗଣସଂସ୍କୃତି ଓ ମୂଲ୍ୟବୋଧଜନିତ ସଂକଟକୁ ନାଟ୍ୟକାର ରୂପ ଦେଇଛନ୍ତି । ଚାକର ରାମୁର ଜୀବନ ସହ ନାଟ୍ୟକାର ଏଠାରେ ଯୋଡ଼ି ଦେଇଛନ୍ତି ରାଜ ରାସ୍ତାରେ ନିଜର ଦାବି ହାସଲ ପାଇଁ ହରତାଳ କରୁଥିବା ଶହ ଶହ ନିମ୍ନବର୍ଗର ମଣିଷଙ୍କୁ ।

ଶ୍ରେଣୀ ଚେତନା ଓ ସର୍ବହରାର ନ୍ୟାଯ୍ୟ ଦାବିକୁ ଉପସ୍ଥାପନ କଲା ବେଳେ ନାଟ୍ୟକାର ମାର୍କ୍ସବାଦୀ ବିଚାରଧାରା ସହ କଳାତ୍ମକ ରୀତିରେ ଗାନ୍ଧୀ ଦର୍ଶନକୁ ଫେଣ୍ଟି ଦେଇଛନ୍ତି । ଅତ୍ୟାଚାର ଓ ଅନ୍ୟାୟର ବିଲୋପ ସାଧନ ନିମିତ୍ତ ଯୁଗାବତାରର ଯେଉଁ ଆବଶ୍ୟକତା ତା'ର ସୂଚନା ନାଟକରେ ରହିବା ସହିତ ସାମାଜିକ ପ୍ରତିଷ୍ଠା ପାଇଁ ସର୍ବହରାର ସଂଗ୍ରାମ, ବୁର୍ଜୁଆ ତଥା ପେଟି ବୁର୍ଜୁଆ ଶ୍ରେଣୀର ଲୋକମାନଙ୍କର ପ୍ରବଂଚନା ଓ ସେମାନଙ୍କର ଶ୍ରେଣୀ ସ୍ୱାର୍ଥର ଦିଗ 'ସବାଶେଷ ଲୋକ'ରେ କଳାକୌଶଳମଣ୍ଡିତ ଓ କାବ୍ୟିକ ସଂଳାପଯୁକ୍ତ ହୋଇ ପ୍ରକାଶ ପାଇଛି ।

ଜଗନ୍ନାଥ ପ୍ରସାଦ ଦାସଙ୍କର 'ଅସଂଗତ ନାଟକ' 'ପୂର୍ବରାଗ' ଓ 'ସୁନ୍ଦର ଦାସ' ରଚିତ ହୋଇଚି ୧୯୮୦ ମସିହା ପରବର୍ତ୍ତୀ କାଳରେ । ଏହି କୃତିଗୁଡ଼ିକରେ ମଧ୍ୟ ତାଙ୍କ ନାଟ୍ୟକାରିତା,

କାବ୍ୟିକ ଅବବୋଧ ଓ ଦାର୍ଶନିକ ଚିନ୍ତାଚେତନା ସହ ସମନ୍ୱିତ ହୋଇ ପ୍ରକାଶ ପାଇଛି । ବୌଦ୍ଧିକତାମଣ୍ଡିତ ତୀକ୍ଷ୍ଣ ଶାଣିତ ସଂଳାପ ମଧ୍ୟ ଉପରୋକ୍ତ ନାଟକଗୁଡ଼ିକର ବୈଶିଷ୍ଟ୍ୟ । 'ଅସଂଗତ' ନାଟକଟି (୧୯୮୧) 'ସମୟ କୀ ହତ୍ୟା କିସ୍‌ନେ କୀ' ନାମରେ ହିନ୍ଦୀରେ ଅନୂଦିତ ହୋଇଛି । ଏହି ନାଟକଟି ଦୁଇଟି ଅଙ୍କ ବିଶିଷ୍ଟ । ଏହାର ପଟ୍ଟଭୂମି ହେଉଛି ଉତ୍ତର ଆଧୁନିକ କାଳ । ବିପର୍ଯ୍ୟସ୍ତ ମୂଲ୍ୟବୋଧ ଓ କାଳର ସଂକଟ ସାଂଗକୁ ଚେତନାର ଅବକ୍ଷୟ ଏହି ଦୁଇ ଅଙ୍କ ବିଶିଷ୍ଟ ନାଟକରେ ଦୃଶ୍ୟରୂପ ପରିଗ୍ରହଣ କରିଛି । 'ପୂର୍ବରାଗ (୧୯୮୫)ରେ ସ୍ଥାନ ପାଇଛି 'ଜଣେ ଜଣକ ପାଇଁ' ଓ 'ଆକସ୍ମିକ' ଛୋଟ ନାଟକ ଦ୍ୱୟ ।

ବେଦଦତ୍ତ, ପ୍ରତିଭା, ଜଜ୍ ସାହେବ, ଅଧ୍ୟାପକ ଓ ତାଙ୍କ ପତ୍ନୀ ପ୍ରଭୃତି ଚରିତ୍ରମାନଙ୍କୁ ନେଇ 'ଜଣେ ଜଣକ ପାଇଁ' ନାଟକଟି ପରିକଳ୍ପିତ । ଅଧ୍ୟାପକ ପିତା ଓ ଜଜ୍ ସାହେବ ଦୁହେଁ ଚାହାନ୍ତି ପ୍ରତିଭା ଓ ବେଦଦତ୍ତ ବିବାହ କରି ସାଂସାରିକ ବଂଧନରେ ଆବଦ୍ଧ ହୁଅନ୍ତୁ । କିନ୍ତୁ ଦୁଇଜଣଯାକ ଏହି ବିବାହରେ ସମ୍ମତ ନୁହନ୍ତି । ମନ ଦୁହିଙ୍କର ରହିଛି ପିତାଙ୍କର ମନୋନୀତ ପାତ୍ରକୁ ଅସ୍ୱୀକାର କରି ଅନ୍ୟର ହାତ ଧରିବା । ତେଣୁ ଏ ପରିସ୍ଥିତିରୁ ଉଦ୍ଧରିବା ପାଇଁ ଦୁହେଁ ନାନା କୌଶଳ ପ୍ରୟୋଗ କରିଛନ୍ତି । ପ୍ରତିଭା ନିଜକୁ ଅଂଧ, ବଧୀର ତଥା ରୁଗ୍‌ଣ ଓ ଦେବଦତ୍ତ ନିଜକୁ ମଦ୍ୟପ ବୋଲି ପ୍ରତିପାଦିତ କରିଛନ୍ତି । ଦୁଇଜଣଙ୍କର ଅଭିନୟ ସଫଳ ହୋଇଛି । ଦେବଦତ୍ତ ଏବେ ଡଲି ନାମ୍ନୀ ଝିଅକୁ ବିବାହ କରିଛି । ନାଟକଟିରେ ବିଦ୍ରୂପ, ପୁଣି ହାସ୍ୟରସର ପ୍ରବାହ, ଏହାକୁ ଗୌରବମଣ୍ଡିତ କରିଛି ।

'ଆକସ୍ମିକ' ଛୋଟ ନାଟକଟି ସେହି ବିବାହ ସମସ୍ୟା ଆଧାରିତ । ନାଟକରେ ଚାରୋଟି ଚରିତ୍ର । ସେମାନେ ହେଲେ ପ୍ରଥମ ଭଦ୍ରବ୍ୟକ୍ତି, ଦ୍ୱିତୀୟ ଭଦ୍ରବ୍ୟକ୍ତି, ରାଧେଶ୍ୟାମ ଓ ଶଶାଙ୍କ । ପ୍ରଥମ ଓ ଦ୍ୱିତୀୟ ଭଦ୍ରବ୍ୟକ୍ତି ହେଉଛନ୍ତି ଦୁଇ କନ୍ୟାପିତା । ତାଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲିଛି, ଶଙ୍କର ନାମକ ଯୁବକକୁ କିଏ ଜାମାତା କରିବ । ପ୍ରଥମ ଭଦ୍ରବ୍ୟକ୍ତି ତାଙ୍କ ଝିଅ ମୀରା ପାଇଁ, ପୁଣି ଦ୍ୱିତୀୟ ଭଦ୍ରବ୍ୟକ୍ତି ତାଙ୍କ ଝିଅ ନୀରା ପାଇଁ ଚାହାନ୍ତି ଶଙ୍କରକୁ । ତେଣୁ ସେଥିପାଇଁ କିଏ କେତେ ଯୌତୁକ ଦେଇପାରିବ ବା ଶଙ୍କରକୁ ଯୌତୁକ ରୂପକ ନିଲାମ ଡାକି ଧରିପାରିବ, ସେ ନେଇ ଯେଉଁ ଅସୁନ୍ଦର ପ୍ରତିଯୋଗିତା, ତା'ର ଚିତ୍ର ନାଟକରେ ଉତ୍କୀର୍ଣ୍ଣ । ତେବେ କଥାଟି ହେଲା ଯେ, ଏହି ପ୍ରତିଯୋଗିତାରେ ଦୁଇ କନ୍ୟାପିତାଙ୍କ ମଧ୍ୟରୁ କେହି ଜିତିବେ ନାହିଁ । ଜିତିବ ଆକସ୍ମିକ ଅର୍ଥାତ୍ କିଛି ଗୋଟାଏ ଘଟିବ ସମସ୍ତଙ୍କ ଧ୍ୟାନ, ଧାରଣାର ବାହାରେ । ଶଙ୍କରର ପିତା ରାଧେଶ୍ୟାମ ଏହି ପ୍ରସଂଗଟି ବେଶ୍ କୌତୁକର ସହ ଉପସ୍ଥାପନ କରିଛନ୍ତି ।

ରାଧେଶ୍ୟାମ: ନା, ଏଥର ଆକସ୍ମିକ ଜିଣିବ।

ଦ୍ୱିତୀୟ: ଆକସ୍ମିକ କିଏ ଜିଣିବ ?

ରାଧେଶ୍ୟାମ: କିଏ ଆକସ୍ମିକ ଜିଣିବ ମାନେ ? ସ୍ୱୟଂ ଆକସ୍ମିକ ଜିଣିବ।

ଆପଣମାନେ ସଂସାର ବିଷୟରେ ଅଜ୍ଞ।

ଦ୍ୱିତୀୟ: ନା ଆଜ୍ଞା, ମୁଁ ତ ଖବରକାଗଜ...

ରାଧେଶ୍ୟାମ: (ବିସ୍ମୟର ସହିତ) ଆପଣ ଖବର କାଗଜ ପଢ଼ନ୍ତି ?

ଦ୍ୱିତୀୟ: ନା ଆଜ୍ଞା, ମୁଁ ଆସିଲା ବେଳେ ଏ ବ୍ୟକ୍ତି ଖବରକାଗଜ ପଢୁଥିଲେ।

ପ୍ରଥମ: ପଢୁଥିଲା କିଏ ? ଖବରକାଗଜଟା ହାତରେ ଧରିଥିଲି। ମୁଁ ଖବର କାଗଜରେ ବଜାରରୁ ମାଛ ଆଣେ।

ଦ୍ୱିତୀୟ : ମୁଁ ଖବର କାଗଜରେ ମୋର ଜୋତା ବାନ୍ଧେ।

ଆମର ପୂର୍ବାନୁମାନ ସବୁ ତାସ୍‌ର ଘର ପରି ଏହି ଆକସ୍ମିକତାରେ ହିଁ ଭୁଷୁଡ଼ିପଡ଼େ। ଶଙ୍କର କ୍ଷେତ୍ରରେ ତାହା ହିଁ ଘଟିଛି। ସେ ମୀରା କି ନୀରା କାହାକୁ ବିବାହ ନ କରି ଇରା ନାମ୍ନୀ ଗୋଟେ ଝିଅକୁ ବିବାହ କରିଛି। ଏଥିରେ ଦୁଇ କନ୍ୟାପିତା ଯେମିତି ବିସ୍ମିତ ଓ ଚକିତ ହୋଇଛନ୍ତି, ସେମିତି ବି ହୋଇଛନ୍ତି ଶଙ୍କରର ପିତା ରାଧେଶ୍ୟାମ। ରାଧେଶ୍ୟାମ ପଞ୍ଚସ୍ତରି ହଜାର ଟଙ୍କା ଯୌତୁକ ପାଇଥା'ନ୍ତେ ପୁଅକୁ ବାହା ଦେଇ ମୀରା କିମ୍ୱା ନୀରା ସହ। ସବୁ ଫସର ଫାଟିଯାଇଛି। ତେବେ ରାଧେଶ୍ୟାମ ବି ଜାଣନ୍ତି, ଆକସ୍ମିକ କଥାଟେ ଘଟିବ। ଶଙ୍କର ତା' ମନମୁତାବକ ଝିଅକୁ ବିବାହ କରିବ। ନାଟକଟିର ପରିସମାପ୍ତିରେ ରାଧେଶ୍ୟାମ, ପ୍ରଥମ ଓ ଦ୍ୱିତୀୟ ଭଦ୍ରବ୍ୟକ୍ତି, ରାଧେଶ୍ୟାମଙ୍କର ସାନପୁଅର ସଂଳାପ ଲକ୍ଷ୍ୟଣୀୟ। ରାଧେଶ୍ୟାମଙ୍କ ସାନପୁଅ ଶଶାଙ୍କ ଘରକୁ ମାତାଲ୍ ହୋଇ ଫେରିଛି କେଉଁ ଗୋଟେ ହୋଟେଲ୍‌ରେ ଶଙ୍କରର ବାହାଘର ପାଇଁ ଆୟୋଜିତ ପାର୍ଟିରୁ। ସେ ସମ୍ୱାଦ ଦେଇଛି ଯେ ଶଙ୍କର ଇରାକୁ ବାହା ହୋଇଯାଇଛି ଯୌତୁକର କୌଣସି ପ୍ରଲୋଭନ ନ ରଖି। ପ୍ରେମ ନିକଟରେ ହାରମାନିଛି ଯୌତୁକ।

ଶଶାଙ୍କ: ଭାଇର ବିବାହ ? (ଖୁବ୍ ଜୋର୍‌ରେ ହସିଲା ସେ) ମୁଁ କହିବାକୁ ଭୁଲିଯାଇଥିଲି, ଭାଇ ତ ଏଇ ସନ୍ଧ୍ୟାରେ ବାହା ହୋଇଗଲା। ଏଇ ତ ମୁଁ ପାର୍ଟିରୁ ଡିନର ଖାଇ ଫେରୁଛି। ଡ୍ରିଙ୍କ୍ ଆଣ୍ଡ ଡିନର୍ । ଗ୍ରାଣ୍ଡ୍ ପାର୍ଟି।

ରାଧେଶ୍ୟାମ: କାହାକୁ ବାହା ହେଲା ? ମୀରାକୁ ?

ଦ୍ୱିତୀୟ ଭଦ୍ରବ୍ୟକ୍ତି : (ଚେକ୍‌ଟା ଚିରି ଦେଉ ଦେଉ) ନୀରାକୁ ?

ଶଶାଙ୍କ: ମୀରା ନୁହେଁ, ନୀରା ନୁହେଁ। ଇରା...ଇରା।

ଦ୍ୱିତୀୟ: ଅନେକ ରାତି ହେଲାଣି; ମୁଁ...ଯାଏ। (ଠିଆ ହେଲେ)।

ରାଧେଶ୍ୟାମ: (ଏସବୁ ପ୍ରତି ଦୃଷ୍ଟି ନ ଦେଇ) ମୁଁ ଜାଣିଥିଲି, ଆକସ୍ମିକ ଜିଣିବ।

(ଭିତରକୁ ଚାଲିଗଲେ)

ଦ୍ୱିତୀୟ ଭଦ୍ରବ୍ୟକ୍ତି: (ବାହାରକୁ ଚାଲିଯାଇ, ପୁଣି ହଠାତ୍ ଭିତରକୁ ପଶି ଆସିଲେ ଓ ଶଶାଙ୍କଙ୍କୁ କହିଲେ) କ୍ଷମା କରିବେ, ଆକସ୍ମିକ କ'ଣ ଇରାଦେବୀଙ୍କ ଛଦ୍ମନାମ ?

(ଶଶାଙ୍କ ହସିଲା ଖୁବ୍। ଡ୍ରିଙ୍କ୍ କରିଥିବାରୁ ସେ କ'ଣ କହୁଥିଲା ଜାଣିପାରୁ ନ ଥିଲା ବୋଧହୁଏ। ତଳେ ଆଣ୍ଠେଇ ପଡ଼ି ସେ ଘୋଡ଼ାର ଅଭିନୟ କରିବାରେ ଲାଗିଲା।)

ଦ୍ୱିତୀୟ: (ଚାଲି ଯାଉ ଯାଉ) ଆକସ୍ମିକ ତା'ହେଲେ ରେସ୍ ଘୋଡ଼ା।

ଶଶାଙ୍କ: (ସେମିତି ଅବସ୍ଥାରେ ତଳୁ ଚେକ୍‌ର ଟୁକୁରା ସଂଗ୍ରହ କରୁ କରୁ) ଭାଇଟା କି ବୋକା ! ପଞ୍ଚସ୍ତରି ହଜାର ଟଙ୍କା ହରାଇଲା। ମୋ ବାହାଘରେ କିନ୍ତୁ ମୁଁ ଟଙ୍କା ନେବି। ବହୁତ ଟଙ୍କା। କାରଣ ମୁଁ ପ୍ରେମକରି ବାହା ହେବି ନାହିଁ।

ଆକସ୍ମିକତା କିପରି ବିସ୍ମୟ ଆଣେ ଓ ପୂର୍ବାନୁମାନଗୁଡ଼ିକୁ ଭାଙ୍ଗିଦିଏ - ଏଇ ସତ୍ୟ ଏଥିରେ ପ୍ରତିପାଦିତ।

ଜଗନ୍ନାଥ ପ୍ରସାଦ ଦାସଙ୍କର 'ସୁନ୍ଦର ଦାସ' ନାଟକରେ ଆମେ ଦେଖୁ ଊନବିଂଶ ଶତକର ସାମାଜିକ ଓ ସାଂସ୍କୃତିକ ପ୍ରେକ୍ଷାପଟର ନିଖୁଣ ଉପସ୍ଥାପନ। ଏହି ଊନବିଂଶ ଶତକର ପ୍ରେକ୍ଷାପଟରେ ଖ୍ରୀଷ୍ଟିଆନ ଧର୍ମର ପ୍ରଚାର ପାଇଁ ମିଶନାରୀମାନଙ୍କର ଓଡ଼ିଶା ଆଗମନ ଓ ସେକାଳର ଓଡ଼ିଶାର ଜଣେ ମହାତ୍ମା ସାଧୁ ସୁନ୍ଦର ଦାସଙ୍କ ଜୀବନ ଚରିତକୁ ଆଧାର କରି ଗଢ଼ି ଉଠିଛି ନାଟକଟି। ପ୍ରଥମେ ଖ୍ରୀଷ୍ଟିଆନ ଧର୍ମଦ୍ୱାରା ପ୍ରଭାବିତ ହୁଅନ୍ତି କୁଜିବର ମଠର ମହନ୍ତ ସାଧୁ ସୁନ୍ଦର ଦାସ। କିନ୍ତୁ ପରେ ମିଶନାରୀମାନଙ୍କ ସହିତ ତାଙ୍କର ଆଦର୍ଶଗତ ଦ୍ୱନ୍ଦ୍ୱ ଉପୁଜେ। ଏହି ଆଦର୍ଶଗତ ଦ୍ୱନ୍ଦ୍ୱ ନାଟକର ଉପଜୀବ୍ୟ। ଏକାଧାରରେ ଐତିହାସିକ ଓ ଚରିତ ନାଟକର ବିଶେଷତ୍ୱଗୁଡ଼ିକ ବହନ କରିଛି 'ସୁନ୍ଦର ଦାସ'। ନାଟକରେ ଗଂଗାଧର ଷଡ଼ଙ୍ଗୀ, ରାମଚନ୍ଦ୍ରଜୀ ଯାଚକ ପ୍ରଭୃତି ସାଧୁ ସୁନ୍ଦରଙ୍କ ଶିଷ୍ୟ ଓ ପାଦ୍ରି ବାମ୍ପଟନ, ଲେସି ଓ ସଟନ ପ୍ରଭୃତି ଐତିହାସିକ

ଚରିତ୍ର ହେଲା ବେଳେ ଅନ୍ୟମାନେ କାଳ୍ପନିକ ଚରିତ୍ର । ନାଟ୍ୟକାହାଣୀ ସମୟସୀମା ୧୮୨୨ ମସିହାଠାରୁ ୧୮୩୩ ମସିହା ପର୍ଯ୍ୟନ୍ତ ଅର୍ଥାତ୍ ଇଂରେଜମାନଙ୍କ ଓଡ଼ିଶା ଅଧିକାରର (୧୮୦୩) ୧୯ ବର୍ଷ ପରଠାରୁ ପାଦ୍ରି ଆମୋସ ସଟନଙ୍କର ଓଡ଼ିଶାରୁ ବିଦାୟ ନେବା ପର୍ଯ୍ୟନ୍ତ । ୧୮୨୨ ମସିହାରେ ବାମ୍ପଟନଙ୍କର ଓଡ଼ିଶା ଆଗମନ ସହିତ ବାପ୍‌ଟିଷ୍ଟ ମିଶନର ଆରମ୍ଭ, ୧୮୨୩ରେ ରେଭେରେଣ୍ଡ ଲେସିଙ୍କ ଓଡ଼ିଶା ଆଗମନ, ୧୮୨୫ରେ ଆମୋସ ସଟନଙ୍କ ଓଡ଼ିଶା ଆଗମନ, ୧୮୨୬ରେ ସାଧୁ ସୁନ୍ଦର ଦାସଙ୍କ ଖ୍ରୀଷ୍ଟିଆନ ପୁସ୍ତିକା ପାଠ ଓ ଏଥିରେ ପ୍ରଭାବିତ ହୋଇ ସେ ସଟନ ଓ ଲେସିଙ୍କୁ କୁଜିବର ନିମନ୍ତ୍ରଣ କରିବା, ୧୮୨୬ରେ କଟକଠାରେ ଖ୍ରୀଷ୍ଟିଆନ ଚାପେଲ୍(ଚର୍ଚ୍ଚ)ର ଆରମ୍ଭ, ୧୮୨୭ର ଖ୍ରୀଷ୍ଟିଆନମାନଙ୍କୁ ସୁନ୍ଦର ଦାସଙ୍କ କୁଜିବର ପତ୍ର ପ୍ରଦାନ, ୧୮୨୭ରେ ବ୍ରହ୍ମପୁରଠାରେ ବାମ୍ପଟନଙ୍କ ଦ୍ୱାରା ଇରନ ସେନାପତିର ଧର୍ମାନ୍ତରଣ, ୧୮୨୮, ୧୮୨୯ ଓ ୧୮୩୦ରେ ଯଥାକ୍ରମେ ଗଂଗାଧର ଷଡ଼ଙ୍ଗୀ, ରାମଚନ୍ଦ୍ରଜୀ ଯାଚକ, କୃପାସିନ୍ଧୁ ସାହୁଙ୍କର ଧର୍ମାନ୍ତରଣ, ୧୮୩୦ ମସିହାରେ ପୁରୀରେ ରୋଗଗ୍ରସ୍ତ ବାମ୍ପଟନଙ୍କ ମୃତ୍ୟୁ, ୧୮୩୨ରେ ରାଧୁ ଦାସଙ୍କ ଧର୍ମାନ୍ତରଣ ଓ ୧୮୩୩ ମସିହାରେ ଓଡ଼ିଶାରୁ ଅମୋସ ସଟନଙ୍କ ବିଦାୟ ପ୍ରଭୃତି ଘଟଣାଗୁଡ଼ିକୁ ତିନୋଟି ଅଙ୍କରେ ଉପସ୍ଥାପନ କରିଛନ୍ତି ନାଟ୍ୟକାର । ପ୍ରଥମ ଅଙ୍କରେ ଦୁଇଟି ଦୃଶ୍ୟ, ଦ୍ୱିତୀୟ ଅଙ୍କରେ ପାଞ୍ଚୋଟି ଦୃଶ୍ୟ ଓ ତୃତୀୟ ଅଙ୍କରେ ତିନୋଟି ଦୃଶ୍ୟ; ଏହିପରି ସର୍ବମୋଟ ଦଶଟି ଦୃଶ୍ୟ ସଂଯୋଜିତ ହୋଇଛି ନାଟକରେ । ଖ୍ରୀଷ୍ଟିଆନ ପାଦ୍ରିମାନଙ୍କ ଠାରୁ ଧର୍ମପୁସ୍ତକ ସଂଗ୍ରହ କରି ଖ୍ରୀଷ୍ଟିଆନ ଧର୍ମର ଉଦାହରଣ ଓ ମାନବବାଦୀ ଆଭିମୁଖ୍ୟ ଦ୍ୱାରା ପ୍ରଭାବିତ ହୋଇ ସୁନ୍ଦର ଦାସ ତାଙ୍କର ଶିଷ୍ୟମାନଙ୍କୁ ଦଶ ଆଜ୍ଞା ପ୍ରଚାର କାର୍ଯ୍ୟରେ ନିୟୋଜିତ କରିଛନ୍ତି । ସୁନ୍ଦର ଦାସଙ୍କ ମନରେ ଘୋର ଆଘାତ ଆସିଛି ଯେତେବେଳେ ପାଦ୍ରିମାନେ ଲୋକମାନଙ୍କୁ ପ୍ରଭାବିତ କରି ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ କରିଛନ୍ତି । ଫଳରେ ସେ ପାଦ୍ରିମାନଙ୍କୁ ବିରୋଧ କରିଛନ୍ତି । ତାଙ୍କ ନାମରେ ମକଦମା ହୋଇଛି । ସେ ଜେଲ୍ ଭୋଗିଛନ୍ତି । ଜେଲ୍‌ରୁ ଫେରିଲା ପରେ ଲେସିଙ୍କ ସହ ତାଙ୍କର ଯେଉଁ କଥୋପକଥନ ହୋଇଛି, ତା'ରି ମଧ୍ୟରୁ ସୁନ୍ଦର ଦାସଙ୍କ ବ୍ୟକ୍ତିତ୍ୱର ମହନୀୟ ଦିଗଗୁଡ଼ିକ ଉଦ୍‌ଭାସିତ ହୋଇଉଠେ ।

ସୁନ୍ଦର ଦାସ:ଆପଣମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ହେବା ଆଗରୁ ମୋର ସଂପର୍କ ହେଲା ଆପଣଙ୍କ ଧର୍ମଗ୍ରନ୍ଥ ସହିତ । ମୁଁ ଯେତେବେଳେ ଦଶ ଆଜ୍ଞା ବହିଟି ପାଇ ପଢ଼ିଲି, ସେତେବେଳେ ଜାଣି ନ ଥିଲି ବାଇବେଲ କ'ଣ, ଯିଶୁଖ୍ରୀଷ୍ଟ କିଏ । ମୁଁ ଦଶ ଆଜ୍ଞାକୁ ଗ୍ରହଣକଲି ସେସବୁ କୌଣସି ଶାସ୍ତ୍ରରେ ଅଛି ବୋଲି ନୁହେଁ; ମୁଁ ତାକୁ ଗ୍ରହଣକଲି, ସେସବୁ ଆଜ୍ଞାର ସାରବତ୍ତା ପାଇଁ । ମୁଁ ଯେତେବେଳେ ଯିଶୁଖ୍ରୀଷ୍ଟଙ୍କ ବିଷୟରେ ଜାଣିଲି, ତାଙ୍କୁ ମନେ ମନେ ପୂଜା କଲି ତାଙ୍କର ମହାନତା ପାଇଁ ।

ସଚିନ : କିନ୍ତୁ ପରେ ଆପଣ ଆମର ବିରୋଧାଚରଣ କଲେ ।

ସୁନ୍ଦର ଦାସ : ଆପଣ ମୋତେ ଆପଣଙ୍କର ଦଣ୍ଡ ଆଜ୍ଞାର ପ୍ରଚାର କରିବାକୁ କହି ନ ଥିଲେ । ମୁଁ ନିଜେ କରିଥିଲି । ସେହିପରି ଆପଣ ମୋର ଶିଷ୍ୟମାନଙ୍କୁ ମାନି ନ ଥିଲେ । ମୁଁ ନିଜେ ସେମାନଙ୍କୁ ଆପଣଙ୍କ ପାଖକୁ ପଠାଇଥିଲି ଆପଣଙ୍କୁ ସାହାଯ୍ୟ କରିବା ପାଇଁ । କିନ୍ତୁ ଆପଣମାନେ ମୋର କାର୍ଯ୍ୟକୁ ଭୁଲ୍ ବୁଝିଲେ ।

ଲେସି: ଆପଣ ଆମର ଧର୍ମରେ ବିଶ୍ୱାସ କରୁଥିଲେ । ତେଣୁ ଆମ୍ଭେ ଚାହୁଁଥିଲୁ ଆପଣ ଆମର ଧର୍ମ ଗ୍ରହଣ କରନ୍ତୁ ।

ସୁନ୍ଦର ଦାସ: ଆପଣ ଚାହୁଁଥିଲେ ମୁଁ ଖ୍ରିସ୍ତାନ ହୋଇଯାଏ । କିନ୍ତୁ ମୁଁ କାହିଁକି ମୋର ଧର୍ମ ଛାଡ଼ି ଆଉ ଗୋଟିଏ ଧର୍ମ ଗ୍ରହଣ କରିଥା'ନ୍ତି ? ମୁଁ ଯାହାସବୁ ଠିକ୍, ଯାହାସବୁ ଉଚିତ ବୋଲି ଭାବୁଥିଲି, ତାକୁ ପାଳନ କରିବାରେ ମୋ ଉପରେ କୌଣସି ପ୍ରତିବନ୍ଧକ ନ ଥିଲା । × ×

ସଚିନ: ଆପଣ କ'ଣ ଭାବୁନାହାନ୍ତି, ଯାହା ସତ୍ୟ ତା' ଲୋକମାନଙ୍କ ଭିତରେ ପ୍ରଚାରିତ ହେବା ଉଚିତ ।

ସୁନ୍ଦର ଦାସ: ସବୁଠାରୁ ବଡ଼ ସତ୍ୟ ହେଲା ମଣିଷ । ଯଦି ଆମର କୌଣସି ପ୍ରଚାରରେ ମଣିଷର କ୍ଷତି ହେଲା, ମଣିଷ ମଣିଷ ଭିତରେ ସମସ୍ୟା ଉପୁଜିଲା, କି ଲାଭ ସେଭଳି ପ୍ରଚାରରେ !

ସାଧୁ ସୁନ୍ଦର ଦାସଙ୍କ ଚରିତ୍ରର ମହନୀୟ ଦିଗ ସମୂହ ନାଟକରେ ଉଦ୍‌ଭାସିତ । ନାଟ୍ୟକାର ଧର୍ମାନ୍ତରର ପ୍ରକ୍ରିୟା ଓ ଧର୍ମାନ୍ତର ପରେ ମଣିଷର ସାମାଜିକ ଜୀବନଚର୍ଯ୍ୟାର ଦିଗଗୁଡ଼ିକୁ ଓ ମାନସିକତାକୁ କଳାତ୍ମକ ରୀତିରେ ଉପସ୍ଥାପନ କରିଛନ୍ତି । ଗଂଗାଧର, ମଗୁଆ, ବଳଭଦ୍ର ପ୍ରଭୃତି ଚରିତ୍ରମାନଙ୍କ ମଧ୍ୟରେ ଏହା ଲକ୍ଷ୍ୟ କରାଯାଇ ପାରିବ । ଊନବିଂଶ ଶତକରେ ଧର୍ମାନ୍ତର ପରି ଏକ ସମ୍ବେଦନଶୀଳ ପ୍ରସଂଗକୁ ନେଇ ନାଟକଟିରେ ତା'ର ଦୃଶ୍ୟରୂପ ପ୍ରସ୍ତୁତ କରିବା ଭଳି କଷ୍ଟସାଧ୍ୟ ବ୍ୟାପାରରେ ହାତଦେଇ ସଫଳ ହୋଇଛନ୍ତି ଜଗନ୍ନାଥ ପ୍ରସାଦ ଦାସ ।

ନାଟକର ସଂଳାପ ଜୀବନ୍ତ ଓ ତାହା ଊନବିଂଶ ଶତକର ପ୍ରେକ୍ଷାପଟକୁ ଦର୍ଶକ ଓ ପାଠକ ସମକ୍ଷରେ ରଖିବାପାଇଁ ସମର୍ଥ । ଖ୍ରୀଷ୍ଟିଆନ ମିଶନାରୀମାନଙ୍କର ଗଦ୍ୟ ରଚନା ସଂପର୍କରେ ଆମେ ତତ୍‌କାଳୀନ ପତ୍ରପତ୍ରିକାରୁ ସୂଚନା ପାଇଥିଲୁ । ତେବେ ନାଟକର ଚରିତ୍ରମାନଙ୍କ ମୁହଁରେ ଏହା କିପରି ଜୀବନ୍ତ ହୋଇଉଠିଛି, ତାହା ବାମ୍ପଟନ, ଲେସି ଓ ସଟନଙ୍କର ସଂଳାପରୁ ଜଣାପଡ଼େ । କେତୋଟି ଉଦାହରଣ ଦିଆଗଲା ।

ଲେସି: ଏ କଥାର ଅର୍ଥହେଲା, ଆତ୍ମା ମଧ୍ୟରେ ଯେବେ ଧର୍ମକୁ ବଂଚାଇ ରଖିବାକୁ ଇଚ୍ଛା କରି, ତେବେ ତାହାକୁ ଆହାର ଦେବାକୁ ହେବ । ଆଉ ଯେଉଁ ଆତ୍ମାର ପୁନର୍ଜନ୍ମ ହୋଇଅଛି,ତାହାର କେବଳ ଏକ ଆହାର ମାତ୍ର ଅଛି । ସେହି ଆହାର ଯିଶୁଖ୍ରୀଷ୍ଟ । ଈଶ୍ୱରଙ୍କ ସନ୍ତାନମାନଙ୍କ ଏହି ରୂପଖାଦ୍ୟ ନୋହିଲେ ନୁହଇ, ତାହା ପାଇବାକୁ ସେମାନଙ୍କ ଲାଳସା ଅଛି, ଆଉ ଯେବେ ସେମାନେ ତାହା ଖାଇବାକୁ ନ ପା'ନ୍ତି, ତେବେ ଦୁର୍ବଳ, ଦୁଃଖିତ ହୋଇ ନିରାଶ ହୁଅନ୍ତି । ମାତ୍ର ଏମନ୍ତ ଦୁର୍ଘଟଣା ପାରିହେବା ନିମନ୍ତେ ଯିଶୁଙ୍କ ନିକଟକୁ ଯାଇ ବିଶ୍ୱାସ ଦ୍ୱାରା ତାହାଙ୍କୁ ସଂପୂର୍ଣ୍ଣ ରୂପେ ଗ୍ରହଣ କରିବା ଆବଶ୍ୟକ । ଆପଣମାନେ ବୁଝିପାରନ୍ତି ତ × × ବାମ୍ପଟନ: ଯେହେତୁ ପରମେଶ୍ୱର ଜଗତକୁ ଏମନ୍ତ ପ୍ରେମ କଲେ ଯେ ସେ ଆପଣା ଅଦ୍ୱିତୀୟ ପୁତ୍ରକୁ ଦେଲେ, ତହିଁରେ ଯେ କେହି ତାହାଙ୍କଠାରେ ବିଶ୍ୱାସ କରିବ, ସେ ବିନଷ୍ଟ ନ ହୋଇ ଅନନ୍ତ ଜୀବନ ପାଇବ ।

ମିଶନାରୀ ବାମ୍ପଟନଙ୍କର "କେ ଆଉ ପାରିବ ତାରି, ଲର୍ଡ ଜୀଜସ୍ କ୍ରାଇଷ୍ଟ ବିନା ଗୋ ! ପାତକ ସାଗର ଘୋର, ଲର୍ଡ ଜୀଜସ୍ କ୍ରାଇଷ୍ଟ ବିନା ଗୋ..." ଗୀତ ଗାଇବା ରୀତି ବେଶ୍ କୌତୁକପ୍ରଦ ହୋଇଛି ନାଟକରେ । ନାଟକର ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟରେ ଏହି ଗୀତ ଗାଇ ଧୋତି ଓ ଫତେଇ ପିନ୍ଧି ତାଙ୍କର ମଂଚ ପ୍ରବେଶ ଓ ଘୋଡ଼ା ଖୋଜିବାର ବୃତ୍ତାନ୍ତ ହାସ୍ୟରସର ପ୍ରବାହ ସୃଷ୍ଟି କରିବାରେ ସମର୍ଥ ।

ବାମ୍ପଟନ : ମୋର ଘୋଡ଼ା କାହିଁ ? କେଉଁଆଡ଼େ ଗଲା ମୋର ଘୋଡ଼ା ? (ସେ ଘୋଡ଼ାକୁ ଖୋଜିଲେ । ହଠାତ୍ ସେଠାରେ ଏତେ ଲୋକଙ୍କୁ ଦେଖି ଖୁସି ହୋଇ ସେ ଠିକ୍ କରି ନେଲେ ଯେ ଏଠାରେ ଧର୍ମୋପଦେଶ ଦିଆଯାଇପାରେ । ସେ ଗାଇବାକୁ ଆରମ୍ଭ କଲେ-) "କେ ଆଉ ପାରିବ ତାରି ଲର୍ଡ ଜୀଜସ୍ କ୍ରାଇଷ୍ଟ୍ ବିନା ଗୋ..."

× ×

ମୋର ପ୍ରିୟ ଭାଇ ଓ ଭଉଣୀମାନେ ! ମୁଁ ଏଠାକୁ କିମ୍ପାଇ ଆସିଛି, ଜାଣନ୍ତି ?

ମଗୁଆ: ଘୋଡ଼ା ଖୋଜିବାକୁ । ଆହା, କାହିଁ ଅଛି ରେ ମୋର ଘୋଡ଼ା !

ବାମ୍ପଟନ: ମୋର ଘୋଡ଼ା ଏଠାରେ ନାହିଁ, ମାତ୍ର ଆପଣମାନେ ଅଛନ୍ତି ।

ମଗୁଆ: କ'ଣ ଆମକୁ ଚଢ଼ିବୁ ନା କ'ଣ ?

ବାମ୍ପଟନ : ମୁଁ ଆପଣମାନଙ୍କୁ ମୁକ୍ତିର ପଥ ଦେଖାଇବି । ମୁକ୍ତି ହେଉଛି ନରକରୁ ରକ୍ଷା । ନରକରେ ସବୁବେଳେ ଅଛି ନିଆଁ ଓ ଗନ୍ଧକ । × ×

ସାଂସ୍କୃତିକ ଅଧ୍ୟୟନ (culture studies) ଦୃଷ୍ଟିରୁ ଆଲୋଚ୍ୟ ନାଟକର ମହତ୍ତ୍ୱପୂର୍ଣ୍ଣ ଭୂମିକାକୁ ସ୍ୱୀକର କରିବାକୁ ହେବ । ଊନବିଂଶ ଶତକର ସାଂସ୍କୃତିକ ପଟ୍ଟପରିବର୍ତ୍ତନ ଓ ରେନାସାଁ ଚିତ୍ର ସହ ଏହାକୁ ନେଇ ଉପୁଜିଥିବା ଦ୍ୱନ୍ଦ୍ୱ ଓ ବିରୋଧକୁ ନାଟ୍ୟକାର ସ୍ପଷ୍ଟ କରିଦେଇଛନ୍ତି । ଓଡ଼ିଆ ସାହିତ୍ୟରେ ରେନାସାଁର ଆଦ୍ୟ ଝଙ୍କାର ଶୁଣାଇଥିବା ଜଗନ୍ମୋହନ ଲାଲଙ୍କର 'ବାବାଜି' ନାଟକର ବାବାଜି ଚରିତ୍ର ହେଉଛି ପ୍ରକୃତରେ ସାଧୁ ସୁନ୍ଦର ଦାସ । ତାଙ୍କ ଦେହାନ୍ତର ପ୍ରାୟ ତିନି ଦଶନ୍ଧି ପରେ ଏପରି ଜଣେ ମହାତ୍ମାଙ୍କ ସଂପର୍କରେ ଜାଣି ଜଗନ୍ମୋହନଙ୍କର ନାଟ୍ୟକାରିତା ପ୍ରଭାବିତ ହୋଇଛି ଓ ତାକୁ ନାଟକର ମୁଖ୍ୟ ତଥା କେନ୍ଦ୍ର ଚରିତ୍ର ଭାବରେ ଉପସ୍ଥାପନ କରାଯାଇଛି ।

■■

## ଜେପିଙ୍କ

# ମନକଥା ଓ ମନନଶୀଳତା

**ଅଧ୍ୟାପକ ବିଶ୍ୱରଂଜନ**

ଆକାଶକୁ ଅନାଇଲେ / ଅନେକ ପ୍ରଶ୍ନ କରିବାକୁ ଇଚ୍ଛା ହୁଏ / ସମୟ ଓ ସୀମାହୀନତା / ଚିରନ୍ତନ ଅୟନାନ୍ତ ଓ ପରିକ୍ରମା ବିଷୟରେ / କିନ୍ତୁ ଆକାଶ ସବୁ ପ୍ରଶ୍ନକୁ ଫେରାଇ ଦିଏ / ଏବଂ ଓଲଟା ପ୍ରଶ୍ନ କରେ / ଆହୁରି କିଛି କ୍ଷଣ / ଶୂନ୍ୟକୁ ନିର୍ନିମେଷ ଅନାଇ ରହିଲେ / ସ୍ୱତଃ ସମସ୍ତ ପ୍ରଶ୍ନର ଉତ୍ତର ମିଳିଯାଏ

(କବିତା 'ସପ୍ତର୍ଷି'-ଯାତ୍ରାର ପ୍ରଥମ ପାଦ-ଜଗନ୍ନାଥ ପ୍ରସାଦ ଦାସ )

ଏହିଭଳି ପ୍ରଶ୍ନ କରିବାର ଇଚ୍ଛା ଓ ଆଗ୍ରହ ଏବଂ ଉତ୍ତର ପାଇଯିବାର ଆନନ୍ଦ ଭିତରେ କବି ଜଗନ୍ନାଥ ପ୍ରସାଦ ଦାସଙ୍କ ସର୍ଜନଶୀଳତା। କବିତାରୁ କଥା, କଥାରୁ ନାଟକ ଓ ଚିତ୍ରକଳା, ପୁଣି କଳାଜଗତରୁ ପିଲାଙ୍କ ପାଇଁ ଅନାବନା ଏବଂ ଶେଷରେ ଇତିହାସର ଗର୍ଭଗୃହ ଭିତରକୁ ପ୍ରବେଶ କରି ପୋଥି - ପତର ସାଉଁଟିବାର ନିଷ୍ଠା ଓ ତାକୁ ନିଆରା ଦୃଷ୍ଟିରେ ଦେଖିବା ଓ ପରଷିଦେବାର ଦ୍ରଷ୍ଟା ଓ ସ୍ରଷ୍ଟାପଣରେ ଜଗନ୍ନାଥ ପ୍ରସାଦଙ୍କ ଲେଖକୀୟ ବ୍ୟକ୍ତିତ୍ୱ ବିଚିତ୍ର ତଥା ବର୍ଣ୍ଣାଢ଼୍ୟ। ଓଡ଼ିଆ ଜାତିଗଠନର ଇତିହାସକୁ 'ଦେଶ କାଳ ପାତ୍ର'ର ବିପୁଳାୟତନରେ ଉପନ୍ୟାସର ନୂଆ ରୂପ ଦେବାରେ ସେ ନିଜ ସୃଜନ ସାମର୍ଥ୍ୟର ପରିଚୟ ଦେଇଛନ୍ତି। ଏଥିପାଇଁ ସେ ଯେଭଳି ଚନ୍ଦନ-ଚର୍ଚ୍ଚିତ ହୋଇଛନ୍ତି, ସେହିଭଳି ସମାଲୋଚିତ ମଧ୍ୟ। ମାତ୍ର ସକଳ ଆଲୋଚନା-ସମାଲୋଚନାର ଉର୍ଦ୍ଧ୍ୱରେ, ଦୂର ଦିଲ୍ଲୀର ୩୦୫, ହାଉଜଖାସ୍ ଆପାର୍ଟମେଣ୍ଟ୍‌ସର ନିଭୃତ ନିଳୟରେ, ଏବେ ମଧ୍ୟ

ଜଗନ୍ନାଥ ପ୍ରସାଦ ତାଙ୍କର ସୃଜନ- ଯାତ୍ରା ଜାରି ରଖିଛନ୍ତି । ଅବସ୍ଥାନ ସିନା ଦିଲ୍ଲୀରେ, ହୃଦୟର ଆସ୍ଥାନ କିନ୍ତୁ ଓଡ଼ିଶାରେ । ହୃଦୟର ସ୍ୱର ଓ ସଂଳାପ ଆପଣାର ଓଡ଼ିଆ ଭାଷାରେ । ଓଡ଼ିଶାରେ ବିତେଇଥିବା ଶୈଶବ, ଶିକ୍ଷାର୍ଥୀର ଜୀବନ, ତଥା ବୃତ୍ତିଗତ ପ୍ରଶାସକୀୟ ଦାୟିତ୍ୱ ନିର୍ବାହର ସ୍ମୃତି ଓ ଅନୁଭୂତିକୁ ସମ୍ବଳ କରି ସେ ଏବେ ଲଳିତ ନିବନ୍ଧମାନ ରଚନା କରି ଚାଲିଛନ୍ତି । "ସ୍ମୃତି ହେଉଛି ମଣିଷର ଏକ ବହୁମୂଲ୍ୟ ତଥା ଅତି ସମ୍ବେଦନଶୀଳ ସଂପଦ । ସ୍ମୃତି ସୁଖ ଦିଏ, ପୁଣି ତା'ଠାରୁ ବେଶୀ ଦୁଃଖ ଦିଏ । ଖୋଜିଲା ବେଳେ ମିଳେ ନାହିଁ, ଅସମୟରେ ଆସି ପହଞ୍ଚେ । ସ୍ମୃତିକୁ ମନେରଖିବା ଯେତିକି ସହଜ ନୁହେଁ, ଭୁଲିଯିବା ସେତିକି କଷ୍ଟ । × × ସ୍ମୃତି ଲୁଚକାଳି ଖେଳିବାକୁ ଭଲପାଏ ।" ଜୀବନର ସାୟାହ୍ନରେ ସ୍ମୃତି ସହିତ ଏମିତି ଲୁଚକାଳି ଖେଳୁ ଖେଳୁ ଜଗନ୍ନାଥ ପ୍ରସାଦ ହୋଇଯାଆନ୍ତି ଏକ ଚମତ୍କାର ପ୍ରବନ୍ଧ (ସ୍ମୃତି ବିଭ୍ରମ, ସ୍ମୃତି ବିଶୋଧନ ଓ ରାଶୋମନ)ର ସ୍ରଷ୍ଟା । ସ୍ମୃତିର ଆଖ୍ୟାନ ସହ ମିଶିଯାଏ ନିଜର ବିଚାର ଓ ବ୍ୟାଖ୍ୟାନ । ସ୍ମୃତିର ରୋମନ୍ଥନ କରିବା ବେଳେ ବିଭିନ୍ନ ଲୋକ କିପରି ଗୋଟିଏ ଘଟଣାକୁ ବିଭିନ୍ନ ଭାବରେ ଦେଖିଥା'ନ୍ତି, କିମ୍ବା ନିଜର ସ୍ୱାର୍ଥ ଦୃଷ୍ଟିରୁ ଭିନ୍ନ ଭାବରେ ଦେଖାଇବାକୁ ଉଦ୍ୟମ କରିଥା'ନ୍ତି, ସେ ସଂପର୍କରେ 'ରାଶୋମନ ପ୍ରଭାବ' ର ଉଲ୍ଲେଖ କରି ଆଲୋଚକ ଜଗନ୍ନାଥ ପ୍ରସାଦ ସାଧାରଣ ବିଷୟଟିକୁ ଅତ୍ୟନ୍ତ ପ୍ରଭାବଶାଳୀ ଢଙ୍ଗରେ ଉପସ୍ଥାପନ କରିଛନ୍ତି । ୧୯୫୦ରେ କୁରୋସ୍ୱାଙ୍କ ନିର୍ଦ୍ଦେଶିତ ଜାପାନୀ ଫିଲ୍ମ 'ରାଶୋମନ'ରେ ଚାରିଜଣ ଲୋକ ଏକା ଘଟଣାକୁ ସଂପୂର୍ଣ୍ଣ ଅଲଗା ଅଲଗା ଓ ପରସ୍ପରବିରୋଧୀ ଭାବରେ କିପରି ବର୍ଣ୍ଣନା କରୁଛନ୍ତି - ତା'ରି ଉଦାହରଣ ଦେଇ ପ୍ରାବନ୍ଧିକ ବ୍ୟକ୍ତିଗତ ଜୀବନର ସ୍ମୃତିଚାରଣକୁ ଏକ ସାର୍ବଜନୀନ ସାହିତ୍ୟକୃତିରେ ପରିଣତ କରିଦେଇଛନ୍ତି ।

ଜଣେ ଲେଖକର ସୃଷ୍ଟି ସହିତ ପରିଚିତ ହେଲା ବେଳେ, ତା'ର ବ୍ୟକ୍ତିଗତ ଜୀବନ ସଂପର୍କରେ ଜାଣିବା ପାଇଁ ଅନେକ ସମୟରେ ପାଠକ ଓ ସମାଲୋଚକମାନେ ଆଗ୍ରହ ପ୍ରକାଶ କରିଥାଆନ୍ତି । ବ୍ୟକ୍ତି ଚରିତ୍ର କେତେଦୂର ସୃଷ୍ଟିକୁ ପ୍ରଭାବିତ କରିଛି, ସେ ସଂପର୍କରେ ରୋଚକ ଆଲୋଚନା ମଧ୍ୟ କରାଯାଇଥାଏ । ଏହା କେତେଦୂର ସ୍ପୃହଣୀୟ ବା ନୁହେଁ - ସେ ସଂପର୍କରେ 'ଲେଖକର ବ୍ୟକ୍ତିଗତ ଜୀବନ'ଶୀର୍ଷକଏକ ସ୍ୱତନ୍ତ୍ର ଆଲୋଚନାରେ ଜଗନ୍ନାଥ ପ୍ରସାଦ କବିଗୁରୁ ରବୀନ୍ଦ୍ରନାଥ, ମହାତ୍ମା ଗାନ୍ଧୀଙ୍କ ଠାରୁ ଆରମ୍ଭ କରି ଫକୀରମୋହନ, କୁନ୍ତଳାକୁମାରୀ, ରମାକାନ୍ତ ରଥଙ୍କ ପର୍ଯ୍ୟନ୍ତ ଅନେକ କବି, ଲେଖକଙ୍କ ଦୃଷ୍ଟାନ୍ତ ଦେଇ ଆମେରିକାରେ ୧୯୩୦-୪୦ ଦଶକରେ ଆରମ୍ଭ ହୋଇଥିବା 'ନିଉ କ୍ରିଟିସିଜମ୍'ର ଆନ୍ଦୋଳନ ସଂପର୍କରେ ଉଲ୍ଲେଖ କରିଛନ୍ତି । ଏହି ଆନ୍ଦୋଳନର ଆଭିମୁଖ୍ୟ ହେଲା, କୌଣସି ଲେଖାର ଆଲୋଚନା କରିବା ବେଳେ ଲେଖକର ଜୀବନୀ ବା ଲେଖାର ପୃଷ୍ଠଭୂମି ପ୍ରାସଂଗିକ ନୁହେଁ । କାଗଜ ପୃଷ୍ଠାରେ ଥିବା ପାଠ ହିଁ

ସର୍ବୋତ୍କୃଷ୍ଟ। କେତେକ କ୍ଷେତ୍ରରେ ଦେଖିବାକୁ ମିଳିଛି, ଲେଖକର ବ୍ୟକ୍ତିସତ୍ତା ସହିତ ତା' ସୃଷ୍ଟିସତ୍ତାର କୌଣସି ସାମଞ୍ଜସ୍ୟ ନାହିଁ। ନିଜ ସୃଷ୍ଟିରେ ପ୍ରେମ, ସୌନ୍ଦର୍ଯ୍ୟ, ସଦ୍‌ଭାବର ବାର୍ତ୍ତା ବିତରଣ କରୁଥିବା ଲେଖକଟି ବାସ୍ତବ ଜୀବନରେ ହୁଏତ ଈର୍ଷା, ଅସୂୟା ପ୍ରପୀଡ଼ିତ ଏବଂ ସଂପୂର୍ଣ୍ଣ ବିପରୀତ ଚରିତ୍ରର ବ୍ୟକ୍ତିଟିଏ ହୋଇଥାଇପାରେ। ଏସବୁ କଥା ପାଠକର ଗୋଚରକୁ ଆସିଲା ପରେ, ତା'ର ମୋହଭଂଗ ହୁଏ ଏବଂ ଲେଖକ ପ୍ରତି ଥିବା ପୂର୍ବ ଆସ୍ଥା ଓ ସମ୍ମାନ ଆଉ ରହେ ନାହିଁ। ରାଜନୈତିକ ବ୍ୟକ୍ତିମାନଙ୍କ ଆଚରଣ ଓ ଉଚ୍ଚାରଣରେ ଥିବା ପାର୍ଥକ୍ୟ ଅନ୍ତତଃ ସାହିତ୍ୟିକମାନଙ୍କ କ୍ଷେତ୍ରରେ ନ ରହୁ ବୋଲି ସାଧାରଣ ପାଠକ ଆନ୍ତରିକ ଅଭିଳାଷ ପୋଷଣ କରନ୍ତି। ମାତ୍ର ଜଗନ୍ନାଥ ପ୍ରସାଦଙ୍କ ଲେଖାର ନିଷ୍କର୍ଷ ହେଲା "ଗୋଟିଏ ଲେଖା ପଢ଼ିବା ବେଳେ ଆମର କିଛି ବି ଆବଶ୍ୟକତା ନାହିଁ ଜାଣିବା ଲୋକଟି ଦେଖିବାକୁ କିପରି, ସେ ମଦ୍ୟପ କି ନା, ସେ କ'ଣ ସ୍ତ୍ରୀକୁ ପିଟେ, ଗତ ନିର୍ବାଚନରେ ସେ କାହାକୁ ଭୋଟ ଦେଇଥିଲା ବା ୟୁନିଫର୍ମ ସିଭିଲ କୋଡ୍ ବିଷୟରେ ତା'ର ମତ କ'ଣ। ତା'ର ଯେଉଁ ଲେଖାଟି ଆମ ଆଗରେ ଅଛି, ତାକୁ ହିଁ ପଢ଼ି ଆମେ ଜାଣିବା, ସେ କ'ଣ କହିବାକୁ ଚାହୁଁଛି।"

ମାତ୍ର ଜଣେ ପାଠକର ଲେଖକୀୟ ଅଭିବ୍ୟକ୍ତି ଭିତରୁ ତା'ର ପ୍ରିୟ ଲେଖକକୁ ଖୋଜିବାର ପ୍ରୟାସ କରିବାରେ କିଛି ଅସ୍ୱାଭାବିକତା ନାହିଁ। କାରଣ ସେ ନିଜ ମନ ଭିତରେ ଲେଖକର ଏକ କଳ୍ପିତ ଭାବମୂର୍ତ୍ତି ତିଆରି କରିଥାଏ ଏବଂ କେବଳ ଲେଖା ନୁହେଁ, ଲେଖକ ସମ୍ବନ୍ଧରେ ଅଧିକ ଜାଣିବାର ବିସ୍ତୃତ ବିବରଣୀକୁ ନେଇ ପ୍ରକାଶିତ ପୁସ୍ତକ ମଧ୍ୟ ପ୍ରଚୁର ପାଠକୀୟତା ଅର୍ଜନ କରିଥାଏ। ଏ ପ୍ରସଂଗରେ ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ଦ୍ୱାରା ସଂପାଦିତ 'ଜଗନ୍ନାଥ ପ୍ରସାଦ: ସୃଜନ ଯାତ୍ରା' ଏବଂ ସୁମନ୍ୟୁ ଶତପଥୀଙ୍କ ଦ୍ୱାରା ସଂକଳିତ 'ପ୍ରିୟ ଜେପି' ଶୀର୍ଷକରେ ତାଙ୍କ ଚିଠିପତ୍ରକୁ ଉଦାହରଣ ରୂପେ ନିଆଯାଇପାରେ। ଲେଖାଠାରୁ ଲେଖକକୁ ଭିନ୍ନ କରି ଦେଖିବା ଆଦୌ ସହଜ କଥା ନୁହେଁ।

ଜଗନ୍ନାଥ ପ୍ରସାଦଙ୍କ କବିତା, ବିଶେଷ କରି ତାଙ୍କ ଗଳ୍ପ ପଢ଼ି ତାଙ୍କୁ ଭଲପାଇ ବସିଥିବା ମୋ ଭଳି ଲେଖକ ଓ ପାଠକ ଯେତେବେଳେ ତାଙ୍କର ଆଲୋଚନା ବା ଲଳିତ ନିବନ୍ଧଗୁଡ଼ିକ ପାଠ କରୁଛି, ସେତେବେଳେ ସେ ଆବିଷ୍କାର କରୁଛି ଜଣେ ଭିନ୍ନ ଗଦ୍ୟକାରଙ୍କୁ - ଯିଏ ବିଭିନ୍ନ ଜଟିଳ ବିଷୟକୁ ସରଳ, ସାବଲୀଳ ଢଙ୍ଗରେ ଉପସ୍ଥାପନ କରିବାର କଳା ଆୟତ୍ତ କରିଛନ୍ତି। ଏ ଆଲୋଚନାକୁ ମୁଁ 'ମର୍ମରଚନା'ର ଆଖ୍ୟା ଦେବି। କାରଣ ଏଥିରେ ବିଷୟ ଉପଯୋଗୀ ତଥ୍ୟ, ପୁସ୍ତକଲବ୍ଧ ସୂଚନା ସାଂଗକୁ ନିଜସ୍ୱ ମତ ଓ ମନ୍ତବ୍ୟ ରହିଛି। ସ୍ଥଳ ବିଶେଷରେ ବକ୍ରୋକ୍ତି ଓ ବ୍ୟଙ୍ଗୋକ୍ତିମୂଳକ ଅଭିବ୍ୟକ୍ତି, ରଚନାକୁ ଗୁରୁଗମ୍ଭୀର ନ କରି ରସାଳ, ରମଣୀୟ କରିଦେଇଛି। ଫଳରେ ଏସବୁ ଲେଖାରେ ପାଠକୀୟ କ୍ଳାନ୍ତି ଆସିବାର କୌଣସି ଆଶଙ୍କା ନାହିଁ। ଅବଶ୍ୟ କେତୋଟି ପ୍ରବଂଧରେ

ଅଭିବ୍ୟକ୍ତ ତାଙ୍କ ବିଚାରକୁ ଗ୍ରହଣ ନ କରି ଅନ୍ୟମାନେ ଭିନ୍ନମତ ପୋଷଣ କରିବାର ସୁଯୋଗ ରହିଛି। ଉଦାହରଣ ସ୍ୱରୂପ - ଯେପରି 'ବର୍ଣ୍ଣସଂକର, ବର୍ଣ୍ଣବୋଧ ଓ ବର୍ଣ୍ଣ ବିପର୍ଯ୍ୟୟ' ଶୀର୍ଷକ ଆଲୋଚନା, ଯେଉଁଥିରେ ମଧୁରାଓଙ୍କ ବର୍ଣ୍ଣବୋଧରେ ବର୍ଣ୍ଣିତ ପାଠ ସଂପର୍କରେ ତାଙ୍କର ପ୍ରତିକୂଳ ମନ୍ତବ୍ୟକୁ ପ୍ରାବନ୍ଧିକ ଓ ଗବେଷକ ଅସିତ ମହାନ୍ତି ଗ୍ରହଣ କରିପାରି ନାହାନ୍ତି। 'ସମ୍ବାଦ'ରେ ଜଗନ୍ନାଥ ପ୍ରସାଦଙ୍କର ଏହି ଲେଖାଟି ପ୍ରକାଶ ପାଇବା ପରେ, ସେ ତା'ର ପ୍ରତିପକ୍ଷ ଆଲୋଚନା କରିଥିଲେ ସେହି 'ସମ୍ବାଦ' ପୃଷ୍ଠାରେ।

ଜଗନ୍ନାଥ ପ୍ରସାଦଙ୍କ ପ୍ରବନ୍ଧ ତଥା ସାହିତ୍ୟାଲୋଚନାର ସଂକଳିତ କୌଣସି ପୁସ୍ତକ ଏ ଯାବତ୍ ପ୍ରକାଶ ପାଇନାହିଁ। ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଏବଂ ବିଭିନ୍ନ ଅନୁଷ୍ଠାନରେ ପ୍ରଦତ୍ତ ତାଙ୍କ ଅଭିଭାଷଣର ଲିଖିତ ରୂପ ମଧ୍ୟରୁ ପନ୍ଦରଟି ଲେଖା 'ସୃଜନୀ' ର ସଂପାଦକ ହରିହର ଶୁକ୍ଳ ମୋ ପାଖକୁ ପଠାଇଥିଲେ। ଅନୁରୋଧ କରିଥିଲେ, ଏ ଲେଖା ସଂପର୍କରେ ମୁଁ ଯେପରି ଏକ ଆଲୋଚନା ଲେଖେ। ଅର୍ଥାତ୍ ଜଗନ୍ନାଥ ପ୍ରସାଦଙ୍କ ଆଲୋଚନାର ଆଲୋଚନା। ଏଭଳି ଏକ ଆଲୋଚନା ପାଇଁ ମୋର କୌଣସି ଯୋଗ୍ୟତା ନ ଥିଲେ ହେଁ, ମୁଁ ହରିହରଙ୍କ ଅନୁରୋଧକୁ ଏଡ଼େଇ ପାରି ନ ଥିଲି, ଜଗନ୍ନାଥ ପ୍ରସାଦଙ୍କ ଲେଖା ପ୍ରତି ମୋର ବିଶେଷ ଆଗ୍ରହ ଓ ଆକର୍ଷଣ ଦୃଷ୍ଟିରୁ। ଧନ୍ୟବାଦ ଦେବି, 'ସୃଜନୀ' ର ସଂପାଦକ ହରିହରଙ୍କୁ ଯେ, ସେ ତାଙ୍କର ଜଗନ୍ନାଥ ପ୍ରସାଦ ଦାସ ବିଶେଷାଙ୍କ ପ୍ରସ୍ତୁତି କାଳରେ, ମୋତେ ଅନ୍ତତଃ ଏକାସାଂଗରେ ତାଙ୍କର ପ୍ରବଂଧଗୁଡ଼ିକ ପାଠ କରିବାର ସୁଯୋଗ ଦେଇଛନ୍ତି। ମୁଁ ସେଗୁଡ଼ିକୁ ମନଧ୍ୟାନ ଦେଇ ପଢ଼ିଛି। ପାଠକୀୟ ପରିତୃପ୍ତି ପାଇଛି। ଜଗନ୍ନାଥ ପ୍ରସାଦଙ୍କ ଲେଖକୀୟ ଅନୁଭବ, ଅନୁଭୂତି ତଥା ଅଧ୍ୟୟନ ଓ ଅନୁଶୀଳନ ସହିତ ପରିଚିତ ହୋଇଛି। ମାତ୍ର ସେ ସବୁର ସମୀକ୍ଷା ! ନା ବାବା ନା। କାରଣ ତାଙ୍କର 'ସମୀକ୍ଷକ' କବିତାର ଉଦ୍ଧୃତାଂଶ ହିଁ ମୋତେ ଏ ସଂପର୍କରେ ବେଶ୍ ସତର୍କ ଓ ସଚେତନ କରିଦେଇଛି-

ପ୍ରତି ପୃଷ୍ଠାରେ ଖୋଜି କିଛି କିଛି ଛିଦ୍ର<br>
ବହିଟି ପଢ଼ାରେ କାଟେ ରାତିଟି ବିନିଦ୍ର<br>
ଲେଖେ ଯେଉଁ ଆଲୋଚନା<br>
ବହି କଥା ଥାଏ ଉଣା<br>
ଇଂରେଜୀ ଉଦ୍ଧୃତି ଉପଦେଶ ବିଦ୍ର

ସାହିତ୍ୟର ସମାଲୋଚକ ବା ସମୀକ୍ଷକ ହେବାର ସୌଭାଗ୍ୟ ମୁଁ ଅର୍ଜନ କରିପାରି ନାହିଁ ଏବଂ ତାହା ହିଁ ମୋର ସୌଭାଗ୍ୟ ଯେ, ମୁଁ ସେ ' ଭୁରୁକୁଞ୍ଚା ପଣ୍ଡିତଙ୍କ ଦଳ' ଭିତରେ ନାହିଁ। ଏ

ସଂପର୍କରେ ସ୍ୱୟଂ ଜେପି ତାଙ୍କର ଏକ ଆଲୋଚନା ('ସମ୍ବାଦ' ରବିବାର ସାହିତ୍ୟପୃଷ୍ଠା) ଆରମ୍ଭ କରି ଲେଖିଛନ୍ତି -

ଏଠିକାର ଭୁରୁକୁଞ୍ଚା ପଣ୍ଡିତଙ୍କ ଦଳ
ପାଣିରୁ କାଢ଼ନ୍ତି ସର କ୍ଷୀରରୁ ଯେ ଜଳ
ଏ ଯେ ଅଧ୍ୟାପକ ଦଳ, ବ୍ରହ୍ମା, ଦାସ, ମିଶ୍ର
ଗରଜନ୍ତି ଟୀକା କରି ସଭାରେ ଅଜସ୍ର

ଉପରିଲିଖିତ ଚାରିଧାଡ଼ି ଗୋଟିଏ କବିତାର ଅଂଶ ମନେ ହୋଇପାରେ, କିନ୍ତୁ ଜେପି ତାଙ୍କର ସ୍ମରଣଶକ୍ତି ତଥା ତିର୍ଯ୍ୟକ୍ ଦୃଷ୍ଟିରେ ଦୁଇଜଣ କବିଙ୍କ ଦୁଇ ଦୁଇ ଧାଡ଼ି ମିଶେଇ ଏ ଚାରିଧାଡ଼ି ପ୍ରସ୍ତୁତ କରିଛନ୍ତି । ସେ ନିଜେ ସୂଚନା ଦେଇଛନ୍ତି ଯେ, ପ୍ରଥମ ଦୁଇଧାଡ଼ି ଅଛି ସଚ୍ଚି ରାଉତରାୟଙ୍କର 'କବିର ମୃତ୍ୟୁ' ରେ ଏବଂ ପରବର୍ତ୍ତୀ ଦୁଇଧାଡ଼ି ଗୋଦାବରୀଶ ମହାପାତ୍ରଙ୍କର 'ଭଞ୍ଜ ବିଚାର' କବିତାରେ । ଏଥି ସହିତ ଯୋଡ଼ି ଦିଆଯାଇପାରେ ଇଂରେଜୀ କବି ୟେଟସ୍‌ଙ୍କର 'ଦ ସ୍କଲାର୍ସ' (ବିଦ୍ୱାନ ଦଳ) କବିତାର କେତେ ଧାଡ଼ି, ଯାହା ମୁକ୍ତ ଅନୁବାଦରେ (ଜେପି ଅନୂଦିତ) ହେବ -

ନିଜ ନିଜ ପାପ ଭୁଲି ବୃଦ୍ଧ, ଜ୍ଞାନୀ, ମାନୀ
ଚନ୍ଦାମୁଣ୍ଡିଆଙ୍କ ଦଳ ଲେଖନ୍ତି ଟିପ୍ପଣୀ

ଜେପିଙ୍କ ବ୍ୟଙ୍ଗୋକ୍ତିରୁ ଆରମ୍ଭ ହୋଇଥିବା ସାହିତ୍ୟ - ସମୀକ୍ଷା ସଂପର୍କିତ ଏହି ଆଲୋଚନାରେ ପାଶ୍ଚାତ୍ୟ ଲେଖକଙ୍କଠାରୁ ଆରମ୍ଭ କରି ଆମ ସାହିତ୍ୟର ସ୍ରଷ୍ଟା ଓ ସେମାନଙ୍କ ସୃଷ୍ଟି- ସମୀକ୍ଷା ସଂପର୍କରେ ବହୁ ରୋଚକ ଘଟଣାର ସୂଚନା ରହିଛି । ଏହା ସହିତ ନିଜେ ଜେପି ନିଜର ମତବ୍ୟକ୍ତ କରି କହିଛନ୍ତି, ଆଦୌ ସମୀକ୍ଷା ନ ହେବା ଅପେକ୍ଷା ନକାରାତ୍ମକ ଆଲୋଚନା ବରଂ ଭଲ । ବିସ୍ତୃତ ଆଲୋଚନା ଅନେକ ସମୟରେ ବହିଟିକୁ ଲୋକଲୋଚନକୁ ଆଣିଥାଏ । ଏ ସଂପର୍କରେ ଜେପି ନିଜ ବହିର ଉଦାହରଣ ଦେଇ କହିଛନ୍ତି ଯେ, ତାଙ୍କ 'ଦେଶ କାଳ ପାତ୍ର'ର ପ୍ରଥମେ ପ୍ରଥମେ ଯେଉଁ ଦୋଷଦର୍ଶୀ ସମାଲୋଚନାମାନ ପ୍ରକାଶ ପାଇଥିଲା, ସେଥିଯୋଗୁଁ ବହିଟି ପାଇଁ କିଛି ଅଧିକ ଆଗ୍ରହ ପ୍ରକାଶ ପାଇଥିଲା ।

ପୁସ୍ତକ ରଚନା ଭଳି ପୁସ୍ତକର ସମୀକ୍ଷା କରିବାରେ ମଧ୍ୟ ରହିଛି ସର୍ଜନଶୀଳତା । ଏହା ଏକ ଗୁରୁତ୍ୱପୂର୍ଣ୍ଣ ଗମ୍ଭୀର କାର୍ଯ୍ୟ । ମାତ୍ର ସେ ସଂପର୍କରେ ଆମ ଓଡ଼ିଶାରେ ଯେ ବିଶେଷ ସଚେତନତା ନାହିଁ, କିମ୍ବା ସାହିତ୍ୟର ସ୍ୱତନ୍ତ୍ର ସମୀକ୍ଷକ ଗୋଷ୍ଠୀ ବାହାରି ନାହାନ୍ତି, ଯାହା ଅନ୍ୟାନ୍ୟ ଭାଷା ସାହିତ୍ୟରେ ସମ୍ଭବ ହୋଇଛି, ସେ ସଂପର୍କରେ ନିଜର ଉଦ୍‌ବେଗ ଓ ଚିନ୍ତା ବ୍ୟକ୍ତ କରିଛନ୍ତି

ଜେପି । ଇଂରାଜୀ ସଂବାଦପତ୍ରର ରବିବାର ସଂସ୍କରଣରେ କେତେକ ଭଲ ବହିର ଯେଭଳି ଦୀର୍ଘ ସମୀକ୍ଷା ପ୍ରକାଶ ପାଏ, ତାହା ଆମର ଓଡ଼ିଆ ସଂବାଦପତ୍ରରେ ଦେଖିବାକୁ ମିଳେ ନାହିଁ । ଏଥିପାଇଁ ସ୍ୱତନ୍ତ୍ର ପତ୍ରିକା ମଧ୍ୟ ନାହିଁ । ଜଣେ ପ୍ରତିଭାସଂପନ୍ନ ଯୁବ ସାମ୍ବାଦିକ ତଥା ଲେଖକ ସ୍ୱର୍ଗତ ବିଭୂତି ମିଶ୍ରଙ୍କ ସଂପାଦନାରେ ଏକଦା ପ୍ରକାଶ ପାଉଥିବା 'ବହିଜଗତ' ମଧ୍ୟ କିଛି ଦିନ ପ୍ରକାଶ ପାଇବା ପରେ ବନ୍ଦ ହୋଇଯାଇଥିଲା । ଆମର ଏଠି ଜଣେ ଲେଖକର ପୁସ୍ତକ - ସମୀକ୍ଷା ଆଉ ଜଣେ ଲେଖକ ବଂଧୁ ହିଁ କରିଥାଏ । ଏପରିକି ଶୁଣାଯାଏ, ସ୍ୱୟଂ ଲେଖକ ହିଁ ନିଜ ବହିର ସମୀକ୍ଷା ଲେଖି ଅନ୍ୟ ନାଁରେ ପ୍ରକାଶ କରିଥା'ନ୍ତି । ଆମ ସାହିତ୍ୟ ସମୀକ୍ଷାର ଏ ପ୍ରକାର ଦୁଃସ୍ଥିତି ସଂପର୍କରେ ସୂଚନା ଦେଇ ଜେପି ମତ ଦିଅନ୍ତି ଯେ, ବହିଟି ପାଇଁ ସମୀକ୍ଷକ ଠିକ୍ କରିବା ବେଳେ ଦେଖିବାକୁ ହେବ ଯେ, ପୁସ୍ତକର ଲେଖକ ଓ ସମୀକ୍ଷକ ପ୍ରତିଦ୍ୱନ୍ଦ୍ୱୀ ହୋଇ ନ ଥିବେ । ସେମାନେ ଆଗରୁ ପରସ୍ପରର ବହିର ଆଲୋଚନା କରି ନ ଥିବେ; ଏବଂ ବହିର ବିଷୟବସ୍ତୁ ଉପରେ ସମାଲୋଚକର ଦକ୍ଷତା ଥିବ ଇତ୍ୟାଦି ।

କୌଣସି ବହି ବା ଲେଖାର ସମୀକ୍ଷା କରୁଥିବା ସମାଲୋଚକର ଭୂମିକା ସଂପର୍କରେ ଜେପିଙ୍କ ମନ୍ତବ୍ୟ ଯଥାର୍ଥ ଓ ପ୍ରଣିଧାନଯୋଗ୍ୟ । ମୁଁ ଏଠାରେ ସ୍ପଷ୍ଟ କରିଦେବାକୁ ଚାହେଁ ଯେ, ମୋର ଭୂମିକା ଏଠି ସମାଲୋଚକ ବା ସମୀକ୍ଷକର ନୁହେଁ, ବରଂ ଜଣେ ସଂଯୋଜକର । ମୋ ପାଖରେ ପହଂଚିଥିବା ତାଙ୍କର ୧୫/୧୬ ଟି ରଚନା ମଧ୍ୟରୁ ତିନି / ଚାରିଟିକୁ ବାଦ ଦେଲେ ଅନ୍ୟଗୁଡ଼ିକ ସାହିତ୍ୟସମ୍ବଳିତ । 'ଓଡ଼ିଆ ଭାଷାର ଶାସ୍ତ୍ରୀୟ ସମ୍ମାନ ଓ ସଂସ୍କାର'ରୁ ଆରମ୍ଭ କରି 'ସାହିତ୍ୟିକର ସାମାଜିକ ସ୍ୱୀକୃତି ଓ ସମ୍ମାନ' ଏବଂ 'ଲେଖକର ବ୍ୟକ୍ତିଗତ ଜୀବନ' ଯାଏଁ ଏହାର ବ୍ୟାପ୍ତି ଓ ବିସ୍ତୃତି । ବିଷୟ ଚୟନରେ ବିବିଧତା, ପୁଣି ପ୍ରକାଶ ଭଙ୍ଗୀରେ ସରଳତା ସାଙ୍ଗକୁ ନିଜ ମତ ପ୍ରକାଶରେ ସ୍ୱଚ୍ଛତା ହେଉଛି ମୋ ବିଚାରରେ ଜେପିଙ୍କ ପ୍ରବନ୍ଧର ବିଶେଷତ୍ୱ । ପ୍ରତ୍ୟେକ ପ୍ରବନ୍ଧରେ ରହିଛି ବିଷୟବସ୍ତୁ ଉପଯୋଗୀ ଦେଶ ବିଦେଶର ବିଭିନ୍ନ ଲେଖା ଓ ଲେଖକଙ୍କ ସଂପର୍କରେ ଅଜଣା ତଥ୍ୟ ଓ ସୂଚନା । ମାତ୍ର କେବଳ ଲେଖକ ଦୃଷ୍ଟିରୁ ସେ ଏସବୁ ଲେଖିନାହାନ୍ତି । ନିଜର ଲେଖା ସହିତ ରହିଛି ଲେଖକୀୟ ସଂପୃକ୍ତି ଏବଂ ଅଙ୍ଗୀକାରବଦ୍ଧତା । ଫଳରେ ସେ ବେଶ୍ ଭାବିଚିନ୍ତି ଲେଖିବାର ବିଷୟ ସ୍ଥିର କରିଛନ୍ତି ଏବଂ ପୂର୍ଣ୍ଣ ପ୍ରସ୍ତୁତି ସହ ଲେଖାରେ ହାତ ଦେଇଛନ୍ତି । ଲେଖାରେ କିଛି ମୌଳିକ ପ୍ରଶ୍ନ ଉତ୍ଥାପନ କରିଛନ୍ତି ଏବଂ ନିଜେ ମଧ୍ୟ ନିଜର ଉତ୍ତର ଏହା ସହିତ ଖଞ୍ଜିଛନ୍ତି । ଫଳରେ ପାଠକ ସହିତ ସିଧାସଳଖ ସଂଯୋଗ ସ୍ଥାପନରେ ଜେପି ଲେଖକୀୟ ସଫଳତା ହାସଲ କରିଛନ୍ତି ।

"ସାହିତ୍ୟିକର ସାହିତ୍ୟ ସଂପର୍କିତ ଏକମାତ୍ର ଯୋଗାଯୋଗ ରହିବା ଉଚିତ ପାଠକ ସହିତ ।"

ଲେଖକ କିନ୍ତୁ ପାଠକୀୟ ସ୍ୱୀକୃତିରେ ସନ୍ତୁଷ୍ଟ ନ ରହି ସାମାଜିକ ସ୍ୱୀକୃତି, ସମ୍ମାନ, ପୁରସ୍କାର ପ୍ରତି ମୋହାବିଷ୍ଟ ହୋଇପଡ଼େ। ଫଳରେ ଲେଖକୀୟ ସ୍ୱାଭିମାନ ଓ ସ୍ୱାଧୀନତା ବାଧାପ୍ରାପ୍ତ ହୁଏ। ରାଜା ରାଜୁଡ଼ା ଯୁଗରୁ ଗଢ଼ି ଆସିଥିବା ରାଜକୀୟ ପୃଷ୍ଠପୋଷକତାରୁ ଏବର ସରକାରୀ, ତଥା ବେସରକାରୀ ଅନୁଷ୍ଠାନ ଦ୍ୱାରା ପ୍ରଦତ୍ତ ପୁରସ୍କାରର ଧାରା ସଂପର୍କରେ ବିସ୍ତୃତ ଆଲୋଚନା କରି ଜେପି ସ୍ପଷ୍ଟ ମତବ୍ୟକ୍ତ କରିଛନ୍ତି, "ଲେଖକକୁ ମନେ ରଖିବାକୁ ହେବ ଯେ, ଏସବୁ ଉପରଠାଉରିଆ ସରାଗ ତାକୁ ବଞ୍ଚାଇ ରଖିବେ ନାହିଁ। କିଛି ଲୋକ ଯଦି ତାକୁ ମନେ ରଖିବେ, ତାହା କେବଳ ତା'ର ଲେଖା ପାଇଁ। ଜଣେ ଲେଖକ ପାଇଁ ପ୍ରକୃତ ଆନନ୍ଦ ମିଳେ ତା' ଲେଖାରୁ।" (ସାହିତ୍ୟିକର ସାମାଜିକ ସ୍ୱୀକୃତି ଓ ସମ୍ମାନ) ଏହା ହେଉଛି ଆତ୍ମପ୍ରକାଶର ଆନନ୍ଦ। ଏ ଆନନ୍ଦର ଯଦି ତା'ର ପାଠକମାନେ ଅଂଶୀଦାର ହୋଇଯାଆନ୍ତି, ତେବେ ତାହା ହେଉଛି ତା'ର ଲେଖାର ସାର୍ଥକତା। ଲେଖକୀୟ ସୌଭାଗ୍ୟ। ଏ ସୌଭାଗ୍ୟ ପାଖରେ ଅନ୍ୟ ଯେ କୌଣସି ପୁରସ୍କାର ବା ପଦମର୍ଯ୍ୟାଦା ତୁଚ୍ଛ ବୋଲି ମଣିବାକୁ ହେବ। ସାଧାରଣତଃ ଲେଖକମାନଙ୍କର ଯେଉଁ ଅଭିଯୋଗ ଯେ ସମାଜ ସେମାନଙ୍କୁ ଯଥେଷ୍ଟ ସମ୍ମାନ ଦେଉ ନାହିଁ, ସେ ପ୍ରକାର ଅଭିଯୋଗକୁ ସଂପୂର୍ଣ୍ଣ ଭିତ୍ତିହୀନ ବୋଲି କହିଛନ୍ତି ଜଗନ୍ନାଥ ପ୍ରସାଦ। ତାଙ୍କ ମତରେ ସମାଜର ଅନ୍ୟ ବର୍ଗମାନଙ୍କୁ ଉପେକ୍ଷା କରି ଲେଖକ ଓ କଳାକାରମାନଙ୍କୁ ମାତ୍ରାଧିକ ସମ୍ମାନ ମିଳୁଛି। ଏ ମତକୁ ହୁଏତ ଅନ୍ୟ ଲେଖକମାନେ ଗ୍ରହଣ ନ କରିପାରନ୍ତି, ମାତ୍ର ନିଜର ସ୍ପଷ୍ଟ ମତ ପ୍ରକାଶରେ ତାଙ୍କ ମନରେ କୌଣସି ଦ୍ୱନ୍ଦ୍ୱ ଓ ଦ୍ୱିଧା ନାହିଁ।

ଜେପି ନିଜେ ଜଣେ ନାଟ୍ୟକାର ଓ ଅଭିନେତା। ତାଙ୍କର ଏକାଧିକ ନାଟକ ହିନ୍ଦୀ ଓ ଇଂରାଜୀ ଭାଷାରେ ଅନୂଦିତ ହୋଇ ମଞ୍ଚସ୍ଥ ହୋଇଛି ଦିଲ୍ଲୀର ବିଭିନ୍ନ ପ୍ରେକ୍ଷାଳୟରେ। ନାଟ୍ୟକଳା ସହିତ ସଂପୃକ୍ତି ଯୋଗୁଁ ସେ ଏ ସଂପର୍କରେ ମଧ୍ୟ 'ନାଟକ : ପାଠକ ଓ ଦର୍ଶକ' ଶୀର୍ଷକରେ ଏକ ତଥ୍ୟଭିତ୍ତିକ ପ୍ରବନ୍ଧ ରଚନା କରିଛନ୍ତି। ସାହିତ୍ୟର ଅନ୍ୟାନ୍ୟ ବିଭାଗରୁ ନାଟକ ସଂପୂର୍ଣ୍ଣ ଭିନ୍ନ; କାରଣ ନାଟକର ଗ୍ରାହକ ଦୁଇ ଶ୍ରେଣୀର - ଯେଉଁମାନେ ନାଟକ ପଢ଼ନ୍ତି ଏବଂ ଯେଉଁମାନେ ନାଟକ ଦେଖନ୍ତି। ନାଟକ ରଚନାର ସାର୍ଥକତା ରହିଛି ଏହା ମଞ୍ଚସ୍ଥ ହେବାରେ। ନାଟ୍ୟଶାସ୍ତ୍ରରେ ଭରତ ଏହି ମଞ୍ଚନର ଆବଶ୍ୟକତା ସପକ୍ଷରେ ମତ ଦେଇଥିଲା ବେଳେ ଆରିଷ୍ଟୋଟଲ ଏହାର ଠିକ୍ ବିପରୀତ ମତ ପୋଷଣ କରିଥିଲେ। ନାଟକକୁ ପାଠ କରି ମଧ୍ୟ ଉପଭୋଗ କରାଯାଉଥିବାରୁ ଏହାର ମଞ୍ଚକରଣ ଅନାବଶ୍ୟକ ବୋଲି ସେ କହୁଥିଲେ। ଜେପି ନିଜ ଅନୁଭୂତିରୁ କହନ୍ତି "ଦର୍ଶକ ଅପେକ୍ଷା ନାଟକର ପାଠକ, ସବୁବେଳେ ଅଧିକ। ଆମେ ସେକ୍ସପିୟରଙ୍କୁ ଜାଣିଲୁ ମଞ୍ଚ ଉପରେ ନୁହେଁ, କ୍ଲାସ ଘରେ। ମଞ୍ଚ ଉପରେ ଅଭିନୀତ ନାଟକରେ ନାଟ୍ୟକାରର ଭୂମିକା କିଛି ନ ଥାଏ- ସେଠି ସବୁ କିଛି ନିର୍ଭର କରେ ନିର୍ଦ୍ଦେଶକ ଉପରେ।

ନାଟକର ନିର୍ଦ୍ଦେଶନା, ଆଲୋକ ସଂପାତ, ମଞ୍ଚସଜ୍ଜା, ବେଶଭୂଷା, ଅଭିନୟ ଉପରେ। ଜଣେ ଅପରିପକ୍ୱ ନିର୍ଦ୍ଦେଶକ ଅଥବା ଜଣେ ଅକୁଶଳ ଅଭିନେତା ମଞ୍ଚ ଉପରେ ଗୋଟିଏ ଭଲ ନାଟକକୁ ନଷ୍ଟ କରିଦେଇପାରେ। ନାଟକକୁ ପଢ଼ିବା ବେଳେ ପାଠକ ନିଜେ ନିର୍ଦ୍ଦେଶକ ହୋଇ ତା'ର ମନ ଭିତରେ ନାଟକଟିକୁ ଆକାର ଦିଏ।" ସୁତରାଂ ନାଟକକୁ ନେଇ ପାଠକ ଓ ଦର୍ଶକର ସମ୍ବନ୍ଧ ଉପରେ ସେ ନିଜର ବାସ୍ତବଧର୍ମୀ ବିଚାର ଓ ବିଶ୍ଳେଷଣ ରଖିଛନ୍ତି, ଯାହା ଉଭୟ ନାଟ୍ୟସାହିତ୍ୟର ଛାତ୍ର ଏବଂ ନାଟ୍ୟପ୍ରେମୀଙ୍କ ପାଇଁ ଏକ ଉପାଦେୟ ପ୍ରବନ୍ଧ ରୂପେ ବିବେଚିତ ହେବ।

ନାଟକ ଭଳି 'କବିତା ପାଠ' ସଂପର୍କରେ ମଧ୍ୟ ଜେପିଙ୍କର ରହିଛି ନିଜସ୍ୱ ବିଚାର। ଏ ବିଚାର ଆରମ୍ଭ ହୋଇଛି ଗୋଟିଏ ପ୍ରଶ୍ନରୁ - 'କବିତା ପଢ଼ିବ ନା ଶୁଣିବ ?' କୌଣସି ଜଣେ କବିଙ୍କର ନାମୋଲ୍ଲେଖ ନ କରି ଜେପି ତାଙ୍କର ମତକୁ ଉଦ୍ଧାର କରିଛନ୍ତି, "ପଠନ ଓ ଶ୍ରବଣ ଦ୍ୱାରା କବିତା ଗ୍ରହଣ ସମ୍ଭବ ନୁହେଁ, ସମ୍ଭବ କେବଳ ମନନ ଓ ଧ୍ୟାନ ଦ୍ୱାରା"। ସେ ନିଜେ କିଂତୁ କବିତାପାଠରେ ଭଲ ଦିଗଟି ଦର୍ଶାଇ ଲେଖିଛନ୍ତି- "କବିତା ପାଠ ସମୟରେ କବି ଓ ଶ୍ରୋତା ଗୋଟିଏ ଅଦୃଶ୍ୟ ବନ୍ଧନରେ ବାନ୍ଧି ହୋଇଯା'ନ୍ତି। ଗୋଟିଏ ଜାଗାରେ, ଅନେକ ଲୋକଙ୍କ ସାଙ୍ଗରେ ଏକାଠି ଜଣେ ଜିଅନ୍ତା କବିକୁ ନିଜର କବିତା ବଡ଼ ପାଟିରେ ପଢୁଥିବାର ଶୁଣିଲେ, ଏକା ବସି ଛପା ଅକ୍ଷରକୁ କେବଳ ଆଖି ଦେଇ ପଢ଼ିବାର ନିର୍ଜନତାରୁ ମୁକ୍ତି ମିଳେ। କବିତା ପାଠରେ କବି ଓ ଶ୍ରୋତା ଶାରୀରିକ ଭାବରେ ସାମନାସାମନି ହୁଅନ୍ତି, ଯାହା ପୃଷ୍ଠା ଉପରର ନିଃଶବ୍ଦ ବିନିମୟରେ ନ ଥାଏ।" ଏହିଭଳି କବିତା ପାଠର ଆବଶ୍ୟକତା ସପକ୍ଷରେ ଓ ବିପକ୍ଷରେ ଥିବା ମତ ସହ ଆମ ସାହିତ୍ୟସଭାମାନଙ୍କରେ ଆୟୋଜିତ କବିତାପାଠୋତ୍ସବର ଦୁଃସ୍ଥିତି ସଂପର୍କରେ ମଧ୍ୟ ସେ ବାସ୍ତବ ଚିତ୍ର ଉପସ୍ଥାପନ କରିଛନ୍ତି। ତେବେ ଏହି ପାଠୋତ୍ସବକୁ କିପରି ଉପଭୋଗ୍ୟ କରିହେବ, ସେ ସଂପର୍କରେ ଜେପି ନିଜର ସୁଚିନ୍ତିତ ପ୍ରସ୍ତାବ ଓ ପରାମର୍ଶ ମଧ୍ୟ ରଖିଛନ୍ତି କବିତାପାଠୋତ୍ସବର ଆୟୋଜକ ଏବଂ କବିତା ପାଠ କରୁଥିବା କବିମାନଙ୍କ ପାଇଁ। ନିଜର ଅନୁଭବ ଓ ଅନୁଭୂତିର ଆଧାରରେ ସେ ନିଜର ପ୍ରବନ୍ଧରେ ଏକ ସପ୍ତସୂତ୍ରୀ ଫର୍ମୁଲା ମଧ୍ୟ ବାଢ଼ିଛନ୍ତି ଯେ କବିତାପାଠୋତ୍ସବ କିଭଳି ହେବା ଉଚିତ ଏବଂ ସେଥିରେ କି ପ୍ରକାରର କବିତା କେଉଁଭଳି ପଢ଼ା ହେବ।

ହଁ, ଏଇଠି କହିରଖେ ଯେ କବିତାପାଠକୁ ଅତି ସାଧାରଣ ତଥା ଗୁରୁତ୍ୱହୀନ ପ୍ରସଂଗ ରୂପେ ବିବେଚନା କରା ନ ଯାଉ। ସ୍କଟଲାଣ୍ଡରେ ଗୋଟିଏ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱବିତ୍‌ମାନେ କବିତା ଲେଖୁଥିବା ଓ ପଢୁଥିବା ବ୍ୟକ୍ତିଙ୍କ ସକାଶେ ଏକ ସୁସଂବାଦ ପ୍ରକାଶ କରିଛନ୍ତି। ସେମାନଙ୍କ ଅଧ୍ୟୟନ ଓ ଗବେଷଣାର ନିଷ୍କର୍ଷ ହେଲା , କବିତାର ଲିଖନ, ପଠନ, ମାନସିକ ସ୍ତରରେ

ସକାରାତ୍ମକ ପ୍ରଭାବ ପକାଇଥାଏ । କବିତାର ପ୍ରତ୍ୟେକ ଶବ୍ଦ ଗଦ୍ୟ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ଓ ଏହା ଅନେକ ଅର୍ଥ ପ୍ରକାଶ କରିଥାଏ । ସେମାନେ ବ୍ରେନ୍ ଇମେଜିଂ ଟେକ୍ନୋଲୋଜି ବ୍ୟବହାର କରି ଅଧ୍ୟୟନ କରିଥିଲେ ଏବଂ ପ୍ରାଥମିକ ଅନୁଧ୍ୟାନରୁ ଜାଣିପାରିଥିଲେ ଯେ କବିତା ଲେଖିବା, ପଢ଼ିବା ଓ ଶୁଣିବା ଦ୍ୱାରା ମସ୍ତିଷ୍କର ସେରିବ୍ରାଲ କାର୍ଯ୍ୟ ଅଧିକ କ୍ରିୟାଶୀଳ ହୋଇଥାଏ । ଅନେକ କ୍ଷେତ୍ରରେ କବିତା ବୁଝିବାକୁ କଷ୍ଟକର ହୋଇଥିଲେ ମଧ୍ୟ ଗଦ୍ୟ ଅପେକ୍ଷା ଏହା ଲୋକମାନଙ୍କ ପାଇଁ ଅଧିକ ଗ୍ରହଣୀୟ ଥିଲା ବୋଲି ମନସ୍ତତ୍ତ୍ୱର ଗବେଷକମାନେ ମତ ଦେଇଛନ୍ତି । ଏହି ଦୃଷ୍ଟିରୁ ଜେପିଙ୍କ 'କବିତା ପାଠ' ପ୍ରବନ୍ଧର ଉପାଦେୟତା ରହିଛି ଉଭୟ କବି ତଥା କବିତାପ୍ରେମୀ ପାଠକମାନଙ୍କ ପାଇଁ ।

ଆମ ଭାଷାର କୋଣାର୍କ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ସହିତ ଜେପିଙ୍କର ଲେଖକୀୟ ସଂପୃକ୍ତି ସଂପର୍କରେ ଏକ ଉଲ୍ଲେଖନୀୟ ପ୍ରବଂଧ ରହିଛି । ପୁରୀର ଚିତ୍ରକଳା ବିଷୟରେ ଗବେଷଣା କଲା ବେଳେ, 'ଦେଶ କାଳ ପାତ୍ର' ବହି ଲେଖିଲା ବେଳେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଏହି ଭାଷାକୋଷ କିପରି ତାଙ୍କ ପାଇଁ ବିଶେଷ ସହାୟକ ହୋଇଛି, ତା'ର ସୂଚନା ଦେବା ସଂଗେ ସଂଗେ, ଏଥିରେ କେତେକ କୌତୂହଳଜନକ ଘଟଣାର ମଧ୍ୟ ସେ ଅବତାରଣା କରିଛନ୍ତି । ଜେପିଙ୍କ ପାଇଁ ବିଶେଷ ଆନନ୍ଦର ମୁହୂର୍ତ୍ତ ଥିଲା, ଯେତେବେଳେ ସେ କାଲିଫର୍ଣ୍ଣିଆ ବର୍କଲେ ବିଶ୍ୱବିଦ୍ୟାଳୟର ପ୍ରଫେସର ଜୋଆନ୍ନା ଉଇଲିଆମସ୍‌ଙ୍କ ଘର ଲାଇବ୍ରେରୀ ଥାକରେ ଆବିଷ୍କାର କରିଥିଲେ ଏହି ଭାଷାକୋଷର ବୃହଦାକାର ଗ୍ରନ୍ଥମାନଙ୍କୁ । ଜେପିଙ୍କ ପାଇଁ ଆହୁରି ଏକ ଆନନ୍ଦଦାୟକ ଆବିଷ୍କାର ଥିଲା ଯେ ତାଙ୍କର ବାପା ସ୍ୱନାମଧନ୍ୟ ଅଧ୍ୟାପକ ଶ୍ରୀଧର ଦାସ ପୂର୍ଣ୍ଣଚନ୍ଦ୍ର ଭାଷାକୋଷକୁ ତନ୍ନ ତନ୍ନ କରି ପଢ଼ିଥିଲେ ଏବଂ ବିଭିନ୍ନ ଶବ୍ଦ ପାଖରେ ନିଜର ଟିପ୍‌ପଣୀ ଲେଖିଥିଲେ । ଗୋପାଳ ପ୍ରହରାଜଙ୍କ ବ୍ୟକ୍ତିତ୍ୱ ତଥା କାର୍ଯ୍ୟଶୈଳୀର ଏକ ବିଶେଷତା ହେଲା ଯେ, ସେ ଯେଉଁମାନଙ୍କଠାରୁ କିଛି ନା କିଛି ସାହାଯ୍ୟ ପାଇଥିଲେ, ସେ ସମସ୍ତଙ୍କର ବିବରଣୀ ରହୁଥିଲା ଭାଷାକୋଷରେ । ଏଭଳି କୃତଜ୍ଞତା ପ୍ରକାଶର ନମୁନା, ଆମର ଏବର ଲେଖକ-ସାହିତ୍ୟିକମାନଙ୍କ ପାଖରେ ଖୋଜିଲେ ମିଳିବ କି ?

ସାଧାରଣ ଲୋକେ ସାହିତ୍ୟରୁ କିଛି ଭଲକଥା, ନୀତିକଥା, ସଦୁପଦେଶ ଆଶା କରିଥା'ନ୍ତି । ଓଡ଼ିଆ ଭାଗବତରେ ଏଭଳି ଉପଦେଶମାନ ଭରପୂର ରହିଛି । 'ପଞ୍ଚତନ୍ତ୍ର' ବା 'ହିତୋପଦେଶ'ର ପଶୁପକ୍ଷୀଙ୍କ ଗଳ୍ପ ମାଧ୍ୟମରେ ଏହିଭଳି ନୀତିଶିକ୍ଷା ହିଁ ଦିଆଯାଉଥିଲା । ମାତ୍ର ବର୍ତ୍ତମାନର ସାହିତ୍ୟରେ ଏଭଳି ନୀତିଶିକ୍ଷା ଆମେ ଆଶା କରିବା କି ? 'ସାହିତ୍ୟରେ ସୁଭାଷିତ' ଶୀର୍ଷକ ପ୍ରବଂଧରେ ଜେପି ଏହିଭଳି ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଂଗ ଉତ୍‌ଥାପନ କରିଛନ୍ତି ଏବଂ ନିଜ

ବିଗ୍ରର ବ୍ୟକ୍ତ କରି କହିଛନ୍ତି - "ପାଠକକୁ ନୀତିଶିକ୍ଷା ଦେବା ସାହିତ୍ୟର କାମ ନୁହେଁ । ତା'ର ମନକୁ ଖୋଲିଦେବା ସାହିତ୍ୟର କାମ । ସାହିତ୍ୟ ଯଦି ନୀତିକଥା ପ୍ରଚ୍ଚର ବା ପ୍ରସାର କରେ, ତା'ର ସୃଜନଶୀଳ ଦିଗ ଦୁର୍ବଳ ହୋଇଯିବ । କେବଳ ଶିକ୍ଷାତ୍ମକ, ଉପଦେଶାତ୍ମକ ବା ନୀତିଗର୍ଭକ ସାହିତ୍ୟ ଆଉ ସାହିତ୍ୟ ନ ହୋଇ ହୋଇଯିବ ପ୍ରବଚନ ।" ମାତ୍ର ଆମର ପ୍ରାଚୀନ କାବ୍ୟ କବିତାରୁ ଆରମ୍ଭ କରି ଆଜିର ସାହିତ୍ୟ ପର୍ଯ୍ୟନ୍ତ ଅନେକଙ୍କ ରଚନାରେ ଜୀବନ ଓ ଜଗତ ସଂପର୍କୀୟ ଭାବୋଦ୍ଦୀପକ କିଛି ଉଦ୍ଧୃତିଯୋଗ୍ୟ ପଂକ୍ତି ରହିଛି । ଉଭୟ ପାଠକ ଓ ଲେଖକ ନିଜ ନିଜର ବକ୍ତବ୍ୟ ତଥା ରଚନାରେ ତା'ର ବ୍ୟବହାର କରିଥାଆନ୍ତି । ଦ୍ୱାଦଶ ଶତାବ୍ଦୀରେ ବିଦ୍ୟାଧର ଏଭଳି ପଦମାନଙ୍କର ଏକ ସଂକଳନ ('ସୁଭାଷିତ ରତ୍ନକୋଷ') କରିଥିଲେ ବୋଲି ଜେପି ତାଙ୍କ ପ୍ରବଂଧରେ ଉଲ୍ଲେଖ କରିଛନ୍ତି । ମାତ୍ର ଉଲ୍ଲେଖ କରିବାକୁ ବୋଧେ ଭୁଲିଯାଇଛନ୍ତି ଯେ, ଏ କାଳରେ ଆମର କବି ତଥା ସାହିତ୍ୟ ସମାଲୋଚକ ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ସଂଗ୍ରହ ଓ ସଂପାଦନାରେ ମଧ୍ୟ 'ସୁଭାଷିତ ପଦାବଳୀ' ପୁସ୍ତକ ପ୍ରକାଶ ପାଇଥିଲା । ( ପ୍ରକାଶକ ଜେ.ମହାପାତ୍ର ଏଣ୍ଡ କୋ.,କଟକ- ୧୯୬୮) ଏଥିରେ ଥିବା ଉଦ୍ଧୃତିସମୂହ ବିଭିନ୍ନ ବିଷୟାନୁଯାୟୀ ବର୍ଣ୍ଣମାଳାନୁକ୍ରମରେ ସଜ୍ଜିତ ହୋଇଛି ।

ଜେପିଙ୍କର ଏକ ମଜାଳିଆ ଲେଖା ହେଉଛି-'ଶବ୍ଦ ସହିତ ଖେଳ କସରତ' । ପାଠକ ଏହାକୁ ବେଶ୍ ଉପଭୋଗ କରିବେ ଏବଂ ଜାଣିପାରିବେ ଶବ୍ଦ ସହିତ ଆମର କବି, ଲେଖକମାନେ, କିପରି ନିଜର ବିଦ୍ୟାବୁଦ୍ଧି ଖଟେଇ ଖେଳିପାରିଛନ୍ତି । ଶବ୍ଦକୁ ସାଧାରଣତଃ 'ବ୍ରହ୍ମ' ଓ ଈଶ୍ୱରଙ୍କ ସହିତ ତୁଳନା କରାଯାଇଛି । କୁହାଯାଏ ଶବ୍ଦବ୍ରହ୍ମ । ମାତ୍ର ଲେଖକମାନେ ଆମର ସୃଷ୍ଟିଛଡ଼ା । ଦୁଃସାହସୀ । ସେମାନେ ତେଣୁ ମନଇଚ୍ଛା ଶବ୍ଦକୁ ନେଇ ରଂଗରସରେ ମାତି ଥାଆନ୍ତି । ଇଂରାଜୀ, ସଂସ୍କୃତ ତଥା ଓଡ଼ିଆ ଭାଷା ସାହିତ୍ୟରେ ଏଭଳି ଶବ୍ଦକ୍ରୀଡ଼ାର ଅନେକ ଦୃଷ୍ଟାନ୍ତ ଦେଇଛନ୍ତି ଜେପି ନିଜ ପ୍ରବନ୍ଧରେ । ଶବ୍ଦ ସହିତ ଖେଳିବାରେ ଆମ ଓଡ଼ିଆ ସାହିତ୍ୟରେ ପକ୍କା ଖେଳୁଆଡ୍ ହେଲେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ । ଅନ୍ୟ କୌଣସି ସାହିତ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ସମକକ୍ଷ ପାଇବା କଷ୍ଟ-ଯିଏ ପ୍ରୀତିପୂର୍ଣ୍ଣ ହୃଦୟରେ ଶବ୍ଦ ସହ ରତିକ୍ରୀଡ଼ାରେ ମାତିଥିଲେ । ଅବଶ୍ୟ ଅନେକ ସମୟରେ ସେ ଶବ୍ଦମାନଙ୍କୁ ଯେଉଁଭଳି ଟଣା ଓଟରା କରିଛନ୍ତି, ଜେପି ତାକୁ କସରତ ବୋଲି କହିଛନ୍ତି । ଉଦାହରଣ ସ୍ୱରୂପ - ନିଆଁ ଭଳି ବୋହି ପବନ ଦେହକୁ ଜାଳି ଦେଉଛି, ଏକଥା କହିବାକୁ ଯାଇ ସେ ଲେଖିଛନ୍ତି: ତ୍ୟଜି ଅନିଳ ଇ କାର ବହିବାରୁ ଦହୁଅଛି କଳେବର, ଅର୍ଥାତ୍ ଅନିଳରୁ ଇ କାର ବାହାର କରିନେଲେ ଯେଉଁ ଅନଳ ରହିଯିବ, ତାହା ଦେହକୁ ଦହୁଛି । ଆମର କବିସମ୍ରାଟ ଶବ୍ଦ କ୍ରୀଡ଼ା କୌଶଳରେ ଅଦ୍ୱିତୀୟ ବୀରବର ବୋଲି ଅଭିହିତ କରିଛନ୍ତି ଜେପି । ମାତ୍ର ଆମ ଭିତରୁ ଅନେକ ହୁଏତ ଜାଣି ନ ଥିବେ, ଜେପି ଯାହା ତାଙ୍କର ବହୁପାଠିତା ତଥା

ଅଦ୍‌ଭୁତ ସ୍ମରଣଶକ୍ତିରେ ଜଣେଇ ଦେଇଛନ୍ତି । ଏ ପ୍ରକାର ଶବ୍ଦ କ୍ରୀଡ଼ା ପ୍ରତିଦ୍ୱନ୍ଦ୍ୱିତାରେ ଆମର ଗଦ୍ୟଲେଖକମାନେ ମଧ୍ୟ ସାମିଲ୍ ହୋଇଛନ୍ତି । ଅନେକ ବର୍ଷ ତଳେ ଶଶିଭୂଷଣ ରାୟ ଏକ ଭ୍ରମଣ ପ୍ରବନ୍ଧ ଲେଖିଥିଲେ ଯାହାର ପ୍ରତ୍ୟେକ ଶବ୍ଦର ପ୍ରଥମ ଅକ୍ଷର ଥିଲା 'ପ' । 'ସହକାର' ପତ୍ରିକାରେ ପ୍ରକାଶିତ ଏ ପ୍ରବନ୍ଧଟି ପଢ଼ି ଜଣେ ପାଠକ ସଂପାଦକଙ୍କୁ ପତ୍ର ଲେଖିଥିଲେ ଯେ, ଲେଖକ ନିଜର ନାଁ ପରିବର୍ତ୍ତେ 'ପାର୍ବତୀ ପ୍ରଣେତା ପୁତ୍ର' (ଅର୍ଥାତ୍ 'ପାର୍ବତୀ' କାବ୍ୟ ଲେଖକ ରାଧାନାଥ ରାୟଙ୍କ ପୁଅ) ଲେଖିଥିଲେ ଉତ୍ତମ ହୋଇଥା'ନ୍ତା । ଏହି ପ୍ରସଂଗରେ ଆସନ୍ତୁ ଦୃଷ୍ଟି ପକେଇବା ସ୍ୱୟଂ ଜେପିଙ୍କ ସୃଷ୍ଟି - 'ପ୍ରେମର ପ ବର୍ଗ' କବିତା ଉପରେ । (ଆଳୁକୁଚି ମାଳୁକୁଚି, ଲାର୍କ ବୁକ୍ସ-୧୯୯୩)

ପଡ଼ୋଶୀ ପରିକ୍ରମା ପ୍ରତୀକ୍ଷା / ପରିଚୟ ପ୍ରେମପତ୍ର ପରୀକ୍ଷା
ଫୁଲାଫାଙ୍କିଆ ଫଟା କପାଳ / ଫଟୋ ଫାଣ୍ଡି ଫଲିତଲ
ବାଇସ୍କୋପ ବାତାୟନ ବାହାନା / ବାପା ବିପଦ ବିଚରା ବଞ୍ଚନା
ଭଗାରିହସା ଭଗ୍ନ ମନୋରଥ/ ଭର୍ତ୍ସନା ଭାଳେଣି ଭୟାର୍ତ୍ତ
ମୂର୍ଚ୍ଛା ମୃଗୀ ମୋହ ମୌନ / ମାନ୍ଦା ମନଦୁଃଖ ମଦ୍ୟପାନ

ଶବ୍ଦ ସହିତ ଖେଳ କଉତୁକ ସାରି ଜେପି ନୀରବତା ଓ ଅଳ୍ପକଥାର କଥା ବି କହିଛନ୍ତି । ଏ ସଂପର୍କରେ ଆମ ସାହିତ୍ୟ, ଇତିହାସ ଓ ରାଜନୀତି ଏବଂ ବ୍ୟକ୍ତିବିଶେଷଙ୍କ ଜୀବନରୁ ବହୁ ମଜାଦାର ଉଦାହରଣ ବି ରଖିଛନ୍ତି । କୁହାଯାଇଛି-ନୀରବତା ହିଁ ସ୍ୱର୍ଣ୍ଣିମ । ମୁହଁରେ ଶବ୍ଦଟିଏ ବି ଉଚ୍ଚାରଣ ନ କରି ଭାବଭଂଗୀରେ, ଠାରରେ, ଏପରିକି ଆଖିରେ ଆଖିରେ ଏବଂ ଇଙ୍ଗିତରେ ମଧ୍ୟ ବହୁ କଥା କୁହାଯାଇପାରେ । ଭଲପାଇବାର ଶ୍ରେଷ୍ଠ ଭାଷା ହିଁ ନୀରବତା । ଜେପିଙ୍କ ଆଲୋଚନାରୁ ଉଦାହରଣଟିଏ-ଜନ୍ ଡନ୍‌ଙ୍କ କବିତାରେ ପ୍ରେମିକାକୁ ପ୍ରେମିକ କହୁଛି (ରବୀନ୍ଦ୍ରନାଥଙ୍କ ସୁନ୍ଦର ଅନୁବାଦରେ) "ଦୋହାଇ ତୋଦେର ଏକଟୁକୁ ଚୁପ୍ କର, ଭାଲୋବାସିବାରେ ଦେ ଆମାର ଅବସର ।" ସେହିଭଳି ନୀରବତାରୁ ଅଳ୍ପ କଥାକୁ ଆସିଲେ, ଆମେ ଦେଖିବା, ଅଳ୍ପ କଥାରେ ଅନେକ କଥା ନିହିତ ରହିଛି । ଅନେକ ଗୁରୁତ୍ୱପୂର୍ଣ୍ଣ ବାର୍ତ୍ତା ଅଳ୍ପ କେତୋଟି ଶବ୍ଦ ବିନିମୟରେ ମିଳିଯାଉଛି । ବ୍ୟବସାୟିକ ବିଜ୍ଞାପନରେ ଏହାର ବ୍ୟବହାର ପ୍ରବଳ; ଯଥା: କୋକାକୋଲାର 'ଦ ରିଅଲ ଥ୍ରୀଲ୍' । ସେହିଭଳି ରାଜନୀତିରେ ଗାନ୍ଧିଜୀଙ୍କ ସ୍ଲୋଗାନ୍ 'କ୍ୱିଟ୍ ଇଣ୍ଡିଆ' କିମ୍ବା ଇନ୍ଦିରାଙ୍କର 'ଗରିବୀ ହଟାଓ' - ବାରାକ୍ ଓବାମାଙ୍କର 'ୟେସ୍ ୱି କ୍ୟାନ୍', ନେତାଜୀ ସୁଭାଷଙ୍କର 'ଦିଲ୍ଲୀ ଚଲୋ' ଇତ୍ୟାଦି । ସାହିତ୍ୟରେ ଯେହେତୁ ଶବ୍ଦ ସହିତ ସଂପର୍କ, ନୀରବତା ନୁହେଁ, ଅଳ୍ପ ଶବ୍ଦର ବ୍ୟବହାର କଥା କୁହାଯାଇପାରିବ ଏବଂ ଜେପି ତାଙ୍କ ଆଲୋଚନାରେ କ୍ଷୁଦ୍ରତମ ଗଳ୍ପ ଓ କବିତାର

ଅନେକ ମଜାଦାର ଉଦାହରଣ ରଖିଛନ୍ତି। କ୍ଷୁଦ୍ରତମ ଭୂତଗଳ୍ପ ହେଲା: ରାତି ଅଧରେ କବର ଖାନାରେ ବସିଥିବା ଜଣେ ସାଙ୍ଗ କହିଲା, ମୁଁ ଭୂତରେ ବିଶ୍ୱାସ କରେନା; ଅନ୍ୟ ସାଙ୍ଗଟି କହିଲା, ମୁଁ କିନ୍ତୁ କରେ ଏବଂ ନିଜେ ଉଭେଇଗଲା। କ୍ଷୁଦ୍ରତମ ଭୟ ଉଦ୍ରେକକାରୀ ଗଳ୍ପ: ପରମାଣୁ ଯୁଦ୍ଧରେ ସମଗ୍ର ପୃଥିବୀ ବିଧ୍ୱସ୍ତ ହୋଇଯିବା ପରେ ଦୈବକ୍ରମେ ଏକମାତ୍ର ଜୀବିତ ଲୋକଟି ବନ୍ଦ ଘରେ ଏକୁଟିଆ କୋଠରି ଭିତରେ ବସିଥିଲା; ହଠାତ୍ କବାଟରେ କରାଘାତ ହେଲା। କବିତାରେ ସେହିଭଳି 'ଜାପାନୀ ହାଇକୁ'ର ବିଶେଷ ଗୁଣ ହେଲା ତା'ର ସଂକ୍ଷିପ୍ତତା। ଇଂରେଜୀ କବିତାରେ କେତୋଟି ବିଭାଗ ରହିଛି, ଯାହାର ଧାଡ଼ି ସଂଖ୍ୟା ସ୍ଥିର କରାଯାଇଛି। ଯଥା ଲିମେରିକ (ପାଞ୍ଚ ଧାଡ଼ି) ଓ ସନେଟ୍ (ଚଉଦ ଧାଡ଼ି)। ଜେପି ତାଙ୍କ ଆଲୋଚନାରେ ଆଉ ଏକ ପ୍ରକାର କବିତା ସଂପର୍କରେ ସୂଚନା ଦେଇଛନ୍ତି - ଯାହା 'କ୍ଲରିହିଉ' ଭାବରେ ପରିଚିତ। ଏହା ହେଉଛି ଏଡମଣ୍ଡ କ୍ଲରିହିଉ ବେଣ୍ଟଲ (୧୮୭୪-୧୯୫୬) ଆରମ୍ଭ କରିଥିବା ଚାରିଧାଡ଼ିର ମଜା କବିତା, ଯାହାର ବିଷୟବସ୍ତୁ କୌଣସି ପ୍ରସିଦ୍ଧ ବ୍ୟକ୍ତିବିଶେଷ। ଓଡ଼ିଆରେ ସେ ଏହାର ଉଦାହରଣ ରଖିଛନ୍ତି- ନନ୍ଦକିଶୋର ବଳ / ନ ପାଇଲେ ଥଳକୂଳ / ଭୁଲିଗଲେ କାଉ କଥା / ଲେଖିଲେ କନକଲତା।

ଏମିତି କେତେ କଥା। ନୀରବତାରେ ପ୍ରଗଲ୍‌ଭତା। ସାହିତ୍ୟରୁ ପରିବେଶର ସଭା - ସଂଭାଷଣ - ପୁଣି ଜେପି ଫେରିଆସନ୍ତି- ପରିବାରରେ ଥିବା ବାପା, ମା' ଓ ପିଲାମାନଙ୍କ ପାଖକୁ। ବରିଷ୍ଠ ଓ କନିଷ୍ଠମାନଙ୍କର ସଂପର୍କ ପାଖକୁ। ବୟସ୍କମାନେ ପିଲାମାନଙ୍କୁ ନିଜ ଶାସନ - ଅନୁଶାସନ ଭିତରେ ରଖିବାକୁ ଚାହାନ୍ତି। "ଏଭଳି ଅନୁଶାସନର ମୂଳମନ୍ତ୍ର ହେଲା, ସେମାନେ ଯାହା କହିବେ ବେଦର ଗାର; ସ୍ୱର୍ଗକୁ ନିଶୁଣି ନ ଥିବା ଭଳି ବଡ଼ ବା ବୟସ୍କ ଲୋକଙ୍କୁ ଉତ୍ତର ନାହିଁ।" (ପ୍ରବଂଧ:- ବାପା ଯାହା କହିବେ ତାହା କରିବା ?!) ବୟସ୍କମାନଙ୍କର ଏହି ଦୌରାତ୍ମ୍ୟକୁ ଆଡଲଟିଜମ୍ ବା ବୟସ୍କବାଦର ଆଖ୍ୟା ଦିଆଯାଇଛି। ପିଲାମାନଙ୍କର ମତକୁ କୌଣସି ମୂଲ୍ୟ ନ ଦେବା ହେଉଛି ଏହାର ଲକ୍ଷଣ। ବୟୋଜ୍ୟେଷ୍ଠ ଜେପି କିନ୍ତୁ ଏଭଳି ବୟସ୍କବାଦକୁ ଗ୍ରହଣ କରିନାହାନ୍ତି। ଗୋଟିଏ ପରିବାରରେ ବାପା, ମା'ଓ ସେମାନଙ୍କ ପୁଅଝିଅମାନେ ପରସ୍ପର ପ୍ରତି ଭଲପାଇବାର ଉନ୍ମୁକ୍ତ ଭାବବନ୍ଧନରେ ପରସ୍ପରର ସହଯୋଗୀ ବଂଧୁ ଭାବରେ ଚଳିବାର ଆବଶ୍ୟକତା ରହିଛି। ତା' ନ ହେଲେ ବୟସ୍କ ବାପାମାନେ ଆହୁରି ବୟସ୍କ ହୋଇ ଜରାଗ୍ରସ୍ତ ଅବସ୍ଥାକୁ ଆସିଗଲେ, ସେମାନେ ନିଜ ପିଲାମାନଙ୍କ ଅବହେଳା ଓ ଅବଜ୍ଞାର ଶିକାର ପାଲଟିଯାଆନ୍ତି। ବରିଷ୍ଠମାନଙ୍କର ଅବହେଳା ଏବେ ଏକ ଆନ୍ତର୍ଜାତିକ ସମସ୍ୟା ଭାବରେ ସ୍ୱୀକୃତ ହେଉଛି। ପାରିବାରିକ ଜୀବନର ଏହିଭଳି ଏକ ବାସ୍ତବ ସମସ୍ୟା ସଂପର୍କରେ ଆଲୋଚନା କରି ଜେପି ସମାଧାନର ମାର୍ଗ ବି ଦେଖେଇଛନ୍ତି।

ପରିବାରରେ ହେଉ ବା ସମାଜ ଓ ସାହିତ୍ୟ କ୍ଷେତ୍ରରେ, ଜଗନ୍ନାଥ ପ୍ରସାଦ ସବୁବେଳେ କନିଷ୍ଠ, ତଥା ତରୁଣ ଓ ନୂତନ ପିଢ଼ି ଉପରେ ଆସ୍ଥା ସ୍ଥାପନ କରିଛନ୍ତି । ସେହିମାନଙ୍କ ସପକ୍ଷରେ ହିଁ ନିଜର ସ୍ୱର ଉଠେଇଛନ୍ତି । "ବର୍ତ୍ତମାନ ଭାରତର ଜନସଂଖ୍ୟାର ସତୁରି ପ୍ରତିଶତରୁ ବେଶି ଲୋକଙ୍କର ବୟସ ୩୫ ବର୍ଷରୁ କମ୍ । ସେଇମାନଙ୍କର ପ୍ରତିନିଧି ଆଗକୁ ଆସନ୍ତୁ । କ୍ରିକେଟ ଭଳି ସାହିତ୍ୟରେ ମଧ ପୁରୁଣା ଖେଳାଳି ଯାଇ ନୂଆ ଖେଳାଳି ଆସନ୍ତୁ । ପତ୍ରପତ୍ରିକାରେ ସେମାନଙ୍କୁ ସତୁରି ପ୍ରତିଶତରୁ ଅଧିକ ସ୍ଥାନ ଦିଆଯାଉ । ଯୁବ ଲେଖକମାନେ ହିଁ ସାହିତ୍ୟକୁ ନୂଆ ଭାବ, ଭାଷା, ଚିନ୍ତାଧାରା, ବିଚାର ବିବେଚନା ଓ ନୂଆ ଆଙ୍ଗିକ ଦେଇପାରିବେ ।"(ବିଷୁବ ମିଳନ, ପ୍ରଜାତନ୍ତ୍ର ପ୍ରଚାର ସମିତିରେ ପ୍ରଦତ୍ତ ଭାଷଣ) ଅତ୍ୟନ୍ତ ଆନନ୍ଦର କଥା, ତରୁଣମାନଙ୍କ ସପକ୍ଷରେ ଏ ସ୍ୱର ଓ ସଂଳାପ ହେଉଛି ଜଣେ ପ୍ରବୀଣ ପ୍ରତିଷ୍ଠିତ ସାହିତ୍ୟିକଙ୍କର ।

ଜଗନ୍ନାଥ ପ୍ରସାଦ ଦାସଙ୍କ ନିବନ୍ଧଗୁଡ଼ିକ ପଢ଼ିଲେ ମନେହେବ, ଏହା ଯେପରି ପାଠକଙ୍କ ସହ ମୁହାଁମୁହିଁ କଥାବାର୍ତ୍ତା । ଏକ ପ୍ରକାର ଅନ୍ତରଂଗ ଆଳାପନ । ତେଣୁ ପ୍ରବନ୍ଧର ଭାଷା ଓ ଭାବ ଭଳି ଏହା ଆଦୌ କୃତ୍ରିମ ବା ଜଟିଳ ନୁହେଁ । ବରଂ ଜଟିଳ ତଥା ଗୁରୁଗମ୍ଭୀର ବିଷୟବସ୍ତୁର ସରଳ ଉପସ୍ଥାପନା ଯୋଗୁଁ ଏହା ସାଧାରଣ ପାଠକ ପାଇଁ ବେଶ୍ ଉପଭୋଗ୍ୟ । ମାତ୍ର ସାଧାରଣ ଉପଭୋଗ ସହିତ ଏହା ପାଠକକୁ ଚିନ୍ତାକରିବା ଲାଗି ମଧ ବେଶ୍ କିଛି ଖୋରାକ ଯୋଗାଇ ଦେଇଥାଏ । ସୁଯୋଗ ମଧ ଦେଇଥାଏ ଲେଖକଙ୍କ ସହିତ ବିତର୍କରେ ଭାଗନେବା ପାଇଁ । ମୂଳରୁ କହିଛି ଏବଂ ଶେଷରେ ପୁନରୁକ୍ତି କରୁଛି ଯେ ଜଗନ୍ନାଥ ପ୍ରସାଦଙ୍କ ନିବନ୍ଧ ବା ଆଲୋଚନାସମୂହର ସମାଲୋଚକ ବା ସମୀକ୍ଷକର ଭୂମିକାରେ ମୁଁ ନାହିଁ । ମୁଁ କେବଳ ତାଙ୍କ ମାନସ ମନ୍ଥନର ସୃଜନ ପ୍ରକ୍ରିୟା ସହିତ ପାଠକମାନଙ୍କୁ ପରିଚିତ କରେଇବାରେ ସୂତ୍ରଧରର ଭୂମିକା ନିର୍ବାହ କରିଛି । ତାଙ୍କ ରଚନା ସଂପର୍କରେ ତାଙ୍କରି କବିତାର ଭାଷାରେ କହିବି -

ସବୁ ବୁଝେଇହୁଏ / ଯାହା କିଛି ଲେଖା ଥାଏ
ଆଦ୍ୟ ମଧ ଓ ଅନ୍ତ ରହିତ / ଆତ୍ମନିରୀକ୍ଷାର ସଜଳ ଶୂନ୍ୟତାରେ.....
(କବିତା-'ସବୁ ବୁଝିହୁଏ'- 'ଅନ୍ୟ ଦେଶ ଭିନ୍ନ ସମୟ')

# ଜେପି କଥା-ପଞ୍ଚକ

ଅସିତ ମହାନ୍ତି

"ପ୍ରିୟ ଅଖିଳ, ଏଥି ସହିତ ମୋର ଧମକ ଦେଉଥିବା ଗଳ୍ପ।" ୧୯୮୦ ମସିହାର ଗଣେଶ ପୂଜା ପୂର୍ବରୁ ଏହା ଥିଲା 'ସମାବେଶ' ପତ୍ରିକାର ତତ୍‌କାଳୀନ ମୁଖ୍ୟ ସଂପାଦକ ତଥା ବିଶିଷ୍ଟ ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକଙ୍କୁ ଜଗନ୍ନାଥ ପ୍ରସାଦ ଦାସଙ୍କ ପତ୍ରର ଏକାଂଶ। ସେଇ ସଂକ୍ଷିପ୍ତ ପତ୍ର ସହିତ ଗୁନ୍ଥା ହେଇ ବଂଧୁ ଅଖିଳଙ୍କ ପାଖକୁ ଆସିଥିଲା ଜେପିଙ୍କର ପ୍ରଥମ ଗଳ୍ପ। ତାହା ସେବର୍ଷର 'ସମାବେଶ' ପୂଜା ସଂଖ୍ୟାର ଏକ ପ୍ରମୁଖ ଗଳ୍ପ ରୂପେ ପ୍ରକାଶ ବି ପାଇଥିଲା।

ସେତେବେଳେ 'ସମାବେଶ'ର ସଂପାଦକ ଥିଲେ ଜଗଦୀଶ ପାଣି ଏବଂ କଳା ସଂପାଦକ ଥିଲେ ଅସୀମ ବସୁ। ମୁଁ ଥିଲି ପରିଚାଳନା ସଂପାଦକ। ଅଖିଳବାବୁ ଗପଟିକୁ ଆଣି ମତେ ଦେବାବେଳେ ତାଙ୍କୁ ପଚାରିଥିଲି- ଏ 'ଧମକ ଦେଉଥିବା ଗଳ୍ପ'ର ଅର୍ଥ କ'ଣ ? ଅଖିଳବାବୁ କହିଥିଲେ- ମୁଁ ଜେପିଙ୍କୁ କହେ, କବିତା ସିନା ଲେଖି ଦଉଚ; ଗପ ଲେଖିଲ ଦେଖି ! ଆଉ ଜେପି କହେ, ଦେଖିବ, ଦିନେ ମୁଁ ଗପ ବି ଲେଖିବି। ସେତେବେଳେ ତମେ ମତେ ଈର୍ଷା କରିବ କି ନା ଦେଖାଯିବ।

ସେଇ 'ଧମକ ଦେଉଥିବା' ଗଳ୍ପଟି ଥିଲା 'ଶବ୍ଦ ଅଥବା ଭବନାଥ କାହିଁକି ପାଗଳ ହୋଇଗଲା'। ତାହା ଥିଲା ଜଗନ୍ନାଥ ପ୍ରସାଦ ଦାସଙ୍କର ପ୍ରଥମ ଗଳ୍ପ। ତାହା ପରେ 'ଶବ୍ଦଭେଦ' ନାଆଁରେ

ଜେପିଙ୍କ ପ୍ରଥମ ଗଳ୍ପ ସଂକଳନ 'ଭବନାଥ ଓ ଅନ୍ୟମାନେ' (୧୯୮୨)ର ପ୍ରଥମ ଗଳ୍ପ ରୂପେ ସଂକଳିତ ହୋଇଛି ।

ଜେପିଙ୍କ ପ୍ରଥମ ଗଳ୍ପର ଏହି ପୃଷ୍ଠଭୂମିର ପ୍ରସଙ୍ଗ ପରବର୍ତ୍ତୀ କାଳରେ ଲିପିବଦ୍ଧ ହୋଇଛି 'ଶିକ୍ଷା ସନ୍ଧାନ' ପ୍ରକାଶିତ, ସୁମନ୍ୟୁ ଶତପଥୀ ସଂପାଦିତ 'ପ୍ରିୟ ଜେପି' ପୁସ୍ତକରେ । 'ଜଗନ୍ନାଥ ପ୍ରସାଦ ଦାସଙ୍କୁ ଚିଠି'ର ଉପଶିରୋନାମ ସମ୍ବଳିତ ସେହି ପତ୍ରସଂଗ୍ରହର ୧୦୫ ପୃଷ୍ଠାରେ ଅଛି 'ଅଖିଳମୋହନ ପଟ୍ଟନାୟକ' ଶୀର୍ଷକ ଏକ ପ୍ରସ୍ତ ଏବଂ ସେଥିରେ ସଂକଳିତ ହୋଇଛି ତିନିଟି ଚିଠି । ଜେପି ସେହି ପତ୍ରତ୍ରୟର ସ୍ମୃତିଲିପି (ବା ସୂଚନା ଲିପି)ରେ ଲେଖିଛନ୍ତି, "ମୁଁ ୧୯୭୩ ଜୁନ୍ ମାସରେ ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ଅଖିଳମୋହନ ପଟ୍ଟନାୟକଙ୍କ ସହିତ ନିୟମିତ ଦେଖା ହେଉଥିଲା । ତାଙ୍କ ସହିତ ମୋର ପୁରୁଣା ସଂପର୍କ ଥିଲା କଲେଜର ଷ୍ଟୁଡେଣ୍ଟ ଫେଡେରେଶନ ଦିନରୁ ।

ମୋର କବିତା ବହି ବାହାରିବା ପରେ ସେ କହିଥିଲେ, ମୁଁ ଯଦି କବି ହୋଇଥା'ନ୍ତି, ତେବେ ତୁମକୁ ଈର୍ଷା କରିଥା'ନ୍ତି । ମୁଁ ତାଙ୍କୁ କହୁଥିଲି, ମୁଁ ଗଳ୍ପ ବି ଲେଖିବି; ସେତେବେଳେ ଈର୍ଷା କରିବ କି ନାହିଁ ଦେଖାଯିବ । ସେଥିପାଇଁ ସବୁବେଳେ ସେ ମୋତେ ପଚାରୁଥିଲେ ମୁଁ ଧମକ ଦେଉଥିବା ଗଳ୍ପଟି କେବେ ଲେଖିବି ।

୧୯୮୦ରେ ମୁଁ ମୋର ପ୍ରଥମ ଗଳ୍ପ 'ଭବନାଥ' ସେ ସଂପାଦନା କରୁଥିବା 'ସମାବେଶ' ପତ୍ରିକାକୁ ପଠାଇଥିଲି ।"

ତେବେ ଏଇ 'ଧମକ ଦେଉଥିବା ଗଳ୍ପ' ବା ଜେପିଙ୍କ ପ୍ରଥମ ଗଳ୍ପ ସଂପର୍କରେ ଆଉ କେତୋଟି ଛୋଟ ସୂଚନା ବି ସେହି ପତ୍ର-ପୁସ୍ତକରେ ଅଛି । ସେବର୍ଷର ପୂଜାସଂଖ୍ୟା ପାଇଁ ପ୍ରସ୍ତୁତି ବେଳେ ଅଖିଳବାବୁ ଗୋଟିଏ ଛୋଟ ଚିଠି ଲେଖିଥିଲେ ଜେପିଙ୍କୁ । ଚିଠିର ତାରିଖ ୧ ଅଗଷ୍ଟ ୧୯୮୦ । ସେହି ଚିଠିଟି ଏମିତି-

"ପ୍ରିୟ ଜେ:ପି,

ହଠାତ୍ କେତେବେଳେ ଲିଙ୍ଗରାଜ ପୀଠରୁ ଉଡାନ ହୋଇଗଲ ଜାଣି ହେଲାନାହିଁ ।

ମୁଁ ଯା ଭିତରେ ମାତ୍ର କେତେଘଣ୍ଟା ପାଇଁ ଦିଲ୍ଲୀ ଯାଇଥିଲି । ଯୋଗାଯୋଗ କରିବା ସମ୍ଭବ ହେଲା ନାହିଁ । ପୂଜା ପାଇଁ କବିତାଟିଏ (ବା ଧମକ ଦେଉଥିବା ଗଳ୍ପଟିଏ) ପଠାଇବ ।

ଆଶାକରେ ମିତ୍ରା, ମନାଲିସା ଓ ତୁମେ କୁଶଳରେ ଥିବ ।

ତୁମର ଏକାନ୍ତ

ଅଖିଳମୋହନ ପଟ୍ଟନାୟକ"

ସେଦିନ ଅଖିଳବାବୁଙ୍କ ଏ ଚିଠିର ଉତ୍ତରରେ 'ସମାବେଶ'ର ପୂଜାସଂଖ୍ୟା ପାଇଁ ଜେପିଙ୍କଠାରୁ କବିତାଟିଏ ଆସି ନଥିଲା; ଆସିଥିଲା ସେଇ 'ଧମକ ଦଉଥିବା ଗଳ୍ପ'। ଗପଟି ପାଇ ତାକୁ ସାଙ୍ଗେ ସାଙ୍ଗେ ପଢ଼ି, ଜେପିଙ୍କୁ ଚିଠିଟିଏ ଲେଖିଥିଲେ ଅଖିଳବାବୁ। ସେ ଈର୍ଷା କଲାପରି ଗଳ୍ପଟି ଥିଲା କି ନା ତାହା ଆଜି ଅପ୍ରାସଙ୍ଗିକ; କିନ୍ତୁ ନିଶ୍ଚିତ ଭାବେ ଅଖିଳବାବୁଙ୍କୁ ମୁଗ୍ଧ କଲାପରି ଥିଲା ସେ ଗଳ୍ପ। ତାହା ସାଙ୍ଗେ ସାଙ୍ଗେ ପଢ଼ି, ଜେପିଙ୍କୁ ଯେଉଁ ଚିଠିଟି ଲେଖିଥିଲେ 'ଅମୋପ' (ଅଖିଳମୋହନ ପଟ୍ଟନାୟକ), ତାହା ଥିଲା ଯୁଗପତ୍ ବନ୍ଧୁ ତଥା ସଂପାଦକ ଅଖିଳମୋହନଙ୍କର ପତ୍ର। ଅଖିଳବାବୁ ଲେଖିଥିଲେ-

"ପ୍ରିୟ ଜେ:ପି,

ତମର ଗଳ୍ପ ପାଇଲି ଓ ସାଙ୍ଗେ ସାଙ୍ଗେ ପଢ଼ିଲି। ଚମତ୍କାର ହୋଇଛି। ସତରେ ଭାରି ଭଲ ଲାଗିଲା ଭବନାଥର କବିତାର ସଂଜ୍ଞା। ରାଜନୈତିକ ଶ୍ଳେଷର ଅନ୍ତଃସଲିଳା ଫଲ୍‌ଗୁ ମଧ୍ୟ ଭଲ ଲାଗିଲା। ଦ୍ୱେଷକୁ ଗ୍ଳାନି କରିଛି- ସଂକେତ ରଖିକୁ ଆକ୍ଷେପ କରି କରିଛି, ଏହିପରି ମାତ୍ର ତିନିଟି ଶବ୍ଦର ଅଦଳ ବଦଳ କରିଦେଇଛି ଗଳ୍ପର ଖାତିର୍‌ରେ। ଆଶାକରେ କିଛି ମନେ କରିବ ନାହିଁ।

ତୁମକୁ, ମିତ୍ରା ଓ ମନାକୁ ଶୁଭେଚ୍ଛା ଜଣେଇ

ତୁମର ସ୍ନେହାଧୀନ

ଅମୋପ"

ଏ ଚିଠିଟି ଅଖିଳବାବୁ ଲେଖିଥିଲେ ସେବର୍ଷ (୧୯୮୦) ଗଣେଶ ପୂଜା ଦିନ। ବସ୍ତୁତଃ ସେଇ ଥିଲା ଓଡ଼ିଆ ଗଳ୍ପଜଗତରେ ଜେପିଙ୍କ ଆବିର୍ଭାବର ଶ୍ରୀଗଣେଶ। ଏହାର ପରବର୍ତ୍ତୀ ପ୍ରାୟ ଦେଢ଼ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଓଡ଼ିଆ କଥା ଜଗତର ଏକ ଅଲିଭା ଅଧ୍ୟାୟ। କାରଣ ଏଇ ପ୍ରାୟ ୧୫-୧୭ ବର୍ଷ ଭିତରେ ଜେପି ୭୪ଟି ଗପ ଲେଖି ଓଡ଼ିଆ ସାହିତ୍ୟରେ ଜଣେ ଗାଳ୍ପିକ ଭାବରେ ନିଜକୁ ଯେପରି ପ୍ରତିଷ୍ଠିତ କଲେ ଏବଂ ଏକ 'ଅନ୍ୟ ଉଚ୍ଚତା'ରେ ନିଜକୁ ଅଧିଷ୍ଠିତ କଲେ, ତାହା ସେହି ଜଗତର ଦୀର୍ଘଦିନ ଧରି ଆସନ ଅଧିଷ୍ଠାତା ବିଭୂତି ପଟ୍ଟନାୟକଙ୍କୁ ବି ମୁଗ୍ଧ କରିଥିଲା। ସେଥିପାଇଁ ତାଙ୍କ ସଂପାଦିତ 'ଗଳ୍ପ' ପତ୍ରିକାର ଏକ ସ୍ୱତନ୍ତ୍ର ସଂଖ୍ୟାରେ ଜେପିଙ୍କୁ ସେ 'ଅନ୍ୟ ଉଚ୍ଚତାର କଥାକାର' ଭାବରେ ଅଭିହିତ କରିଥିଲେ। ପ୍ରକାଶକାଳର ସୂଚନା ନଥିବା ସେହି ସାକ୍ଷାତ୍‌କାରଟି

ସଂକଳିତ ହୋଇଛି ବିଜୟିନୀ ପବ୍ଲିକେଶନ୍ସ ପ୍ରକାଶିତ 'ମୁହାଁମୁହିଁ କଥାବାର୍ତ୍ତା'ରେ। ସେଥିରେ ବିଭୂତିବାବୁ କହିଛନ୍ତି, "ବର୍ତ୍ତମାନର ଜଟିଳ ସାମାଜିକ ଜୀବନର ତିକ୍ତ ମଧୁର ଉପଲବ୍ଧିକୁ କେବଳ କବିତାରେ ପ୍ରକାଶ କରିବା ସମ୍ଭବ ନୁହେଁ ବୋଲି ସମାଜସଚେତନ କବିଙ୍କୁ ଗଳ୍ପ ଉପନ୍ୟାସର ବିସ୍ତୃତ କାନ୍‌ଭାସ୍‌କୁ ଆଦରି ନେବାକୁ ହୁଏ।" ସଂପାଦକୀୟ ସୂଚନାରେ ଆହୁରି ମଧ୍ୟ ସେ ଲେଖିଛନ୍ତି, "ଅନେକ କବିଙ୍କର ଗଳ୍ପ-ଉପନ୍ୟାସ- ଗଦ୍ୟରେ ଘଟିଥାଏ କବିତାର ସଂକ୍ରମଣ- ଭାଷାରେ, କଥନ ଭଙ୍ଗୀରେ- ଏପରିକି କଥାବସ୍ତୁର ବିସ୍ତାରରେ। ହରପ୍ରସାଦ ଦାସଙ୍କ 'ଲୁବ୍‌ଧକର ତିନି ପ୍ରହର', ଦେବଦାସ ଛୋଟରାୟଙ୍କ 'ଲାଲ ମାଛ' ଗଳ୍ପ ସଂକଳନ କିମ୍ବା ବଙ୍ଗଳାର ଜୟ ଗୋସ୍ୱାମୀଙ୍କ 'ସବ୍ ଅନ୍ଧକାର ଫୁଲଗାଛ' ଉପନ୍ୟାସ ପଢ଼ିଲେ ଏହା ବିନା ଚଷମାରେ ଖାଲି ଆଖିରେ ଧରାପଡ଼ିଯାଏ। କିନ୍ତୁ ଏମାନଙ୍କଠାରୁ ବ୍ୟତିକ୍ରମ ମନେହୁଅନ୍ତି ଗାଳ୍ପିକ ଜଗନ୍ନାଥ ପ୍ରସାଦ ଦାସ। ସେ ଜଣେ ପୁରସ୍କୃତ କବି, ଖ୍ୟାତିମାନ ନାଟ୍ୟକାର; କିନ୍ତୁ କବିତାର ଶବ୍ଦ ଖେଳର ବ୍ୟଞ୍ଜନା ଅଥବା ନାଟକୀୟ ସଂଳାପର ଯାଦୁକରୀ ମାୟା ତାଙ୍କ ଗଳ୍ପକୁ କ୍ୱଚିତ୍ ସ୍ପର୍ଶ କରେ। ଗଳ୍ପଗୁଡ଼ିକର ଭାଷା ନିରାଡମ୍ବର ଅଥଚ ଭାବଦ୍ୟୋତକ। ଗଳ୍ପର କଥାବସ୍ତୁ ସ୍ପଷ୍ଟ, ପ୍ରାଞ୍ଜଳ; ଧୂମାଭ ଅସ୍ପଷ୍ଟତାରେ ଆଚ୍ଛନ୍ନ ନୁହେଁ। ଅନେକ ଗଳ୍ପର ପରିଣତି ପାଠକମାନଙ୍କୁ ପ୍ରଭାବିତ କରେ; ଆଲୋଡ଼ନ ସୃଷ୍ଟି କରି ଧୀରେ ଧୀରେ ବିସ୍ମୃତିର ଅନ୍ଧକାରରେ ବିଲୀନ ହୋଇଯାଏ ନାହିଁ। ଗଳ୍ପ ତାଙ୍କ ପରିଣତ ମାନସିକତାର ସୁବର୍ଣ୍ଣ ଶସ୍ୟ; ଅତିଶୟୋକ୍ତି, ଭାବପ୍ରବଣତାଦ୍ୱାରା ଆକ୍ରାନ୍ତ ନୁହେଁ।"

ସେଥିରେ ଗଳ୍ପକୁ ଜେପିଙ୍କ 'ପରିଣତ ମାନସିକତାର ସୁବର୍ଣ୍ଣ ଶସ୍ୟ' ବୋଲି ବିଭୂତିବାବୁ କହିଛନ୍ତି ଏଇଥିପାଇଁ ଯେ ଜେପି ଗଳ୍ପକୁ ଆସିଛନ୍ତି ଅନେକ ପରେ। ସେ ସାହିତ୍ୟ ଏକାଡେମୀର 'Meet the Author' କାର୍ଯ୍ୟକ୍ରମ ୪ ଡିସେମ୍ବର ୨୦୦୨ରେ ଏ ସଂପର୍କରେ କହିଛନ୍ତି, "On the literary front, I wrote poetry, like everyone else, when I was in school and college. My poems appeared in Megazines and while I was still in my teens I had the audacity to bring out the juvenile outpouring in a book. I stopped writing when I joined service- perhaps the work overwhelmed me but fortunately resumed writing after a gap of mearly fifteen years." (J.P. DAS OMNIBUS, Ed. Paul St-Pierre, 2012)

ଏ ପ୍ରସଙ୍ଗରେ ଉଲ୍ଲେଖନୀୟ ଯେ ୧୯୩୬ରେ ଜନ୍ମିତ ଜେପି ୧୯୫୮ରେ ପାଇଥିଲେ ଆଇ.ଏ.ଏସ୍; ଏବଂ ଏହି ସୂଚନା ଅନୁସାରେ ସେ ପ୍ରାୟ ୧୫ ବର୍ଷ ପରେ, ଅର୍ଥାତ୍ ପ୍ରାୟ ୧୯୭୩ ବେଳକୁ ପୁଣି ଫେରିଲେ ସାହିତ୍ୟକୁ। ତେବେ ତା' ପୂର୍ବରୁ ତାଙ୍କର ପ୍ରଥମ କବିତା ସଂକଳନ 'ପ୍ରଥମ ପୁରୁଷ' (୧୯୭୧) ପ୍ରକାଶ ପାଇସାରିଥିଲା। ଗଳ୍ପକୁ ସେ ଆସିଲେ, ପୁଣି କବିତାକୁ ଫେରିବାର ସାତ ବର୍ଷ ପରେ, ୧୯୮୦ରେ।

ଜେପିଙ୍କର ଏହି 'ପରିଣତ ମାନସିକତାର ସୁବର୍ଣ୍ଣ ଶସ୍ୟ' ହେଉଛି ତାଙ୍କର ଗଳ୍ପ ସମ୍ଭାର । ସାତଟି ସଂକଳନରେ ସେ ସମୃଦ୍ଧ କରିଛନ୍ତି ଓଡ଼ିଆ ଗଳ୍ପର ଶସ୍ୟାଗାରକୁ । ସେହି ସପ୍ତସମ୍ଭାର ହେଉଛି- ୧. ଭବନାଥ ଓ ଅନ୍ୟମାନେ (୧୯୮୨), ୨. ଦିନଚର୍ଯ୍ୟା (୧୯୮୩), ୩. ଆମେ ଯେଉଁମାନେ (୧୯୮୬), ୪. ସାକ୍ଷାତ୍‌କାର (୧୯୮୭), ୫. ପ୍ରିୟ ବିଦୂଷକ (୧୯୯୨), ୬. ଏବଂ ଶେଷ ପର୍ଯ୍ୟନ୍ତ (୧୯୯୫) ଏବଂ ୭. ଇଚ୍ଛାପତ୍ର । ଏହା ବ୍ୟତୀତ ୨୦୦୯ରେ ତାଙ୍କର ତିନିଟି ଦୀର୍ଘଗଳ୍ପର ଏକ ସଂକଳନ ମଧ୍ୟ 'ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘଜୀବନ' ନାମରେ ପ୍ରକାଶ ପାଇଛି । ଗଳ୍ପ ପୁସ୍ତକ  ମଧ୍ୟରୁ ପ୍ରଥମ ଛଅଟି ସ୍ୱତନ୍ତ୍ର ପୁସ୍ତକ ଭାବରେ ପ୍ରକାଶିତ ହୋଇଥିବା ବେଳେ ସପ୍ତମଟି (ଇଚ୍ଛାପତ୍ର) ସ୍ୱତନ୍ତ୍ର ପୁସ୍ତକ ରୂପେ ପ୍ରକାଶ ନପାଇ ଜଗନ୍ନାଥ ପ୍ରସାଦ ଦାସଙ୍କ ଗଳ୍ପ ସମଗ୍ର 'କଥାଯାତ୍ରା'ରେ ହିଁ ସଂକଳିତ ହୋଇଛି । 'ଇଚ୍ଛାପତ୍ର' ପର୍ଯ୍ୟାୟରେ ସଂକଳିତ ପାଞ୍ଚଟି ଗଳ୍ପ ସମେତ 'କଥାଯାତ୍ରା'ର ମୋଟ ଗଳ୍ପର ସଂଖ୍ୟା ୭୪ । ମୋଟ ପୃଷ୍ଠା ସଂଖ୍ୟା ୯୦୬ । ଏହା ସହିତ ୯୬ ପୃଷ୍ଠାର ତିନିଟି ଦୀର୍ଘ ଗଳ୍ପର ସଂକଳନକୁ ମିଶାଇଲେ ମୋଟ ଗଳ୍ପର ସଂଖ୍ୟା ହେବ ୭୭ ଓ ମୋଟ ପୃଷ୍ଠା ହେବ ୧୦୦୨ ।

କିନ୍ତୁ କବି ଭାବରେ ନିଜର ସମସ୍ତ ପ୍ରତିଷ୍ଠା ସତ୍ତ୍ୱେ କାହିଁକି ୧୯୮୦ ବେଳକୁ ଗଳ୍ପକୁ ଆସିଲେ ଜେପି ? ଏ ସଂପର୍କରେ ପୂର୍ବସୂଚିତ ସାକ୍ଷାତ୍‌କାରରେ ବିଭୂତିବାବୁଙ୍କୁ ସେ କହିଛନ୍ତି, "ମୁଁ ଯାହା ସବୁ କହିବାକୁ ଚାହୁଁଥିଲି, ସେସବୁ କବିତାରେ (ଅନ୍ତତଃ ମୁଁ ଯେଉଁଭଳି କବିତା ଲେଖୁଥିଲି ସେଥିରେ) କହିବା ସମ୍ଭବ ହେଉନଥିବାରୁ ମୁଁ ଗଳ୍ପ ଲେଖାରେ ହାତ ଦେଇଥିଲି ।"

ଏ ପ୍ରସଙ୍ଗରେ ସ୍ମରଣୀୟ ଯେ ଗଳ୍ପ ଜଗତକୁ ଆସିବା ପୂର୍ବରୁ ଜେପିଙ୍କର ତିନିଟି କବିତା ସଂକଳନ ପ୍ରକାଶ ପାଇସାରିଥିଲା । ସେହି ସଂକଳନଗୁଡ଼ିକ ହେଉଛି, ୧. ପ୍ରଥମ ପୁରୁଷ (୧୯୭୧), ୨. ଅନ୍ୟସବୁ ମୃତ୍ୟୁ (୧୯୭୬) ଓ ୩. ଯେ ଯାହାର ନିର୍ଜନତା (୧୯୭୯) । ସେ ଗଳ୍ପକୁ ଆସିବା ପରେ ବି ଗଳ୍ପ ଓ କବିତା  ଚାଲିଛନ୍ତି ସମତାଳରେ । ୧୯୮୨ ବର୍ଷରେ ପ୍ରକାଶ ପାଇଛି କବିତା ସଂକଳନ 'ଅନ୍ୟ ଦେଶ ଭିନ୍ନ ସମୟ' ଓ ଗଳ୍ପ ଗ୍ରନ୍ଥ 'ଭବନାଥ ଏବଂ ଅନ୍ୟମାନେ' । ତା' ପରେ ୧୯୯୫ ମଧ୍ୟରେ ପାଞ୍ଚଟି କବିତା ସଂକଳନ- ୧. ଯାତ୍ରାର ପ୍ରଥମ ପାଦ (୧୯୮୮), ୨. ଆହ୍ନିକ (୧୯୯୦), ୩. ସ୍ଥିରଚିତ୍ର (୧୯୯୧), ୪. ସଚରାଚର (୧୯୯୪) ଓ ୫. ସ୍ମୃତିର ସହର (୧୯୯୫) ପ୍ରକାଶ ପାଇଥିବା ବେଳେ ପ୍ରକାଶ ମଧ୍ୟ ପାଇଛି 'ଦିନଚର୍ଯ୍ୟା' (୧୯୮୩)ଠାରୁ 'ଏବଂ ଶେଷ ପର୍ଯ୍ୟନ୍ତ' (୧୯୯୫) ଯାଏ ପାଞ୍ଚଟି ଗଳ୍ପଗ୍ରନ୍ଥ । ତା' ପରେ 'ଇଚ୍ଛାପତ୍ର' ନାମକ ପ୍ରସ୍ତାବିତ ଗଳ୍ପ ସଂକଳନକୁ ସେଇଠି ଛାଡ଼ି ସେ ଆଗେଇ ଯାଇଚନ୍ତି ପୂର୍ବ ପ୍ରେମିକା କବିତାର ହାତ ଧରି । ତାହାର ସୁଫଳ ରୂପେ ଓଡ଼ିଆ ସାହିତ୍ୟ ପାଇଛି 'ପରିକ୍ରମା'

(୧୯୯୮), 'ଅସମୟ' (୨୦୦୪) ପରି କାବ୍ୟକୃତି। ଏପରିକି 'ପରିକ୍ରମା' ଷୋଡ଼ଶ ସରସ୍ୱତୀ ସମ୍ମାନ (୨୦୦୬) ପରି ଦେଶର ପ୍ରମୁଖ ପୁରସ୍କାର ବି ପାଇଛି। ଆହୁରି ପରବର୍ତ୍ତୀ କାଳରେ ସେ 'ଲେଖି ନପାରିବା' ପରି କବିତା ଲେଖି, 'ଫକୀରମୋହନ' ଓ 'ଓଡ଼ିଆ' ପରି ବେଶ୍ ମାର୍ମିକ  କବିତାକୁ ସଂକଳିତ କରିଥିବା 'ବିବିଧ କବିତା' (୨୦୦୪-୨୦୧୧) ବାଟ ଦେଇ 'ଅନାବନା' (୨୦୦୮) ଆଡ଼କୁ ଏବଂ ପ୍ରବନ୍ଧ ଓ ସମ୍ବାଦପତ୍ର ସ୍ତମ୍ଭ ପାଖକୁ ଚାଲିଯାଇଛନ୍ତି। ମଝିରେ ମଝିରେ ଗଳ୍ପ ଅବଶ୍ୟ ଆସିଛି; କିନ୍ତୁ ଆସିଛି ଦୀର୍ଘ ଗଳ୍ପର ରୂପ ନେଇ- ସମ୍ଭବତଃ ଉପନ୍ୟାସ ରଚନାର ଅସମାପ୍ତ ସ୍ୱପ୍ନକୁ ଚରିତାର୍ଥ କରିବା ପାଇଁ।

ତେବେ, ଜେପି କାହିଁକି ଆଉ ଗପ ନଲେଖି ବଡ଼ଗପ ଲେଖିଲେ ବା ଅଧା ଲେଖା ଉପନ୍ୟାସଟିଏକୁ ଅଧାରେ ଛାଡ଼ିଦେଲେ ତାହା ଭିନ୍ନ ପ୍ରସଙ୍ଗ; ପ୍ରସଙ୍ଗଟି ହେଉଛି- ସେ ଗଳ୍ପକୁ କାହିଁକି ଆସିଲେ ଏବଂ ସେ ଗଳ୍ପକୁ ଆସିବା ପରେ ତାଙ୍କ କବିତାରେ କି ପରିବର୍ତ୍ତନ ଘଟିଲା ? ଏ ପ୍ରସଙ୍ଗରେ ଗୋଟିଏ ସାକ୍ଷାତ୍କାର ପ୍ରଶ୍ନରେ ଜେପି ଦେଇଥିବା ଉତ୍ତର ବେଶ୍ ପ୍ରାସଙ୍ଗିକ। ସେଥିରେ ସେ କହିଛନ୍ତି- "ଲେଖକର ବ୍ୟକ୍ତିତ୍ୱ ଗୋଟିଏ ମାତ୍ର; ସେ ବିଭିନ୍ନ ପ୍ରକାରର ଲେଖା- କବିତା, ଗଳ୍ପ, ନାଟକ ଲେଖୁଥାଉ ପଛେ। କବିତା ମୋର ପ୍ରଥମ ପ୍ରେମ ହୋଇଥିବାରୁ ମୁଁ ନିଜକୁ ପ୍ରଥମେ କବି ଭାବରେ ଭାବିଥାଏ।" (ଆଳାପ, ଦକ୍ଷ ବୁକ୍ସ, ୨୦୧୪) ସେହି ସାକ୍ଷାତ୍କାରରେ ସେ ଆହୁରି ମଧ୍ୟ କହିଛନ୍ତି, "ସବୁ କବି ସବୁ ସମୟରେ କବିତା ଲେଖନ୍ତି ନାହିଁ। କେତେକ ବିଷୟ ପାଇଁ ମୁଁ ଭାବିଲି, ହୁଏତ କବିତା ଅପେକ୍ଷା ଗଳ୍ପ, ନାଟକ ଭଲ ମାଧ୍ୟମ ହେବ। ଗଳ୍ପ ଲେଖିବା ପରେ ଅବଶ୍ୟ ଗୋଟିଏ ନୂଆ କଥା ହେଲା ଯେ ମୁଁ କିଛି ଭିନ୍ନ ପ୍ରକାରର କବିତା ଲେଖିବା ଆରମ୍ଭ କଲି। ସମାଜମନସ୍କ ଗପରୁ ସମାଜମନସ୍କ କବିତାକୁ ଆସିଲି।"

ଏ ପ୍ରସଙ୍ଗରେ, ଆଉ ଏକ ସାକ୍ଷାତ୍କାର ପ୍ରଶ୍ନ ଓ ତା'ର ଉତ୍ତର ମଧ୍ୟ ବେଶ୍ ପ୍ରାସଙ୍ଗିକ। ସେଥିରେ ସାକ୍ଷାତ୍କର୍ତ୍ତା ଜେପିଙ୍କୁ ପଚାରିଛନ୍ତି- ଯାହା କବିତା ନୁହେଁ ବା ଅ-କବିତା ତାହାକୁ ଆପଣ କବିତାଠାରୁ କିପରି ଅଲଗା କରିବେ ? ଜେପି ଉତ୍ତର ଦେଇଛନ୍ତି- କବିତା ନୁହେଁ ବା ଅ-କବିତା ବୋଲି କିଛି ଅଛି କି ? ଏହା କ'ଣ ଗଦ୍ୟ ? ଏହା ବି କୁହାଯାଏ ଯେ କବିତାର ବିପରୀତ ବୋଲି ଯଦି କିଛି ଥାଏ, ତେବେ ତାହା ଗଦ୍ୟ ନୁହେଁ, ବିଜ୍ଞାନ। ମୋର ସାହିତ୍ୟ ତତ୍ତ୍ୱରେ କୌଣସି ଆଗ୍ରହ ନାହିଁ। ମୁଁ ଶବ୍ଦରେ ଏହାର ବ୍ୟାଖ୍ୟା କରିବାକୁ ଅସମର୍ଥ।" ( JP DAS OMNIBUSରେ ମନୁ ଦାଶଙ୍କ ଇଂରାଜୀ ଭାଷାର ସାକ୍ଷାତ୍କାର)।

ଏହି ପରିପ୍ରେକ୍ଷୀରେ ଜେପି ଦାସଙ୍କ 'କଥାଯାତ୍ରା'ର ଗଳ୍ପଗୁଚ୍ଛ ଆଲୋଚ୍ୟ। ଏ ପ୍ରସଙ୍ଗରେ ସୂଚନାଯୋଗ୍ୟ ଯେ ପୂର୍ବ ସୂଚିତ ସାକ୍ଷାତ୍କାରରେ ଏକଦା ତାଙ୍କୁ ବିଭୂତି ପଟ୍ଟନାୟକ

ପଚାରିଥିଲେ- ତାଙ୍କର ପ୍ରିୟ ଗଳ୍ପଗୁଡ଼ିକ କ'ଣ ? ଜେପି ଉତ୍ତର ଦେଇଥିଲେ- "ମୋର ଏପରି କୌଣସି ପ୍ରିୟ ଗଳ୍ପ ନାହିଁ।" ତେବେ ବିଷୟ, ଚରିତ୍ରର ବହୁ ବିବିଧତା ସତ୍ତ୍ୱେ, ତାଙ୍କର ୭୪ଟି କ୍ଷୁଦ୍ରଗଳ୍ପରୁ ମାତ୍ର ପାଞ୍ଚଟି ଏଠାରେ ଉପସ୍ଥାପିତ। ଏବଂ ସେହି ପାଞ୍ଚଟିର ସଂପର୍କ ସୂତ୍ର ଅବଧାରିତ ଭାବରେ କବିତା ବା ସାହିତ୍ୟ।

ପ୍ରାୟ ୧୫-୧୭ ବର୍ଷର ଏହି କଥାକାଳକୁ ଲକ୍ଷ୍ୟ କଲେ ଦେଖାଯାଏ ଯେ 'କଥାଯାତ୍ରା'ରେ ସଂକଳିତ ସର୍ବମୋଟ ୭୪ଟି ଗଳ୍ପ ମଧ୍ୟରୁ, ପ୍ରଥମ ଗଳ୍ପ- 'ଶବ୍ଦଭେଦ'ଠାରୁ ୭୩ତମ ଗଳ୍ପ- 'ଭାବମୂର୍ତ୍ତି' ପର୍ଯ୍ୟନ୍ତ, କବିତାକୁ ନେଇ ଅନେକ ଗଳ୍ପ ସେ ଲେଖିଛନ୍ତି। ପୁଣି ଶେଷଗଳ୍ପ- 'ଜନ୍ମଦାତା' ପର୍ଯ୍ୟନ୍ତ ସାହିତ୍ୟ ହିଁ ତାଙ୍କର ବହୁ ଗଳ୍ପର କଥାବସ୍ତୁ। ଏପରିକି ତିନିଟି ଦୀର୍ଘ ଗଳ୍ପ ମଧ୍ୟରୁ ଶେଷଟିର ଉପଜୀବ୍ୟ ବି କବିତା ଏବଂ ତାହାର ଶୀର୍ଷକ 'କବିତାର ଦୀର୍ଘ ଜୀବନ'। ଏଣୁ ସଂକ୍ଷେପରେ କହିଲେ ପ୍ରଥମ କ୍ଷୁଦ୍ରଗଳ୍ପର ନାୟକ 'ଭବନାଥ'ଠାରୁ ଶେଷ ଦୀର୍ଘ ଗଳ୍ପର ନାୟକ 'ଦେବନାଥ' ପର୍ଯ୍ୟନ୍ତ ପ୍ରଲମ୍ବିତ ତାଙ୍କ କବିତା ବା ସାହିତ୍ୟ ଆଧାରିତ କଥାକୃତିର କାନ୍‌ଭାସ୍। କିନ୍ତୁ ଏହି 'ଜେପି କଥା-ପଞ୍ଚକ' ତାଙ୍କ 'କଥାଯାତ୍ରା'ର ପାଞ୍ଚଟି ଗପ ଉପରେ ହିଁ ଆଧାରିତ।

ପ୍ରଥମ ଗଳ୍ପ 'ଶବ୍ଦଭେଦ'କୁ ହିଁ ଦେଖାଯାଉ। କଲେଜ ଜୀବନରୁ କବିତା ଲେଖୁଥିବା ଭବନାଥ ଏକାଧାରରେ ଥିଲା ଗମ୍ଭୀର ଓ ବହୁତ କଥା ବି କହୁଥିଲା। ଗୋଟିଏ ଛଅ ଧାଡ଼ିଆ କବିତା ସେ ଲେଖିଥିଲା ଏବଂ ଗୋଟିଏ ଜଣାଶୁଣା ପତ୍ରିକାରେ ତାହା ପ୍ରକାଶ ବି ପାଇଥିଲା। ସେତେବେଳେ କଲେଜରେ ସେ ଥିଲା ଏକମାତ୍ର ପ୍ରକାଶିତ କବି। ସେଇ ଛଅଧାଡ଼ିଆ କବିତାଟିର ଶୀର୍ଷକ ଥିଲା- 'ଆରୋହ-ଅବରୋହ'। କବିତାଟି ଥିଲା-

"ଦୂବଘାସ ବରଗଛ

ପିମ୍ପୁଡ଼ି ହାତୀ

ମଣିଷ ଈଶ୍ୱର।

ଈଶ୍ୱର ମଣିଷ

ହାତୀ ପିମ୍ପୁଡ଼ି

ବରଗଛ ଦୂବଘାସ।"

ଜେପିଙ୍କ ବର୍ଣ୍ଣନା ଅନୁସାରେ, "ସେଇ ଛୋଟ କବିତାର ଆଳରେ ସେ ଆମକୁ ବୁଝାଇବାକୁ ଲାଗିଲା ଯେ ଗୋଟିଏ କବିତା ପଛରେ କେତେ ସାଧନା ଦରକାର। ଉଦାହରଣ ସ୍ୱରୂପ,

ଭବନାଥ ବୁଝାଇଲା, ଏଇ ଛ' ଧାଡ଼ିର କବିତା ପଛରେ ତାକୁ କିପରି ଛ'ମାସ ସମୟ ଲାଗିଥିଲା; ଏ ଆରୋହ କିପରି କେବଳ ଦୂବଘାସରୁ ବରଗଛ ଏବଂ ପିମ୍ପୁଡ଼ିରୁ ହାତୀ ହିଁ ନୁହେଁ, ଦୂବଘାସରୁ ପିମ୍ପୁଡ଼ି ଏବଂ ପିମ୍ପୁଡ଼ିରୁ ମଣିଷକୁ ମଧ୍ୟ। ଏହି ଆରୋହ ସହିତ କିପରି ଡାରଉଇନ୍‌ଙ୍କର ନ୍ୟାଚୁରାଲ ସିଲେକ୍‌ଶନ୍‌ର ସିଦ୍ଧାନ୍ତ ସବୁ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ସେ କଥା ମଧ୍ୟ କହିବାକୁ ଭୁଲି ନଥିଲା ଭବନାଥ ଏବଂ ଶେଷରେ ସେ ଇଲିୟଟ୍, ପାଉଣ୍ଡ୍ ପ୍ରମୁଖଙ୍କର ନଜିର ଦେଇ ଭଲ କବିତା କ'ଣ ସେ ବିଷୟରେ ଛୋଟ ବକ୍ତୃତା ଦେଇଥିଲା।"

ତେବେ ଏହା ଭବନାଥ ନାମକ ସେଇ ତରୁଣ କବିଟିର କେବଳ କଥାର କଥା ନଥିଲା। ସେ ଯାହା କହୁଥିଲା, ସେଥିରେ ଗଭୀର ବିଶ୍ୱାସ କରୁଥିଲା; ବିଶେଷକରି ଶବ୍ଦ ଉପରେ ଥିଲା ତା'ର ଗଭୀର ଆସ୍ଥା। ଏପରିକି ଜୀବିକାର୍ଜନ ପାଇଁ ପରବର୍ତ୍ତୀ କାଳରେ ଖବରକାଗଜ ଅଫିସରେ ପ୍ରୁଫ୍ ଦେଖିବା ବେଳେ ବି ଶବ୍ଦର ଶକ୍ତି ଓ ଶୁଦ୍ଧତା ଉପରେ ତା'ର ଗଭୀର ପ୍ରତ୍ୟୟ ରହିଥିଲା। "ଖାଲି ଆଖି ପକାଇ ଦେଲେ ତ ପଢ଼ା ହୁଏନା ! କବିତା ପଢ଼ିଲେ ପ୍ରତି ଶବ୍ଦକୁ ତନ୍ନ ତନ୍ନ କରି ଦେଖିବାକୁ ହୁଏ।" "ଅର୍ଥ ପାଇଁ ଆମକୁ ଅନେକ ସମୟରେ ଶବ୍ଦ ଭିତର ଦେଇ ବାହାର ପୃଥିବୀକୁ ବି ଯିବାକୁ ପଡ଼ିବ।" "ଏଇ ଶବ୍ଦ ହିଁ ଦିନେ ନିଆଁ ହୋଇ ସବୁ ଜାଳିଦେବ।" ଏପରି ଅନେକ ଉକ୍ତି ସେ କହୁଥିଲା ଏବଂ ସେ ଉକ୍ତିରେ ସେ ଗଭୀର ଭାବେ ବିଶ୍ୱାସ ବି କରୁଥିଲା। ଏପରିକି 'କବି କବି-ପାଗଲା ପାଗଲା' ଚେହେରାର ସେଇ ଭବନାଥ ଏ ଗଳ୍ପର ଲେଖକ ବା ଗଳ୍ପ କଥକଙ୍କୁ ତା'ର ପୁରୁଣା ଓ ମିଳନାନ୍ତକ ପରିଣତିହୀନ ପ୍ରେମ କାହାଣୀର ଆଧାରରେ ବୁଝାଇ ଦେଇଥିଲା ଯେ ଗୋଟିଏ ଘଟଣା ବା ପ୍ରସଙ୍ଗରୁ ସବୁ ଚରିତ୍ର, ସବୁ ସଂଳାପ ଓ ସବୁ ଭାବପ୍ରବଣତାକୁ ବାଦ୍ ଦେଇ ଦେବା ପରେ ରହିଯାଏ ଯେଉଁ କିଛି ଦୁଃଖ, ଯେଉଁ କିଛି ଅନ୍ତର୍ଦାହ, ଯେଉଁ କିଛି ବୁଝିବା, ତାହା ହେଉଛି କବିତା।

କିନ୍ତୁ ଗଳ୍ପର ପରିସମାପ୍ତି ବେଳକୁ ଏ ଭବନାଥ ଆଉ ଏକ ପରିଣତିରେ ପହଞ୍ଚିଛି। ସେ ଆଉଥରେ ପ୍ରେମରେ ପଡ଼ିଛି। ଲେଖକଙ୍କୁ ଚିଠିରେ ଲେଖିଛି, "ଶୁଣି ଖୁସି ହବୁ ଯେ ମୁଁ ପୁଣି ପ୍ରେମରେ ପଡ଼ିଛି। ଏବେ ମୁଁ ପଢ଼ିଲି ଯେ ଆମେରିକାରେ ଗବେଷଣା କରି ବୈଜ୍ଞାନିକମାନେ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ଦୁଇଜଣଙ୍କ ଭିତରେ ଭାବ ବିନିମୟର ମୋଟେ ସାତ ପ୍ରତିଶତ କାମ ଶବ୍ଦ ଜରିଆରେ ହୋଇଥାଏ; ଅଠତିରିଶ ପ୍ରତିଶତ ହୋଇଥାଏ ସ୍ୱରରେ ଓ ବାକି ପଞ୍ଚାବନ ପ୍ରତିଶତ ମୁହଁର ଭାବଭଙ୍ଗୀରେ।" ତେବେ ଗଳ୍ପର ଚୂଡ଼ାନ୍ତ ପରିଣତିରେ ଗାଳ୍ପିକ କହିଛନ୍ତି, "ଏହାପରେ ଭବନାଥର କବିତା ଆଉ କେଉଁଠି ଦେଖିବାକୁ ମିଳି ନଥିଲା। ଆଉ ତା'ର ଚିଠି ବି ଆସୁ ନଥିଲା। ବିଶ୍ୱାସ ନକଲେ ବି ସେ ଖବର ପାଇଥିଲେ ଯେ ଭବନାଥ ପାଗଳ ହୋଇଯାଇଛି।

କିନ୍ତୁ ନିଜର ଏଇ ପ୍ରଥମ ଗଳ୍ପରେ କବିତାରୁ ପ୍ରଥମ କରି ଗଳ୍ପକୁ ଆସିଥିବା ଜେପି କ'ଣ କହିବାକୁ ଚାହିଁଛନ୍ତି ? ଏ ପ୍ରଶ୍ନ ଦିନେ ପଚାରିଥିଲେ ତାଙ୍କୁ ବିଭୂତି ପଟ୍ଟନାୟକ, ପୂର୍ବସୂଚିତ ସାକ୍ଷାତ୍‌କାରରେ; ଆଉ ଜେପି ଗୋଟିଏ ବାକ୍ୟରେ ଏଡ଼େଇ ଯାଇଥିଲେ ତା'ର ଉତ୍ତରକୁ। କହିଥିଲେ, "ଗଳ୍ପର ଭାବବସ୍ତୁ ସୂକ୍ଷ୍ମରେ କହିବା ସମ୍ଭବ ନୁହେଁ।" ପୁଣି ଆଉ ଗୋଟିଏ ସାକ୍ଷାତ୍‌କାରରେ ବି ସେ କହିଥିଲେ, "ମୁଁ ମୋର ଲେଖା ବିଷୟରେ ଭାବେ ନାହିଁ ବା ତାକୁ ବିଶ୍ଳେଷଣ କରିବାକୁ ଚେଷ୍ଟା କରେ ନାହିଁ।" (ଆଳାପ, ୨୦୧୪) ତେବେ ସଂକ୍ଷେପରେ ଆମେ ଏତିକି ବୁଝୁ ଯେ ଶବ୍ଦର ଶକ୍ତି ଓ ଶୁଦ୍ଧତା ଉପରେ ଅଗାଧ ଆସ୍ଥା ଥିବା ଜଣେ ନିରୋଳା କବିର କଥା କହିଛନ୍ତି ଏ ଗଳ୍ପରେ ଜେପି; ଯେଉଁଥିରେ ତାଙ୍କ ଆଦ୍ୟ କବିମାନସର ଅଭିବ୍ୟକ୍ତି ହୁଏତ ପରୋକ୍ଷ ଭାବରେ ଉତ୍‌କୀର୍ଣ୍ଣ।

'ଜେପି କଥା-ପଞ୍ଚକ'ର ଦ୍ୱିତୀୟ ଗଳ୍ପ- 'ଦିନଚର୍ଯ୍ୟା' (୧୯୩୩)ର ଶେଷ ଗଳ୍ପ 'ଅମରତ୍ୱ'। ଗଳ୍ପର ନାୟକ ଅନିରୁଦ୍ଧ। ପାଠ ପଢ଼ିବା ବେଳେ କବି ହେବାର ଦୁରାକାଂକ୍ଷା ଥିଲା ତା'ର। ସାହିତ୍ୟର ଛାତ୍ର ଭାବରେ ଏହାକୁ ଏକ ସମ୍ଭବଇଚ୍ଛା ବୋଲି ସେ ଧରି ନେଇଥିଲା। ମାତ୍ର କଲେଜ ପତ୍ରିକାରେ ଗୋଟିଏ କବିତା ଛଡ଼ା ସେ ଆଉ ଆଗେଇ ପାରି ନଥିଲା। ତଥାପି ତା'ର ଇଚ୍ଛା ଛାଡ଼ି ନଥିଲା। ସେ ଠିକ୍ କରିଥିଲା, ଚାକିରି ନେଇ ବସବାସ କରିସାରିଲେ ଆରାମରେ ବସି କେବଳ କବିତା ହିଁ ଲେଖିବ।

ଶେଷରେ ସେ ପ୍ରଶାସନ ସେବାରେ ଯୋଗ ଦେଲା ଏବଂ ସେଦିନର ସେଇ ଇଚ୍ଛାକୁ ଫଳବତୀ କରିବାର ଅଭିଳାଷ ତା' ମନରେ ଜାଗ୍ରତ ହେଲା। ମାତ୍ର ଅଫିସ୍‌ରେ ସାରା ଦିନର କାମ ପରେ ରାତିରେ ସେ ଚେଷ୍ଟା କରି ମଧ୍ୟ କବିତାମନସ୍କ ହୋଇପାରୁ ନଥିଲା। ତା'ର ସେହି ମାନସିକତାର ଚିତ୍ର ଚମତ୍କାର ଭାବରେ ଚିତ୍ରଣ କରିଛନ୍ତି ଜେପି। କହିଛନ୍ତି- "ସେ ମନ ଭିତରେ ନିଜେ ଏକ ଖ୍ୟାତନାମା କବି ହୋଇଥିବାର ସ୍ୱପ୍ନ ଦେଖୁଥିଲା ଏବଂ ତା'ର କବିତାକୁ ଶହେବର୍ଷ ପରେ ଅନେକ ପାଠକ କୌତୂହଳ ସହିତ ପାଠ କରୁଥିବାର କଳ୍ପନା କରୁଥିଲା।... ତାକୁ ଯେଉଁ ଇଚ୍ଛାଟି ସବୁବେଳେ ବ୍ୟାକୁଳ କରୁଥିଲା, ସେଇଟି ଥିଲା କବି ହୋଇ ଅମରତ୍ୱ ଲାଭ କରିବାର ଇଚ୍ଛା।

ଏ ଗଳ୍ପଟିକୁ ଖୁବ୍ ବ୍ୟଙ୍ଗାତ୍ମକ ଭାବରେ ପରିଣତି ପଥରେ ନେଇଯାଇଛନ୍ତି ଜେପି; ଏବଂ କିପରି ଅନିରୁଦ୍ଧ କବିତା ରଚନା ପରି ଦୁଃସାଧ୍ୟ ଅଭିଳାଷ ଛାଡ଼ି, 'ଅଫିସ୍ ଫାଇଲ୍‌ର ସାହିତ୍ୟ' ବା 'ଅଫିସ୍ ଫାଇଲ୍‌ରେ ହାସ୍ୟରସ' ଆଧାରରେ, ଗବେଷକମାନଙ୍କ ଲେଖନୀରେ ଅମରତ୍ୱ ଲାଭ କରିବାର ଅଭିଳାଷ ପୋଷଣ କରୁଥିଲା ତାହାର ରସୋତ୍ତୀର୍ଣ୍ଣ ବର୍ଣ୍ଣନା କରିଛନ୍ତି। ପରିଣତିରେ ବି

ଆଙ୍କିଛନ୍ତି ଏକ ହାସ୍ୟକର ଅଥଚ କରୁଣ ଚିତ୍ର। ୨୦ ବର୍ଷ ପରେ ନିଜର ପୁରୁଣା ଅଫିସ୍‌କୁ ପରିଦର୍ଶନରେ ଯାଇ ଅନିରୁଦ୍ଧ ଦେଖିଛି, ତା' ଅମଳର ପୁରୁଣା ଫାଇଲ୍‌ଗୁଡ଼ିକ ଆଉ ନାହିଁ। ରେକର୍ଡ଼ ମାନୁଆଲ୍ ଅନୁସାରେ ଅସ୍ଥାୟୀ ଫାଇଲ୍‌ଗୁଡ଼ିକୁ ଦୁଇବର୍ଷ ପରେ ନଷ୍ଟ କରିଦିଆଯାଉଛି। ପୁଣି ଗଳ୍ପର ଶେଷ ପରିଣତିର ଚିତ୍ରକୁ ବି ଆହୁରି ବିୟୋଗାନ୍ତକ ଭାବରେ ଆଙ୍କିଛନ୍ତି ସେ। ସେହି ଗସ୍ତରୁ ଫେରି ଏକ ସୁନ୍ଦର ମୀମାଂସାରେ ପହଞ୍ଚିଛି ଅନିରୁଦ୍ଧ ଏବଂ ନିଜ ବିଭାଗର ବିଭିନ୍ନ ନିୟମାବଳୀକୁ ଏକତ୍ର କରି ଗୋଟିଏ ସଂକଳନ ପ୍ରସ୍ତୁତ କରି ତା'ର ଏକ ସୁଦୀର୍ଘ ଓ ସୁଚିନ୍ତିତ ମୁଖବନ୍ଧ ଲେଖିଛି। ସେ ବହିଟି ପ୍ରକାଶ ପାଇବା ପରେ ତା'ର ମନେ ହୋଇଛି, ସେ ଏଥର ଇତିହାସର ପୃଷ୍ଠା ଭିତରକୁ ଚାଲିଯାଇଛି ଏବଂ ସେହି ନିୟମାବଳୀ ପ୍ରଚଳିତ ଥିବା ପର୍ଯ୍ୟନ୍ତ ତାର ନାଁ ଅମର ହୋଇ ରହିବ। କିନ୍ତୁ ତା' ପାଇଁ ଘୋର ବିଡ଼ମ୍ବନାର ବିଷୟ ଏହି ଯେ ସେ ଚାକିରିରୁ ଅବସର ନେବା ପରେ ତା' ଜାଗାରେ ଆସିଥିବା ଚନ୍ଦ୍ରମୌଳି ତା'ର ପୂର୍ବ ମୁଖବନ୍ଧଟିକୁ ବହିରୁ ବାଦ୍ ଦେଇ ନିଜ ମୁଖବନ୍ଧ ସହିତ ତାହାର ଏକ ନୂତନ ସଂସ୍କରଣ ପ୍ରସ୍ତୁତ କରିଦେଇଛି।

ଏ ଗଳ୍ପରେ କ'ଣ କହିବାକୁ ଚାହିଁଛନ୍ତି ଜେପି, ତାହା କିନ୍ତୁ ଆଉ ପୂର୍ବ ଗପଟି ପରି ଅସ୍ପଷ୍ଟ ନୁହେଁ; ବରଂ ବେଶ୍ ସ୍ପଷ୍ଟ। ସାଧନା ବା ପ୍ରତିଭା ନଥାଇ ସାହିତ୍ୟରେ ଅମରତ୍ୱ ଲାଭ କରିବା ଏକ ସମ୍ଭବଇଚ୍ଛା ନୁହେଁ, ଏକ ଦୁରାଶା। ଏ ପ୍ରକାର ମାନସିକତାକୁ ଜେପି ଯେଉଁଥିପାଇଁ ବ୍ୟଙ୍ଗ କରିଛନ୍ତି, ତାହାର ସୂଚନା ଅଛି ସାହିତ୍ୟ ଏକାଡେମୀ ପକ୍ଷରୁ ତାଙ୍କ ସହିତ ଏକଦା କରାଯାଇଥିବା 'ମିଟ୍ ଦ ଅଥର' କାର୍ଯ୍ୟକ୍ରମର ଏକ ଆଲେଖ୍ୟରେ। ସେଥିରେ ସେ କହିଛନ୍ତି, "Arthur Koestler talked about exchanging a hundred readers today for ten readers ten years hence, and a single reader a hundred years later. Tagore also talked about someone reading his poem a hundred years hence. And Bhababhuti spoke about like minded readers in some unknown future. But unless one is conceited, and is certain of some such a thing as posterity, one would certainly like to have some readers now and here. I think I would be happy with ten readers today and may be another ten tomorrow"(J.P. DAS OMNIBUS, ପୃ-୩୦୭)

'ଜେପି କଥା-ପଞ୍ଚକ'ର ଦ୍ୱିତୀୟ ଗଳ୍ପର ଶୀର୍ଷକ 'ଲେଖକ'। 'ଆମେ ଯେଉଁମାନେ' (୧୯୮୬) ଗଳ୍ପଗ୍ରନ୍ଥର ଅଷ୍ଟମ ଗଳ୍ପ ଭାବରେ ଏହା ସଂକଳିତ। ଅନେକ ଲେଖକ, କବିଙ୍କ ଜୀବନରେ ବେଳେବେଳେ ଯେଉଁ ପ୍ରକାରର ବନ୍ଧ୍ୟାତ୍ୱ ଆସେ, ତାହାର ଚିତ୍ର ଏ ଗଳ୍ପରେ ବେଶ୍ ମାର୍ମିକ ଭାବରେ ଉତ୍‌କୀର୍ଣ୍ଣ।

ଏ ଗଳ୍ପର ନାୟକ ଚନ୍ଦ୍ରଭାନୁ। ଯଦିଓ ବେଶ୍ ଉଲ୍ଲେଖନୀୟ କେତୋଟି ନାଟକର ରଚୟିତା,

ଜେପିଙ୍କ ଗଳ୍ପରେ ନାଟକୀୟତାର କ୍ୱଚିତ୍ ଉପସ୍ଥିତି ଲକ୍ଷ୍ୟ କରିଛନ୍ତି ବିଶିଷ୍ଟ ଗାଳ୍ପିକ ବିଭୂତି ପଟ୍ଟନାୟକ; ଏ ଗଳ୍ପର ଆରମ୍ଭ କିନ୍ତୁ ବେଶ୍ ନାଟକୀୟ । ସେଇ ଆରମ୍ଭଟି ହେଉଛି- "ହାତରେ କଲମଧରି, ଟେବୁଲ ଉପରେ ଥୁଆ ହୋଇଥିବା ଧଳା କାଗଜ ଆଡ଼କୁ ଅନାଇ ଚନ୍ଦ୍ରଭାନୁର ହଠାତ୍ ମନେହେଲା ଯେ ସେ ତା'ର ଲେଖିବା ଶକ୍ତି ସଂପୂର୍ଣ୍ଣ ହରାଇ ବସିଛି ।"

ଜଣେ ବହୁପ୍ରସୂ ଲେଖକ ଭାବରେ ବେଶ୍ ଖ୍ୟାତି ଥିଲା ଚନ୍ଦ୍ରଭାନୁର ଏବଂ ହାତରେ କଲମ ଧରିଲେ ତା' ମୁଣ୍ଡ ଭିତରେ ସୃଜନର ଏକ ଅଦ୍ଭୁତ ଆନ୍ଦୋଳନ ସୃଷ୍ଟି ହୋଇଯାଉଥିଲା । ତାର ଚିନ୍ତାଧାରା ସବୁ କାଗଜ ଉପରକୁ ଓହ୍ଲାଇ ଆସୁଥିଲେ ଗଳ୍ପ, ଉପନ୍ୟାସର ରୂପ ନେଇ । କିନ୍ତୁ ତାର ବନ୍ଧ୍ୟା ମନ ଆଜି ତାକୁ ଲେଖିବାର କୌଣସି ଉପାଦାନ ଯୋଗାଇ ପାରୁ ନଥିଲା ।

ସେଇ ଲେଖକଟିର ଏ ପ୍ରକାରର ମାନସିକ ବନ୍ଧ୍ୟାତ୍ୱକୁ ଜେପି ତୁଳନା କରିଛନ୍ତି ଯୌନ ଅସଫଳତା ବା ନପୁଂସକତା ଜନିତ ଅପ୍ରୀତିକର ଓ ଦୁଃଖଦ ମାନସିକ ସ୍ଥିତି ସହିତ । ସେହି ପରିସ୍ଥିତିରେ ସାହିତ୍ୟ ସମାରୋହର ଏକ ମାନପତ୍ରର ଭାଷା ତା'ର ମନେ ପଡ଼ିଯାଇଛି- ଯେଉଁଥିରେ ତା'ର ସାରସ୍ୱତ କୃତିତ୍ୱର ସହୃଦୟ ମୂଲ୍ୟାୟନ ସହିତ ଭବିଷ୍ୟତର ମହତ୍ତର କୃତିମାନଙ୍କ ପାଇଁ ପ୍ରତ୍ୟାଶା ଉତ୍କୀର୍ଣ୍ଣ ହୋଇଛି । ଅତୀତରେ ତାକୁ ପ୍ରଶଂସା କରି ଅନେକ ସମାଲୋଚକ ଲେଖିଥିବା ଲେଖାଗୁଡ଼ିକର ଫାଇଲକୁ ବି ସେ ଆଉଥରେ ଖୋଲି ଦେଖିଛି । କିନ୍ତୁ ସେ ସବୁ ପ୍ରଶଂସାମୂଳକ ଆଲୋଚନା ଅପେକ୍ଷା, ତା'ର ଗଳ୍ପଗୁଡ଼ିକ ଆଦୌ ଗଳ୍ପ ପଦବାଚ୍ୟ ନୁହେଁ ବୋଲି ଲେଖିଥିବା ଜଣେ ସମାଲୋଚକର ଲେଖା ହିଁ ତାକୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ମନେ ହୋଇଛି । ତା'ର ଯେଉଁ ଗଳ୍ପ ସଂକଳନ ସଂପର୍କରେ ସେହି ଲେଖାଟି, ସେହି ସଂକଳନର ଗୋଟିଏ ଗପକୁ ଆମୂଳାନ୍ତ ପଢ଼ି, ସେହି ସମାଲୋଚନା ଯଥାର୍ଥ ବୋଲି ମଧ୍ୟ ସେ ଅନୁଭବ କରିଛି । ଭାବିଛି- କ'ଣ ହେବ ଆଉ କେତେ ବର୍ଷ ପରେ ? ଶହେ ବର୍ଷ ପରେ କ'ଣ କିଏ ତା'ର ବହିକୁ ପଢ଼ିବାକୁ ବସିବ କୌତୂହଳ କରି ? ପଚାଶ ବର୍ଷ ପରେ ? ପଚିଶ ବର୍ଷ ପରେ ? ତା'ର ମୃତ୍ୟୁ ପରେ ?

ଏହି ପରିପ୍ରେକ୍ଷୀରେ ଜେପି ବେଶ୍ ଯଥାର୍ଥ ଭାବରେ ଆଙ୍କିଛନ୍ତି ଜଣେ ସର୍ଜନଶୀଳ ସ୍ରଷ୍ଟାର ସ୍ୱାଭାବିକ ମାନସିକତାର ଚିତ୍ର । କହିଛନ୍ତି, "ଯେତେବେଳେ ସେ ପ୍ରଥମେ ଲେଖିବାକୁ ଆରମ୍ଭ କରିଥିଲା, ପାଠକମାନଙ୍କୁ ଆଖି ଆଗରେ ରଖୁଥିଲା । ... କିନ୍ତୁ ଅବିଳମ୍ବେ ସମୀକ୍ଷକମାନେ ତା'ର ବିଚାର ପ୍ରକ୍ରିୟା ଭିତରେ ସ୍ଥାନ ନେଇନେଲେ । କିଛି ଲେଖି ବସିବା ବେଳେ ସେ ପାଠକମାନଙ୍କ ଭିଡ଼ ଭିତରେ ଇତସ୍ତତଃ ସମାଲୋଚକମାନଙ୍କର ମୁହଁ ବି ଦେଖିବାକୁ ପାଇଲା ।"

କିନ୍ତୁ ସେ ଏବେ ଅନୁଭବ କରୁଥିଲା ଯେ ସମାଲୋଚକମାନେ ସାହିତ୍ୟ ଜଗତରେ ତା'ର କି ସ୍ଥାନ ନିର୍ଦ୍ଧାରିତ କରିବେ ! ବରଂ ପାଠକମାନଙ୍କ ପାଖକୁ ସେ ଫେରିଯିବ । ତା'ର ଦାୟିତ୍ୱ କେବଳ

ପାଠକମାନଙ୍କ ପ୍ରତି । କିନ୍ତୁ ଏହା ସତ୍ତ୍ୱେ, ସେ ଚେଷ୍ଟାକରି ମଧ୍ୟ ସତେଜ ମନ ନେଇ ଲେଖାଟିକୁ ଆରମ୍ଭ କରିପାରୁ ନଥିଲା ।

ଜେପି ଏ ଗଳ୍ପଟିର ଉପସଂହାର ଆଙ୍କିଛନ୍ତି- ଆଙ୍ଗୁଠିରେ କଲମକୁ ଦୃଢ଼ ଭାବରେ ଧରି, ନିଜର ମାନସିକ ଅବରୋଧକୁ ଅତିକ୍ରମ କରିବା ପାଇଁ ଲେଖକଟି ଚଳାଇଥିବା ପ୍ରୟାସ ମଧ୍ୟରେ ଏବଂ ତାହା ମାଧ୍ୟମରେ ସମ୍ଭବତଃ ସୂଚାଇ ଦେବାକୁ ଚାହିଁଛନ୍ତି ଯେଉଁ ଗୁରୁତ୍ୱପୂର୍ଣ୍ଣ କଥାଟି, ତାହା ହେଉଛି- ସର୍ଜନଶୀଳ ଲେଖକଟିଏ ପାଇଁ ସମାଲୋଚକଙ୍କର ପ୍ରଶଂସା ଅପେକ୍ଷା ପାଠକଙ୍କର ବିଶ୍ୱାସଭାଜନ ହେବା  ଅଧିକ ଶ୍ରେୟସ୍କର ।

କିନ୍ତୁ ଜଣେ ଲେଖକ ଜୀବନର ଆଉ ଏକ ବାସ୍ତବତାର ଚିତ୍ର ଅଙ୍କିତ ଜେପିଙ୍କ 'ପ୍ରିୟ ବିଦୂଷକ' (୧୯୯୨)ର ଶୀର୍ଷକ ଗଳ୍ପରେ । ଏହା 'ଜେପି କଥା-ପଞ୍ଚକ'ର ଚତୁର୍ଥ ଗଳ୍ପ । ଜଣେ ଲେଖକର କଳ୍ପଲୋକ ଓ ବାସ୍ତବ ଜଗତ ଭିତରେ ଦ୍ୱନ୍ଦ୍ୱ ଏ ଗଳ୍ପର ଆଧାର । ପ୍ରସଙ୍ଗକ୍ରମେ ଏ ଗଳ୍ପର ପରିସରରେ ସେ- ଲେଖାର ଆରମ୍ଭ, ଲେଖାର ଭାଷା, ଲେଖାର ବିଷୟବସ୍ତୁ, ଚରିତ୍ରର ନାମକରଣ, ଆତ୍ମଜୀବନୀ ଲେଖାର ସମସ୍ୟା ଆଦି ଅନେକ ବିଷୟର ଅବତାରଣା କରିଛନ୍ତି । ସେହି ଗଳ୍ପର କିଛି କିଛି ବିକ୍ଷିପ୍ତ ପଙ୍‌କ୍ତିକୁ ଏ ପ୍ରସଙ୍ଗରେ ଉଦାହରଣ ରୂପେ ନିଆଯାଉ-

■ ସତରେ ଲେଖକ ହେବା ବଡ଼ କଷ୍ଟ । ଦି'ଦିଟା ପୃଥିବୀକୁ ସମ୍ଭାଳିବାକୁ ହେବ ଏକା ସାଙ୍ଗେ । ତମର ନିଜର ସମସ୍ୟାମାନଙ୍କ ସହିତ ଦେଖିବାକୁ ହେବ ତମର ଚରିତ୍ରମାନଙ୍କର ଭଲମନ୍ଦ ।

■ ଖାଲି ଭାଷା କଥାଟିକୁ ବିଚାରକୁ ନିଆଯାଉ । କଥାବାର୍ତ୍ତାରେ ତ ଅଶ୍ଳୀଳ ଶବ୍ଦମାନ ବିଞ୍ଚି ହୋଇ ପଡ଼ିଥାଏ । ଦି'ଜଣଙ୍କର କଥୋପକଥନ ଶୁଣିବା ବେଳେ ଏ ଶବ୍ଦଗୁଡ଼ିକ ଧରାପଡ଼ନ୍ତି ନାହିଁ। କାନକୁ କିଛି ଖଟକା ଲାଗେ ନାହିଁ। ସାହିତ୍ୟବେତ୍ତା କହିବେ, ଚରିତ୍ରମାନେ ଯେଉଁଭଳି ଭାଷା ବ୍ୟବହାର କରୁଛନ୍ତି, ସେହିଭଳି ଭାଷାରେ ସେମାନଙ୍କର ଚରିତ୍ର ଉଦ୍ଧୃତ ହେବା ଉଚିତ ସାହିତ୍ୟରେ । ଅତି ସହଜ କଥା, କିନ୍ତୁ ଏଥିରେ ସମସ୍ୟା ହେବ ଯେ ବିଚରା ଲେଖକକୁ ଅଶ୍ଳୀଳତା ଅପରାଧରେ ଜେଲ ଯିବାକୁ ପଡ଼ିବ ।

■ କଥା ପଡ଼ିଥିଲା ଲେଖାର ଆରମ୍ଭ ବିଷୟରେ । ପ୍ରଥମ ଧାଡ଼ିରୁ ହିଁ ପାଠକ ଯେପରି ବାନ୍ଧି ହୋଇଯିବ । ସେକ୍‌ସପିଅରଙ୍କ ଗୋଟିଏ ନାଟକର ଆରମ୍ଭ, ଦୁଇଟି କଟାମୁଣ୍ଡ ଓ ଗୋଟିଏ ହାତ ନେଇ ଦୂତର ପ୍ରବେଶ । ଏଭଳି ଉପକ୍ରମ ପରେ ଆଗକୁ ନପଢ଼ି ପାଠକର ଚାରା କାହିଁ ? ତେବେ ସବୁ ବିଷୟରେ ତ ଏପରି ନାଟକୀୟ ସୁଯୋଗ ଆସିବ ନାହିଁ। ନାଟକୀୟ କଥାକୁ କିନ୍ତୁ ପାଠକର ସବୁବେଳେ ସନ୍ଦେହ ।

■ ପାଠକମାନଙ୍କର ସବୁବେଳେ ଘୋର ସନ୍ଦେହ ଲେଖକ ଉପରେ, ପୂରା ସତକଥା ଲେଖିଲେ ବି ଅସୁବିଧା, ପୂରା କାଳ୍ପନିକ କଥାରେ ବି ସେଇଆ।

■ ଚରିତ୍ରମାନଙ୍କର ନାଁ ଦେବା ଏତେ ସହଜ ନୁହେଁ। ସମାଧାନ ହୋଇଯା'ନ୍ତା ଯଦି ଚରିତ୍ରକୁ ତାର ନାଁ ଧରି ନଡାକି ତାର ଚାରିତ୍ରିକ ବର୍ଣ୍ଣନାରେ ହିଁ ଡକାଯାନ୍ତା, ଯଥା ଚନ୍ଦାମୁଣ୍ଡ, ଓଟମୁହାଁ ଅଥବା ଆଖିମିଟିକା, କବି ବା ଇନସ୍ୟୁରାନ୍ସ ଏଜେଣ୍ଟ ବୋଲି। ସାହିତ୍ୟରେ କିନ୍ତୁ ଏଭଳି ନିୟମ ପ୍ରଚଳିତ ନାହିଁ। ଚରିତ୍ରକୁ ନାଁ ଟିଏ ଦେବାକୁ ହିଁ ହୁଏ।

■ ପୃଥିବୀରେ ଯେତେ ଆତ୍ମଜୀବନୀ ଲେଖା ହୋଇଛି, ସେଥିରୁ କେତୋଟି ଶତ ପ୍ରତିଶତ ସତ୍ୟ ଉପରେ ଆଧାରିତ ? ଆତ୍ମଜୀବନୀ ଲେଖିଲାବେଳେ ବି ଅନେକ ଦାୟିତ୍ୱ ଲେଖକ ଉପରେ। ସେ ନିଜର ଦୋଷ, ଦୁର୍ବଳତାକୁ ହୁଏତ ସାହସ କରି ପ୍ରକାଶ କରିଦେବ; କିନ୍ତୁ ତା'ର କି ଅଧିକାର ଅଛି ସେଇ ସୂତ୍ରରେ ଅନ୍ୟମାନଙ୍କ ବିଷୟରେ ଲେଖି ସେମାନଙ୍କୁ ଅପଦସ୍ଥ କରିବାର ? ଏଥିପାଇଁ ବୋଧହୁଏ କୁହାଯାଇଥାଏ ଯେ ଯଦି ସତ କହିବାକୁ ଚାହଁ ଉପନ୍ୟାସ ଲେଖ, ଯଦି ସତ୍ୟକୁ ଲୁଚାଇବାକୁ ଚାହଁ, ଲେଖ ଆତ୍ମଜୀବନୀ।

ଏହି ପରିପ୍ରେକ୍ଷୀରେ ଜଣେ ଲେଖକର ଦ୍ୱୈତ ଭୂମିକାର କଥା କହିଛନ୍ତି ଜେପି- ଯେଉଁଠି ଲେଖକ ନିଜେ କର୍ତ୍ତା ଓ ନିଜେ ବି ଦ୍ରଷ୍ଟା। ଏପରି ସ୍ଥିତିରେ ଲେଖକଟି ନିଜେ ଘଟଣା ସହ ଜଡ଼ିତ ଥାଏ ଏବଂ ତା'ର ଦ୍ରଷ୍ଟା ସ୍ୱରୂପଟି ଅଦୃଶ୍ୟ ଭାବେ ତା'ର ପାଖେ ପାଖେ ଥାଇ ତା'ର ପ୍ରତିଟି ଗତିବିଧିକୁ ଲକ୍ଷ୍ୟ କରୁଥାଏ। 'ପ୍ରିୟ ବିଦୂଷକ'କୁ କା' କରି ତା' ସହିତ ମାନସିକ ସ୍ତରରେ ଆଳାପ ବା ସ୍ୱଗତୋକ୍ତି ମାଧ୍ୟମରେ ଏ ଗଳ୍ପଟିକୁ କହିଛନ୍ତି ସେ; ଏବଂ ଶେଷରେ- ଖାଲି କାଗଜ ପାଖକୁ ଲେଖକଟି ହତାଶ ଭାବରେ ଫେରିଯାଉଥିବାର ଭୟ ଓ ଉଦ୍‌ବେଗ ଦର୍ଶାଇ ତା' ପ୍ରତି ପାଠକ ମନରେ ଦୟାର ଉଦ୍ରେକ ବି କରିଛନ୍ତି। ଉପସଂହାରରେ କହିଛନ୍ତି, "ପ୍ରିୟ ବିଦୂଷକ ! ଲେଖକ ହେବା ସତରେ ବଡ଼ କଷ୍ଟ।"

ଏ 'ଜେପି କଥା-ପଞ୍ଚକ'ର ପଞ୍ଚମ ତଥା ଶେଷ ଗଳ୍ପଟି ହେଉଛି 'ଭାବମୂର୍ତ୍ତି'। ସ୍ୱତନ୍ତ୍ର ସଂକଳନ ରୂପେ ପ୍ରକାଶ ନପାଇ, 'ଇଚ୍ଛାପତ୍ର' ଶୀର୍ଷକରେ 'କଥାଯାତ୍ରା'ରେ ସଂକଳିତ ହୋଇଥିବା ପାଞ୍ଚଟି ଗଳ୍ପ ମଧ୍ୟରୁ ଏହାର ସ୍ଥାନ ଚତୁର୍ଥ। ଏ ଗଳ୍ପଟି ବି ଏକ ପରିପକ୍ୱ ସାହିତ୍ୟିକ ଜୀବନର ସଂକଟ ଉପରେ ଆଧାରିତ।

ଯମର ପ୍ରଥମ ଭିଜିଟିଂ କାର୍ଡ଼ ପାଇ ହସ୍‌ପିଟାଲ୍ ଯାଇଥିବା ଏବଂ ହସ୍ପିଟାଲ୍‌ରୁ ଜୀବନ ଧରି ଫେରିପାରିଥିବା ଜଣେ କବି ଏ ଗଳ୍ପର ନାୟକ। ଜେପି ଲେଖିଛନ୍ତି, "ଅବଶ୍ୟ ସେ ମୃତ୍ୟୁ

ବିଷୟରେ ଅନେକ କବିତା ଲେଖିଥିଲା, କିନ୍ତୁ କବିତାର ମୃତ୍ୟୁ ଏବଂ ଡାକ୍ତର କହିଥିବା ମୃତ୍ୟୁ ମଧ୍ୟରେ ଅନେକ ପ୍ରଭେଦ ଥିଲା। କବିତାର ମୃତ୍ୟୁ ଆସୁଥିଲା ଏକ କୋମଳ ଶୀତଳ ଘନିଷ୍ଠ ଦାର୍ଶନିକ ଆଧ୍ୟାତ୍ମିକ ପରିବେଶରେ, ଦୁଃଖାନ୍ତ ସଂଗୀତର ଲହରୀରେ ଭାସି, କିନ୍ତୁ ଅନ୍ୟ ମୃତ୍ୟୁଟି ଡାକ୍ତରଖାନାର ନିର୍ବୈକ୍ତିକ କୀଟାଣୁରହିତ ରୋକ୍‌ଠୋକ୍ କୋଠରିକୁ ଧସି ପଶି ଆସୁଥିଲା ହାତରେ ପରୁଆନା ଧରି।"

ଜୀବନର ଅପରାହ୍ଣରେ ଉଦୟ ପ୍ରକାଶ ନାମକ ଏହି ମୃତ୍ୟୁମୁଖୀ କବି ବା ଲେଖକଟି, ମୃତ୍ୟୁ ପୂର୍ବରୁ ଦେଶର ସର୍ବୋଚ୍ଚ ସାହିତ୍ୟ ପୁରସ୍କାରଟିକୁ ପାଇବାପାଇଁ, ମୃତ୍ୟୁ ପରେ ନିଜର ସ୍ମୃତିର ସୁରକ୍ଷା ପାଇଁ କିପରି ଅପ୍ରୀତିକର ପ୍ରଚେଷ୍ଟା କରିଚାଲିଛି, ତାହାକୁ ଶାଣିତ ବ୍ୟଙ୍ଗ କରିଛନ୍ତି ଜେପି ଏ ଗଳ୍ପରେ। କହିଛନ୍ତି, "ଏପରି ଭାବରେ ନିଜର ଜୀବନକୁ ସବୁମତେ ବ୍ୟବସ୍ଥିତ କରି ଓ ଭବିଷ୍ୟତ ପାଇଁ କାର୍ଯ୍ୟପନ୍ଥା ଓ ଆନୁଷ୍ଠାନିକ ଆୟୋଜନ କରି ଉଦୟ ପ୍ରକାଶ ଶାନ୍ତିର ନିଶ୍ୱାସ ନେଲା ଏବଂ ଜାଣିଲା ଯେ ସେ ଗୋଟିଏ ସଫଳ ଜୀବନ ଜିଇବା ସାଙ୍ଗେ ସାଙ୍ଗେ ଭବିଷ୍ୟତରେ ତାକୁ ଲୋକମାନେ କିଭଳି ଭାବେ ଦେଖିବେ ଓ ଜାଣିବେ ତା'ର ମଧ୍ୟ ବ୍ୟବସ୍ଥା କରିଯାଉଛି। ଏଥର କେବଳ ଅପେକ୍ଷା ଥିଲା ସେଇ ସର୍ବୋଚ୍ଚ ପୁରସ୍କାରଟି ହାସଲ କରିବାର। କିନ୍ତୁ ଉଦୟ ପ୍ରକାଶର ଜୀବନରେ ସେଇ ଗୋଟିଏ ଖେଦ ରହିଗଲା। ପୁରସ୍କାରଟି ଘୋଷଣା ହେବା ପୂର୍ବରୁ ହିଁ ଦିନେ ଖରାଦିନ ଦି'ପହରେ ବିଛଣାରେ ଶୋଇଥିବା ବେଳେ ଉଦୟ ପ୍ରକାଶର ଦେହାନ୍ତ ହେଲା।"

କିନ୍ତୁ ଏଇଠି ଶେଷ ହୋଇନାହିଁ ଜେପିଙ୍କର ଏ ଗଳ୍ପ। ମୃତ୍ୟୁ ପରେ ଉଦୟ ପ୍ରକାଶର ଆତ୍ମା ଯାହା ସବୁ ଦେଖୁଛି, ତାହା  ଜୀବନର ସେଇ ଶେଷ ଖେଦଟି ଅପେକ୍ଷା ଅଧିକ ଖେଦପୂର୍ଣ୍ଣ। ଜୀବଦ୍ଦଶାରେ ସେ ନିଜପାଇଁ ଦେଖିଥିବା ସବୁ ସ୍ୱପ୍ନ, ମୃତ୍ୟୁ ପରେ ନିଜର ସ୍ମୃତିରକ୍ଷା ପାଇଁ କରିଯାଇଥିବା ସବୁ ଯୋଜନା ଓ ସମ୍ଭାବନା କିପରି ଦୟନୀୟ ଭାବେ ବିଡ଼ମ୍ବିତ ହୋଇଯାଇଛି, ତାହା ହିଁ ଏ ଗଳ୍ପର ପ୍ରକୃତ ପରିଣତି। ଜେପି ଏ ଗଳ୍ପର ଉପସଂହାରରେ କହିଛନ୍ତି, "ବିରକ୍ତ ହୋଇ ମଂଚର ଡାହାଣ ପାଖରେ ଚଉକି ଉପରେ ଫୁଲମାଳ ସଜା ହୋଇ ରହିଥିବା ନିଜର ତୈଳଚିତ୍ର ଆଡ଼କୁ ଅନାଇଲା ଉଦୟ ପ୍ରକାଶ। ଏଇଟିକୁ ଶସ୍ତାରେ କୌଣସି ଅର୍ବାଚୀନ ଚିତ୍ରକାର ହାତରେ ତିଆରି କରା ହୋଇଥିଲା। ଉଦୟ ପ୍ରକାଶ ଉପଲବ୍ଧି କଲା ଯେ ଏଇ ତଥାକଥିତ ପ୍ରତିକୃତିଟି ମଧ୍ୟ ଆଦୌ ତା' ଭଳି ଦେଖାଯାଉ ନଥିଲା।"

କେବଳ 'ଜେପି କଥା-ପଞ୍ଚକ' ଅନ୍ତର୍ଗତ ଏଇ ପାଞ୍ଚଟି ଗଳ୍ପରେ ଯେ କବି, ଲେଖକଙ୍କ ଜୀବନର ବହୁ ନିଷ୍ଠୁର ସତ୍ୟ, ବହୁ ରୂଢ଼ ବାସ୍ତବତା ଚିତ୍ରିତ ହୋଇଛି ତା' ନୁହେଁ; ଜଗନ୍ନାଥ ପ୍ରସାଦ ଦାସଙ୍କ

ଗଳ୍ପସମଗ୍ର 'କଥାଯାତ୍ରା'ର ଶେଷ ଗଳ୍ପ 'ଜନ୍ମଦାତା' ସମେତ ଆହୁରି ଅନେକ ଗଳ୍ପରେ ବି ସାହିତ୍ୟ ଜଗତର ଓ ସାହିତ୍ୟିକମାନଙ୍କ ଜୀବନର ବହୁ ମାର୍ମିକ ଚିତ୍ର ରୂପାୟିତ। ଏପରିକି ତିନିଟି ଦୀର୍ଘ ଗଳ୍ପ ସମ୍ବଳିତ ଶେଷ କଥାଗ୍ରନ୍ଥର ସବାଶେଷ ଗଳ୍ପର ଶୀର୍ଷକ ମଧ୍ୟ 'କବିତାର ଦୀର୍ଘ ଜୀବନ'। ତେବେ 'ଶବ୍ଦଭେଦ'ର ଛଅଧାଡ଼ିଆ କବିତା ସମ୍ବଳିତ ଗଳ୍ପଠାରୁ ଆରମ୍ଭ କରି ୯୦୬ ପୃଷ୍ଠାର 'କଥାଯାତ୍ରା'ର ଶେଷ ଗଳ୍ପ ପର୍ଯ୍ୟନ୍ତ- ନିଜର ସରଳ ଭାଷା, ସ୍ୱଚ୍ଛ ବାକ୍ୟରେ ଗଳ୍ପଗୁଡ଼ିକୁ ଲେଖିଛନ୍ତି ଜେପି ଏବଂ ପରୋକ୍ଷରେ ନିଜର ପ୍ରଶାସକ, ଗବେଷକ, ସାହିତ୍ୟିକ ଓ ସାମାଜିକ ଜୀବନର ଅଙ୍ଗେନିଭା ଅନେକ ଅନୁଭୂତିକୁ ଗଳ୍ପ ମାଧ୍ୟମରେ ଅଭିବ୍ୟଞ୍ଜିତ କରିଛନ୍ତି। 'ଜେପି କଥା-ପଞ୍ଚକ' ଏହାର କେତୋଟି ଖଣ୍ଡଚିତ୍ର ମାତ୍ର। ଅବଶ୍ୟ କବିତାରେ ଯେଉଁସବୁ କଥା ସେ ଲେଖି ପାରିବେ ନାହିଁ ବୋଲି ଭାବି କଥାର ପଥରେ ଯାତ୍ରାରମ୍ଭ କରିଥିଲେ, ତାହା କିଛି କିଛି ଅଂଶରେ ତାଙ୍କର ପରବର୍ତ୍ତୀ ପ୍ରବନ୍ଧ ବା ସମ୍ବାଦପତ୍ର ସ୍ତମ୍ଭଲେଖରେ ରୂପାୟିତ ହୋଇଛି; ମାତ୍ର ଏହି ଗଳ୍ପଗୁଚ୍ଛ ହିଁ ତାହାର ଶ୍ରେଷ୍ଠ ସର୍ଜନଶୀଳ ସୃଷ୍ଟି। ଦିନେ ଯେପରି ପ୍ରଶାସନିକ ପଦମୁଗ୍ଧତା ଭିତରୁ ପୁଣିଥରେ ସେ କବିତାର ପ୍ରେମଲୋକକୁ ଫେରିଥିଲେ; ପୁଣି ଦିନେ ବି ସେ ଯେମିତି ଅଖିଳମୋହନଙ୍କ ବନ୍ଧୁତ୍ୱପୂର୍ଣ୍ଣ ଧମକର ଦାୟରେ ହେଉ ବା ନିଜସ୍ୱ ସୃଜନ-ପ୍ରେରଣାରେ ଗଳ୍ପ ଜଗତରେ ପାଦ ଦେଇଥିଲେ- ସେମିତି ପୁଣି କେବେ ଦିନେ ହୁଏତ ସେ 'ଇଚ୍ଛାପତ୍ର' ବା 'ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘଜୀବନ'ର ପରିସରକୁ କିମ୍ବା ଅସମାପ୍ତ ଉପନ୍ୟାସଟିର ବାକୀ ପୃଷ୍ଠାଗୁଡ଼ିକ ଭିତରକୁ ଫେରିଆସି ପାରନ୍ତି ! ସେ ଦିନଟି ଯେ 'ଶବ୍ଦଭେଦ'ର ଦିନ ପରି ଓଡ଼ିଆ କଥା ସାହିତ୍ୟର ଆଉ ଏକ ସୁଦିନ ହେବ, ଏଥିରେ କୌଣସି ସନ୍ଦେହ ନାହିଁ।

■■

